# ସମୀକ୍ଷା ସଂଚୟନ

ଡକ୍ଟର ଅର୍ଚ୍ଚନା ନାୟକ

ପ୍ରକାଶକ :

ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ

ବିନୋଦ ବିହାରୀ, କଟକ-୨

# ସମୀକ୍ଷା ସଂଚୟନ

ଲେଖିକା :
ଡକ୍ଟର ଅର୍ଚ୍ଚନା ନାୟକ

ପ୍ରକାଶକ :
ଶ୍ରୀ ଗଙ୍ଗାଧର ତ୍ରିପାଠୀ
**ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ**
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୯୭

ମୁଦ୍ରଣ : ଗୀତାଞ୍ଜଳି ପ୍ରେସ୍
ଅଲିଶାବଜାର, କଟକ-୨

ମୂଲ୍ୟ : ଟ ୪୦-୦୦

**SAMIKHYA SANCHAYAN**

Writer :
**Dr. Archana Nayak**

Publisher :
**Sri Gangadhar Tripathy**
**PRACHI SAHITYA PRATISTHAN**
Binodbehari, Cuttack-753002

First Edition— 997

Printed at:
**Gitanjali Press**
Cuttack-753002

Price :
**Rupees Forty Only**

ମୋ ଭାଇ ବିଶିଷ୍ଟ ବୈଜ୍ଞାନିକ

ଡ. ସଂଗ୍ରାମ କେଶରୀ ନାୟକଙ୍କୁ

ଶ୍ରଦ୍ଧା ଓ ସମ୍ମାନ ସହ ନିବେଦିତ

# ସୂଚୀପତ୍ର

# ଗୀତଗୋବିନ୍ଦ :

## ଏକ ନାନ୍ଦନିକ ମୂଲ୍ୟାୟନ

ଦ୍ୱାଦଶ ଶତକର ଉତ୍କଳୀୟ କବି ଜୟଦେବ ଥିଲେ ବିଶ୍ୱ କାବ୍ୟଲୋକର ଶୃଙ୍ଗାରରଙ୍ଗର ବିଦଗ୍ଧ କବି । ସୃଷ୍ଟିକ୍ଷମ ପ୍ରତିଭାର ଅଧିକାରୀ ତାଙ୍କର ମୋହନ ଲେଖନୀରୁ ଲଳିତକାନ୍ତ ପଦାବଳୀ ସମୂହରେ ଆତ୍ମପ୍ରକାଶ କରିଥିଲା ନବରସମଣ୍ଡିତ ସରସଶୃଙ୍ଗାରର ରସୋତ୍ତୀର୍ଣ୍ଣ କଳାକୃତି ଗୀତଗୋବିନ୍ଦ । କୃଷ୍ଣ ରାଧାଙ୍କୁ ନାୟକ ନାୟିକା କରି ଆରମ୍ଭରୁ ଶେଷପର୍ଯ୍ୟନ୍ତ ଏହି ଖଣ୍ଡ ବା ଗୀତିକାବ୍ୟଟି ସମ୍ଭୋଗ ଓ ବିପ୍ରଲମ୍ଭ ଶୃଙ୍ଗାରର ମଦନମହୋତ୍ସବ ବର୍ଣ୍ଣନାରେ ରସାପ୍ଲୁତ ହୋଇଉଠିଛି ।

ପ୍ରେମ ଓ ଶୃଙ୍ଗାର ସବୁ ସାହିତ୍ୟରେ ସବୁ କାଳରେ ନାନା ବିଚିତ୍ର ବର୍ଣ୍ଣବିଳାସ ମଧ୍ୟରେ ଆତ୍ମପ୍ରକାଶ କରିଛି । ଭାରତୀୟ ସାହିତ୍ୟର ସର୍ବପ୍ରାଚୀନ ରୂପ ବୈଦିକ ରଚନାରେ ପୁରୁରବା ଓ ଉର୍ବଶୀଙ୍କ ପ୍ରସଙ୍ଗରୁ ଆରମ୍ଭ କରି ପାଳି, ପ୍ରାକୃତ ଓ ସଂସ୍କୃତ ସାହିତ୍ୟରେ ଲିଖିତ କାବ୍ୟ, ରୂପକ, ଶତକ ଓ ଅନନ୍ତ ଗାଥା ମଧ୍ୟରେ ପ୍ରେମ ଓ ଶୃଙ୍ଗାରର ରସସିକ୍ତ ଅଭିବ୍ୟକ୍ତି ଘଟିଛି । ପ୍ରାକୃତରେ ରଚିତ ଗାହାସତ୍ତସଇ ଓ ସଂସ୍କୃତରେ ରଚିତ ମେଘଦୂତ, ଋତୁସଂହାର, ଅମରୁଶତକ, ଶୃଙ୍ଗାରଶତକ, ଚୌରପଞ୍ଚାଶିକା ଓ ଆର୍ଯ୍ୟାସପ୍ତଶତୀ ପ୍ରଭୃତି ଖଣ୍ଡକାବ୍ୟ ବା ଗୀତିକାବ୍ୟର ପରମ୍ପରା ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ମଣିଷର ସାଧାରଣ ପ୍ରେମାନୁଭୂତିର ଚିତ୍ର ଏଥିରେ ପ୍ରକାଶିତ ହୋଇଛି । କାବ୍ୟକାର-ମାନେ ଦେହ ଓ ଆତ୍ମାକୁ ମିଳିତ ଭାବରେ ଗ୍ରହଣ କରିଥିଲେ ମଧ୍ୟ ଦେହ ଉପରେ ହିଁ ପ୍ରାଧାନ୍ୟ ଦେଇଛନ୍ତି । ଫଳରେ ଦେହଜ ଅନୁଭବମାନ ହିଁ ଲୌକିକ ସ୍ତରରେ ବର୍ଣ୍ଣିତ ହୋଇଛି । ଅଧିକାଂଶ କାହିଁକି ପ୍ରାୟ ସମସ୍ତ ଏହି ପ୍ରକାର ରଚନାରେ ପ୍ରେମର ମହାର୍ଘ ସୂକ୍ଷ୍ମ ଅନୁଭୂତି କାମଶୃଙ୍ଗାରରେ ପରିଣତ ହୋଇଛି ଏବଂ ନାରୀ ଦେହର କାମୋଦ୍ଦୀପକ ବର୍ଣ୍ଣନାରେ ଚର୍ଚ୍ଚିତ ହୋଇଛି କାବ୍ୟରୂପ । କାବ୍ୟଜଗତର ପ୍ରକୃତି ମଧ୍ୟ ମାନବିକ ଭାବାବେଗର ସମ୍ବାହକ ଭାବରେ ଶୃଙ୍ଗାରିକ ରୂପ ଧାରଣ କରିଛି । ନଦୀ ମଧ୍ୟ ବିବୃତଜଘନା ନାରୀ ସଦୃଶ

ପ୍ରତୀୟମାନ ହୋଇଛି । ଆଲଙ୍କାରିକ ଭାବରେ କବିତାଗୁଡ଼ିକର ଯେତେପ୍ରକାର ବ୍ୟାଖ୍ୟା କରାଗଲେ ମଧ୍ୟ ଏଥିରେ ଶୃଙ୍ଗାରାତ୍ମକ ଭାବାବେଗର ସ୍ଥୂଳ ଓ ମାର୍ଜିତ ରୂପର ବୈଚିତ୍ର୍ୟମୟ ଅଭିବ୍ୟକ୍ତି ଘଟିଛି ମାତ୍ର ।

ସାଧାରଣ ନରନାରୀ ପରିବର୍ତ୍ତେ ଉପାସ୍ୟ ଦେବତାଙ୍କ ଲୀଳାବିଳାସର ବର୍ଣ୍ଣନାରେ ମଧ୍ୟ ଭକ୍ତି ଓ ଶୃଙ୍ଗାରରସର ଏକାତ୍ମତା ସଙ୍ଘଟିତ ହୋଇଯାଇଛି । ବିଶେଷ ଭାବରେ କୃଷ୍ଣଲୀଳା ସମ୍ପର୍କିତ ରଚନାମାନର ଆଧ୍ୟାତ୍ମିକ ମୂଲ୍ୟ ଯାହା-ହେଉନା କାହିଁକି ରସସାହିତ୍ୟରେ ତା'ର ରହିଛି ବିଶେଷ ଉଲ୍ଲେଖଯୋଗ୍ୟ ଭୂମିକା । ଏହି ପରମ୍ପରାର ପ୍ରଥମ ରଚନା ଭାବରେ ଲୀଳାଶୁକ ବିଲ୍ୱମଙ୍ଗଳଙ୍କର 'କୃଷ୍ଣକର୍ଣ୍ଣାମୃତ' କାବ୍ୟଟିକୁ ଶୃଙ୍ଗାରତ୍ମକ ରୀତି ଓ ଭକ୍ତିତନ୍ମୟତାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ ।

ଏହି ପରମ୍ପରାର ଅନ୍ୟତମ ସଫଳ କୃତି ଗୀତଗୋବିନ୍ଦ—କୃଷ୍ଣଲୀଳାର ଏକ ଚମତ୍କାର କାବ୍ୟିକ ଅଭିବ୍ୟକ୍ତି । ଏଥିରେ କୃଷ୍ଣଭକ୍ତିର କଥା ଥିଲେ ମଧ୍ୟ ଏହା ବୃନ୍ଦାବନରେ କୃଷ୍ଣଙ୍କର ଗୋପାଙ୍ଗନା ଓ ରାଧାଙ୍କୁ ନେଇ ଅନୁଷ୍ଠିତ ବାସନ୍ତୀରାସଲୀଳାର ଏକ ଶୃଙ୍ଗାରଧର୍ମୀ ରଚନା ।

ଉତ୍କଳରେ ଦ୍ୱାଦଶ ଶତକ ବେଳକୁ ଜଗନ୍ନାଥଙ୍କୁ କୃଷ୍ଣ ସ୍ୱରୂପ ଜ୍ଞାନ କରାଯାଉଥିଲେ ମଧ୍ୟ ରାଧାଙ୍କ କଥାର ଉଲ୍ଲେଖ ହୋଇ ନ ଥିଲା । ଭାଗବତରେ ପ୍ରକାଶିତ କୃଷ୍ଣଙ୍କ ମୁଖରେ 'ଷୋଳ ସହସ୍ର ଗୋପନାରୀ/ମତେ ବରିଲେ ତପ କରି । ମୁଁ ତାଙ୍କ ପୁରାଇବି ଆଶ/ସେ ମୋର ଭକତ ବିଶ୍ୱାସ ।' ନ୍ୟାୟରେ ଗୋପାଙ୍ଗନାମାନେ ହିଁ ଥିଲେ କୃଷ୍ଣଙ୍କର ଶରତରାସର ନାୟିକାବୃନ୍ଦ, ରାଧା ନ ଥିଲେ । କିନ୍ତୁ ଜୟଦେବ ତାଙ୍କର ଗୀତଗୋବିନ୍ଦରେ ଗୋପୀମାନଙ୍କ ସହିତ ମୁଖ୍ୟ ନାୟିକା ରୂପେ ଗ୍ରହଣ କରିଛନ୍ତି ରାଧାଙ୍କୁ । ରାଧା ଓ ଲକ୍ଷ୍ମୀଙ୍କୁ ଅଭିନ୍ନ ମନେ କରାଯାଇଥିବାରୁ ଗୀତଗୋବିନ୍ଦରେ ମା-ଧବ ବା ଲକ୍ଷ୍ମୀପତି ନାରାୟଣଙ୍କୁ ରାଧାଙ୍କ ସହିତ ଯୋଡ଼ି ଦିଆଯାଇଛି । ଦ୍ୱାଦଶ ଶତକରୁ ହିଁ ବଡ଼ମନ୍ଦିରରେ ମାହାରୀ ବା ଦେବଦାସୀମାନେ ପ୍ରତ୍ୟହ ଗୀତଗୋବିନ୍ଦ ଗାନ କରି ଜଗନ୍ନାଥଙ୍କର ମନୋରଞ୍ଜନ କରି ଆସୁଥିଲେ ।

କେତେକ ସାହିତ୍ୟ ସମାଲୋଚକଙ୍କ ମତରେ ଗୀତଗୋବିନ୍ଦ ଏକ ଗ୍ରାମ୍ୟ ରୂପକ । କାହା ମତରେ ଏହା ଏକ ଗୀତିକାବ୍ୟ ଓ କାହା ଦୃଷ୍ଟିରେ ଏହା ଗୀତିକାବ୍ୟ ଓ ନାଟକର ଏକ ମଧ୍ୟବର୍ତ୍ତୀ ସୃଷ୍ଟି । ଆଠ ଆଠ ପଦରେ ଏହା ରଚିତ ହୋଇଥିବାରୁ ଏହାକୁ ଅଷ୍ଟପଦୀ ମଧ୍ୟ କୁହାଯାଏ । ଏହି ମୁକ୍ତକ

କାବ୍ୟଟିରେ ସଙ୍ଗୀତ, ଗଦ୍ୟ ଓ ପଦ୍ୟର ମଞ୍ଜୁଳ ସମାବେଶ ଘଟିଛି । ତେବେ ଗୀତଗୋବିନ୍ଦ କାବ୍ୟର ଏକ କାବ୍ୟିକ ମୂଲ୍ୟାୟନ ପାଇଁ ଏହାର କଥାବସ୍ତୁର ସଜ୍ଜୀକରଣ କୌଶଳ, ବର୍ଣ୍ଣନାବିଳାସ, ରୂପଚର୍ଯ୍ୟା, ରସ ପ୍ରଖ୍ୟାପନ, କାନ୍ତକୋମଳ ପଦାବଳୀ ଓ ସୌନ୍ଦର୍ଯ୍ୟବୋଧର ସମ୍ୟକ୍ ଆଲୋଚନା ଆବଶ୍ୟକ ।

ଗୀତଗୋବିନ୍ଦର କଥାବସ୍ତୁ କବି ଭାଗବତ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ହରିବଂଶ ପ୍ରଭୃତି ବିଷ୍ଣୁ କୃଷ୍ଣ ସମ୍ପର୍କିତ ଗ୍ରନ୍ଥରୁ ଗ୍ରହଣ କରିଛନ୍ତି । ସଂସ୍କୃତ ଭାଷାରେ ରଚିତ ଅନ୍ୟାନ୍ୟ କାବ୍ୟ ସମୂହରେ ଯେପରି ବିବିଧ ଘଟଣା, ବହୁ ଚରିତ୍ର ଓ ବିଭିନ୍ନ ରସର ସମାବେଶ ଘଟିଥାଏ, ତାହା ଏହି କାବ୍ୟରେ ଦେଖାଯାଏ ନାହିଁ । ଏଥିରେ ରାଧାକୃଷ୍ଣଙ୍କର ମିଳନ, କୃଷ୍ଣଙ୍କର ଅନ୍ୟ ନାରୀ ପ୍ରତି ଆସକ୍ତିଜନିତ ରାଧାଙ୍କର ଅଭିମାନ ଓ କୃଷ୍ଣଙ୍କର ରାଧାଙ୍କ ମାନଭଞ୍ଜନ ପ୍ରଭୃତି କେଇଟି ମାତ୍ର ଘଟଣା ଉପରେ କାବ୍ୟର ବିଷୟବସ୍ତୁ ଆଧାରିତ ହୋଇଛି । ତେଣୁ କଥାବସ୍ତୁଗତ ବୈଚିତ୍ର୍ୟର ଅଭାବ ଏଥିରେ ପରିଲକ୍ଷିତ ହୁଏ । ତେବେ କବି ଜୟଦେବଙ୍କର ସମସାମୟିକ ଓ ପରବର୍ତ୍ତୀକାଳର କବିମାନେ ଗୀତଗୋବିନ୍ଦର କଥାବସ୍ତୁ ଓ ବର୍ଣ୍ଣନାବିଳାସ ଦ୍ୱାରା ବହୁ ଭାବରେ ପ୍ରଭାବିତ ହେବାର ଲକ୍ଷ୍ୟ କରାଯାଏ । କୃଷ୍ଣଲୀଳାତ୍ମକ ଏହି ସାଧାରଣ କଥାବସ୍ତୁକୁ କବି ଅତି ନାଟକୀୟ ଭାବରେ ଉପସ୍ଥାପନ କରିଛନ୍ତି ।

ବସନ୍ତଋତୁର ଆଗମନରେ ଧରଣୀ ସୁସଜ୍ଜିତା ହୋଇଉଠିଛି ବିଚିତ୍ରବର୍ଣ୍ଣା ପୁଷ୍ପସମୂହରେ । ଧୀର ସୁଗନ୍ଧିତ ମଳୟସମୀରଣର ସଞ୍ଚାର, କୋକିଳର କୁହୁ କୁହୁ ଧ୍ୱନି, ବିହଙ୍ଗକୁଳର କାକଳି ଓ ମଧୁପର ଗୁଞ୍ଜନରେ ଆମୋଦିତ ହୋଇ-ଉଠିଛି ବନଭୂମି । କୃଷ୍ଣମିଳନ କାମନାରେ ଗୋପପୁରର ନାରୀମାନେ ଉତ୍କଣ୍ଠିତା ହୋଇ କୁଞ୍ଜବନକୁ ଧାଇଁ ଆସିଛନ୍ତି ।

କୃଷ୍ଣପ୍ରିୟା ରାଧାଙ୍କ ପ୍ରାଣ କୃଷ୍ଣମିଳନ ଲାଗି ବ୍ୟାକୁଳ ହୋଇଉଠିଛି । ପ୍ରିୟତମଙ୍କୁ ସନ୍ଧାନ କରି କରି ସେ ପହଞ୍ଚିଛନ୍ତି କୁଞ୍ଜବନରେ ଏବଂ ଆବିଷ୍କାର କରିଛନ୍ତି ତାଙ୍କର ପ୍ରାଣପ୍ରିୟଙ୍କୁ ଅନ୍ୟନାରୀର ବାହୁପାଶରେ । ବହୁ ନାରୀଙ୍କ ଗହଣରେ କୃଷ୍ଣ ମୁଗ୍ଧ ବିହ୍ୱଳ ହୋଇ କେଳି କରୁଥିବାର ଦେଖି ରାଧା ଫେରି ଆସିଛନ୍ତି ଅଭିମାନରେ । ସେ ଅଭିମାନର ଯନ୍ତ୍ରଣା ମର୍ମେ ମର୍ମେ ଅନୁଭବ କରିଛନ୍ତି ସେ । କୃଷ୍ଣଙ୍କର ଶଠତା, ପ୍ରବଞ୍ଚନା ତାଙ୍କର ହୃଦୟକୁ କର୍ତ୍ତିତ କରି ଦେଇଛି । କିନ୍ତୁ ସେହି ଶଠକୁ ପ୍ରତ୍ୟାଖ୍ୟାନ କରିଦେବା, ସେହି ପ୍ରବଞ୍ଚକର ସ୍ମୃତିକୁ ଦୂରେଇ ଦେବା ତାଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ସେ ବିରହରେ

ଚାପିତା ହୋଇଛନ୍ତି ଅନ୍ତରଙ୍ଗ ଓ ନିଜ ପ୍ରାଣସଙ୍ଗିନୀ ନିକଟରେ ନିଜ ଅନ୍ତରର କଥା ବ୍ୟକ୍ତ କରି ଦେଇଛନ୍ତି । ଯେ କୌଣସି ଉପାୟରେ ହେଉପଛେ ସେ ଫେରି ପାଇବାକୁ ଶ୍ରୀକୃଷ୍ଣଙ୍କୁ ଫେରପାଇବାକୁ ।

ଗୋପାଙ୍ଗନା ମେଳରେ ରାସକ୍ରୀଡା କରୁଥିବା କୃଷ୍ଣଙ୍କ ମନରେ ହଠାତ୍ ଜାଗ୍ରତ ହୋଇଛି ରାଧାଙ୍କର ସ୍ମୃତି । ରାଧାମୁଖସରୋଜର ସ୍ମୃତିରେ ସେ ଅସ୍ଥିର ହୋଇ ଉଠିଛନ୍ତି । କୃଷ୍ଣଙ୍କର ବିରହ ବ୍ୟଥା ସବୁ ଆନନ୍ଦକୁ ବିଳପଡ଼ିଛି । ବିଷଣ୍ଣ ମନରେ ହରି, ପ୍ରିୟାଙ୍କୁ ମନାଇବାର ଉପାୟ ଚିନ୍ତାରେ ମଗ୍ନ ରହିଥିବାବେଳେ ରାଧାଙ୍କର ସଖୀ ପ୍ରବେଶ କରି ବିରହିଣୀ ରାଧାଙ୍କର ମାନସିକ ଓ ଶାରୀରିକ କ୍ଲେଶର ବର୍ଣ୍ଣନା କରିଛି । ସେ କିପରି କେବଳ ହରିଙ୍କର ନାମକୁ ଦିନରାତି ଜପାମାଳି କରିଛି ଓ ତାଙ୍କର ଦର୍ଶନ ପାଇଁ ମାତ୍ର ନିଜର ପ୍ରାଣରକ୍ଷା କରିଛି, ସେସବୁର ଏକ ମାର୍ମିକ ବିବରଣୀ ପ୍ରଦାନ କରିଛି ।

ଶ୍ରୀମତୀଙ୍କର ବିରହବିଧୁର ଅବସ୍ଥା ଶ୍ରବଣ କରି ପ୍ରଭୁ ବ୍ରଜସୁନ୍ଦର ଦୂତୀ ନିକଟରେ ରାଧାଙ୍କ ସହିତ ମିଳନର ବ୍ୟବସ୍ଥା କରିବା ପାଇଁ ସବିନୟ ନିବେଦନ କରିଛନ୍ତି ।

ଦୂତୀ ନିକଟରୁ କୃଷ୍ଣଙ୍କର ଆଗ୍ରହ କଥା ଶ୍ରବଣ କରି ରାଧା କପଟ ଉଦାସୀନତା ପ୍ରକାଶ କରିଛନ୍ତି । କିନ୍ତୁ ପୁଣି କୁଞ୍ଜବନରେ କୃଷ୍ଣଙ୍କର ଅପେକ୍ଷାରେ ବାସକସଜ୍ଜା ନାୟିକା ରାଧା ଚରମ ଉତ୍କଣ୍ଠାରେ ସମୟ ବିତାନ୍ତି । ଅଥଚ କୃଷ୍ଣଙ୍କର ଆଗମନର କୌଣସି ସୂଚନା ନାହିଁ । ଏଣେ ବନଭୂମିକୁ ଉଜ୍ଜ୍ୱଳ କରି ଚନ୍ଦ୍ର ଉଦିତ ହୁଏ । ବୃନ୍ଦାବନର ଶ୍ୟାମଳଶ୍ରୀ ଜ୍ୟୋତ୍ସ୍ନାରେ ପରିପ୍ଲାବିତ ହୋଇ ଅପୂର୍ବ ଶୋଭା ଧାରଣ କରେ । ରାଧାଙ୍କର ଅପେକ୍ଷା ବ୍ୟର୍ଥ ହୋଇଯାଏ । ଘନଶ୍ୟାମ ଅନ୍ୟ କେଉଁ ନାରୀର ବାହୁବନ୍ଧନରେ ଥିବାର ଆଶଙ୍କା କରି ରାଧାଙ୍କ ମନରେ ସୃଷ୍ଟି ହୁଏ ନାନା ଆଶଙ୍କା, ଖେଦ ଓ ଚିନ୍ତା, ମୁହୁର୍ମୁହୁ ଦୀର୍ଘଶ୍ୱାସ ତାଙ୍କର ହୃଦୟରୁ ଉଠିଆସେ । ସେହି ଶଠ ପ୍ରଣୟୀର ମୁହଁ ନ ଚାହିଁବା ପାଇଁ ସେ ଶପଥ କରିପକାନ୍ତି କିନ୍ତୁ ଶ୍ୟାମ ଚିନ୍ତାରୁ ତାଙ୍କର ମୁକ୍ତି କାହିଁ !

ଉପେକ୍ଷିତା, ଖଣ୍ଡିତା ନାୟିକା ରାଧା ରାତି ପାହି ଆସିବା ବେଳକୁ ଦେଖନ୍ତି ଶ୍ୟାମ ତାଙ୍କ କୁଞ୍ଜରେ ପ୍ରବେଶ କରି ତାଙ୍କର ଆଖିକୁ ବୁଜି ଧରିଛନ୍ତି । କ୍ରୋଧରେ ତାଙ୍କ ହାତକୁ ରାଧା ହଟାଇ ଦେଇ ଦେଖନ୍ତି ସର୍ବାଙ୍ଗରେ ଅନ୍ୟନାରୀ ସମ୍ଭୋଗର ସମସ୍ତ ଚିହ୍ନମାନ ଧାରଣ କରି କୃଷ୍ଣ ଉପସ୍ଥିତ ହୋଇଛନ୍ତି । ପ୍ରଚଣ୍ଡ

କ୍ରୋଧରେ ରାଧା ତାଙ୍କର ଏ ପ୍ରକାର ଲଜ୍ଜାହୀନ ଆଚରଣ ଲାଗି ଭର୍ତ୍ସନା କରିଛନ୍ତି ଓ ତାଙ୍କୁ ଦୂର କରି ଦେଇଛନ୍ତି ।

ମଦନପୀଡ଼ିତା, ରତିସୁଖବଞ୍ଚିତା କଳହାନ୍ତରିତା ରାଧାଙ୍କୁ ସଖୀ ପ୍ରବୋଧନା ଦେଇଛି । କୃଷ୍ଣ ପୁଣି ଫେରି ଆସିଲେ ତାଙ୍କୁ ଯେପରି ରାଧା ଆଦରରେ ଗ୍ରହଣ କରିବେ ସେଥିପାଇଁ ପରାମର୍ଶମାନ ଦେଇଛି ।

ସଖୀ କଥା ମାନି ପ୍ରଦୋଷ କାଳରେ ରାଧା ଅଭିସାରିକା ବେଶରେ କୃଷ୍ଣଙ୍କ ନିକଟକୁ ଗମନ କରିଛନ୍ତି । ପ୍ରିୟତମାର ମାନଭଞ୍ଜନ ଲାଗି ସକଳପ୍ରକାର ଚାଟୁବାଣୀ ପ୍ରକାଶ କରିଛନ୍ତି କୃଷ୍ଣ । ଏପରିକି ରାଧାଙ୍କ ନିକଟରେ, 'ଦେହି ପଦ-ପଲ୍ଲବ ମୁଦାରଂ' 'ପରି ସ୍ତୁତିବାକ୍ୟ କହି ତାଙ୍କୁ ରତିଦାନ ପାଇଁ ସମ୍ମତ କରିଛନ୍ତି ।

କୃଷ୍ଣଭିଳାଷିଣୀ ରାଧା ନିଜର ଅଙ୍ଗୀକାର ଦେବାରେ ଆଉ ଅଧିକ ବିଲମ୍ବ କରିନାହାନ୍ତି । କାମଶାସ୍ତ୍ରରେ ଚର୍ଚ୍ଚିତ ରତିକର୍ମ୍ମର ସକଳ ରୀତି ଅନୁଷ୍ଠିତ ହୋଇଯାଇଛି ଦୁହିଁଙ୍କ ମଧ୍ୟରେ । ରତିକ୍ଳାନ୍ତ ରାଧାଙ୍କ ଅନୁରୋଧରେ କୃଷ୍ଣ, ରତିକାଳରେ ରାଧାଙ୍କର ଅଙ୍ଗଚ୍ୟୁତ ଅଳଙ୍କାର ଓ ବସ୍ତ୍ରଭୂଷଣ ପ୍ରଭୃତିରେ ପୁଣି ତାଙ୍କୁ ସଜାଇ ଦେଇଛନ୍ତି ।

ଏହିଠାରେ କାବ୍ୟର ଉପସଂହାର କରିଛନ୍ତି କବି । ଏକ ବୈଚିତ୍ର୍ୟହୀନ କଥାବସ୍ତୁକୁ ପ୍ରେମିକା ନାରୀର ମାନସିକ ଉଦ୍‌ବେଳନ, ଉତ୍କଣ୍ଠା, ଆଶା ନିରାଶା, ପ୍ରତୀକ୍ଷା, ବିଫଳତା, ବିଷାଦ, ବିଳାପ, କ୍ରୋଧ, କ୍ରନ୍ଦନ, ଅଭିମାନ ଓ ଅଧୀରତାର ଚମତ୍କାର ଚିତ୍ର ଦେବା ସଙ୍ଗେ ଅଷ୍ଟ ନାୟିକାର ବିଭିନ୍ନ ବିଭାବର ମନୋଜ୍ଞ ବର୍ଣ୍ଣନା କରି କାବ୍ୟଟିକୁ ନାଟକୀୟ କରିବା ସଙ୍ଗେ ରସୋତ୍ତୀର୍ଣ୍ଣ କରି-ପାରିଛନ୍ତି । ଦୀର୍ଘ ସମାସ ଓ ବହୁଳ ଅଳଙ୍କାର ପ୍ରୟୋଗ ପରିବର୍ତ୍ତେ ସରଳ ତରଳ କାନ୍ତକୋମଳ ପଦାବଳୀ ମାଧ୍ୟମରେ କରାଯାଇଥିବା ବର୍ଣ୍ଣନା ପାଠକର ଅଧିକ ହୃଦୟଗ୍ରାହୀ ହୋଇ ପାରିଛି । ବିଷୟବସ୍ତୁର ନାଟକୀୟ କ୍ରମ ଅଗ୍ରଗତି, ଲଳିତ ଶବ୍ଦ ସଂଯୋଜନା ଓ କାଳଜୟୀ ସାଙ୍ଗୀତିକତା ଜୟଦେବଙ୍କର ବହୁ ଅନୁଗାମୀ ସୃଷ୍ଟି କରିଥିଲା । ତେଣୁ ଗୀତଗୋବିନ୍ଦର ଅନୁରୂପ ବହୁ କାବ୍ୟ ରଚନା ପରବର୍ତ୍ତୀ କାଳରେ ହୋଇଥିବା ଦେଖାଯାଏ ।

ଏହି ଗୀତ କାବ୍ୟଟିରେ ମାଳବ ରାଗରେ ରଚିତ ଦଶାବତାର ବର୍ଣ୍ଣନା ଏକ ଉଲ୍ଲେଖଯୋଗ୍ୟ ଦିଗ । ପରବର୍ତ୍ତୀ କାଳରେ ଗୌଡ଼ୀୟ ବୈଷ୍ଣବମାନଙ୍କର କୃଷ୍ଣପ୍ରାଧାନ୍ୟ ଓ ଉତ୍କଳୀୟ ବୈଷ୍ଣବମାନଙ୍କର ଜଗନ୍ନାଥ ମୁଖ୍ୟ ଏବଂ ସମନ୍ୱୟ-ବାଦୀଙ୍କର ଜଗନ୍ନାଥ ଓ କୃଷ୍ଣଙ୍କୁ ଏକ ବୋଲି ପ୍ରତିପାଦନ କରିବାର ଚେଷ୍ଟା

କାବ୍ୟମାନଙ୍କରେ ପ୍ରକାଶ ପାଇଥିଲି । କବି ଜୟଦେବଙ୍କର ରଚନାରେ କୌଣସି ପ୍ରକାର ଧାର୍ମିକ ମତବାଦର ଗୁରୁତ୍ୱ ପ୍ରତିପାଦନର ଚେଷ୍ଟା କରାଯାଇ ନାହିଁ । ତାଙ୍କ ଦୃଷ୍ଟିରେ କେହି ପରମ ଈଶ୍ୱର ବା ଅନ୍ୟ କେହି ଷୋଳ କଳାରୁ ଏକ କଳା ନୁହନ୍ତି ବରଂ ପ୍ରତି ଅବତାର ଏକ ଓ ଅଭିନ୍ନ ସତ୍ତା । ସେହି ଏକ ଈଶ୍ୱର କେବେ ମୀନ ରୂପରେ ଅପହୃତ ବେଦ ଉଦ୍ଧାର କରନ୍ତି ତ କେବେ ରସାତଳଗାମୀ ଧରଣୀକୁ କଚ୍ଛପ ରୂପରେ ନିଜର ପୃଷ୍ଠଦେଶରେ ଧାରଣ କରି ରକ୍ଷା କରନ୍ତି । ସେହି ଈଶ୍ୱର କେବେ ଭକ୍ତର ମର୍ଯ୍ୟାଦା ରକ୍ଷା କରିବାକୁ, ଈଶ୍ୱରୀୟ ମହିମା ପ୍ରତିଷ୍ଠା କରିବାକୁ, ବ୍ୟଭିଚାରୀକୁ ଦଣ୍ଡ ଦେବାକୁ ନୃସିଂହ ରୂପ ଓ ରାମ ରୂପ ଧାରଣ କରନ୍ତି; ପୁଣି କେବେ ବ୍ୟକ୍ତିର ଔଦ୍ଧତ୍ୟ ଅହଂକାରକୁ ଦମନ କରିବାକୁ ଆବିର୍ଭୂତ ହୁଅନ୍ତି ବାମନ ରୂପରେ । ସେ ପୁଣି ହଳ ଧାରଣ କରି ଭୂମି କର୍ଷଣ କରନ୍ତି, ପୃଥିବୀକୁ ଶସ୍ୟଶାମଳା କରିବାର ଦୃଷ୍ଟାନ୍ତ ସୃଷ୍ଟି କରନ୍ତି ତ କେବେ ଧର୍ମ ନାମରେ ଯଜ୍ଞ ନାମରେ ଅସଂଖ୍ୟ ନିରୀହ ପଶୁ ବଳିର ଘୋର ବିରୋଧ କରି ବୁଦ୍ଧ ରୂପରେ ଅହିଂସା ଧର୍ମ ପ୍ରଚାର କରନ୍ତି । ଯେଉଁ ଈଶ୍ୱର ସୃଷ୍ଟିର କାରଣ, ଯେଉଁ ଈଶ୍ୱର ସୃଷ୍ଟିର ପାଳନ କର୍ତ୍ତା, ସେହି ଈଶ୍ୱର ପୁଣି କଲ୍କି ରୂପରେ ଦୁଷ୍ଟ ସଂହାର କରିବା ପାଇଁ ଆଗେଇ ଆସନ୍ତି ।

କୃଷ୍ଣଭକ୍ତ କବିଙ୍କର କୌଣସି ନିର୍ଦ୍ଦିଷ୍ଟ ଧର୍ମ ମତବାଦର ସଙ୍କୀର୍ଣ୍ଣତା ନ ଥିଲା । ଏକ ଉଦାର ବ୍ୟାପକ ଦୃଷ୍ଟିକୋଣରୁ ସେ ଈଶ୍ୱରୀୟ ମହିମାର ଉପଲବ୍ଧି କରିଛନ୍ତି ।

ବର୍ଣ୍ଣନାବିଳାସର ଚମତ୍କାରିତା ପ୍ରକାଶ ପାଇଛି କବିଙ୍କର ବସନ୍ତ ବର୍ଣ୍ଣନା, ରୂପଚର୍ଯ୍ୟା ଓ ପରିବେଶ ବର୍ଣ୍ଣନାରେ । କାବ୍ୟରେ କୃଷ୍ଣଙ୍କର ବସନ୍ତରାସ ବର୍ଣ୍ଣନାର ପ୍ରଥମ ପ୍ରବର୍ତ୍ତକ କବି ଜୟଦେବ । ଭାଗବତ ଓ ପଦ୍ମ ପୁରାଣ ପ୍ରଭୃତି ଅନ୍ୟାନ୍ୟ ବୈଷ୍ଣବ ଗ୍ରନ୍ଥରେ ଶରତ ରାସ ପ୍ରସଙ୍ଗ ବର୍ଣ୍ଣିତ ହୋଇଥିବା ବେଳେ ଜୟଦେବ ବସନ୍ତ ଋତୁକୁ ହିଁ ରସଶେଖରଙ୍କର ରାସକ୍ରୀଡ଼ା ପାଇଁ ଉପଯୁକ୍ତ ମନେ କରିଛନ୍ତି । ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି "ମାସାନାଂ ମାର୍ଗଶୀର୍ଷୋଽହଂ ଋତୂନାଂ କୁସୁମାକରଃ" । ଏହି ଋତୁ ପ୍ରକୃତିକୁ ଦିଏ ଅପୂର୍ବ କାନ୍ତି ଅଭିନବ ରୂପ ସମ୍ପଦ । ଜଳ ସ୍ଥଳ ଆକାଶରେ ଖେଳିଯାଏ ସୌନ୍ଦର୍ଯ୍ୟର ମଧୁର ଲହରୀ । ବସନ୍ତ କାଳରେ ମଦନ ପୂଜା ସହିତ ଶୃଙ୍ଗାରିକ ଭାବନା ସମ୍ପର୍କିତ ଥିବାରୁ ଏହି ଋତୁ ହିଁ ରାଧାକୃଷ୍ଣଙ୍କର ମିଳନ ଲାଗି ଉତ୍କୃଷ୍ଟ କାଳରୂପେ ବିବେଚିତ ହୋଇଛି ।

ଋତୁରାଜ ବସନ୍ତର ଆଗମନରେ ରାଧାଙ୍କର ମାନସିକ ଚଞ୍ଚଳତା ବୃଦ୍ଧି ପାଇଛି । କୃଷ୍ଣଙ୍କର ଘନ ସାନ୍ନିଧ୍ୟ ଲାଭ କରିବା ପାଇଁ ସେ ଅଧୀର ଭାବରେ ଘୋର ବନ ମଧ୍ୟରେ ତାଙ୍କୁ ସନ୍ଧାନ କରି ବୁଲୁଛନ୍ତି । ଏହି ସମୟରେ ଜଣେ ସହଚରୀ ରାଧାଙ୍କୁ ଏକ ଅଭିନବ ଦୃଶ୍ୟ ଦେଖାଇବା ପାଇଁ ବୃନ୍ଦାବନର ଅଭ୍ୟନ୍ତରକୁ ଡାକି ନେଇ କହୁଛି—

ଲଳିତଲବଙ୍ଗଲତାପରିଶୀଳନ କୋମଳ ମଳୟସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ ।
ବିହରତି ହରିରିହ ସରସ ବସନ୍ତେ,
ନୃତ୍ୟତି ଯୁବତି ଜନେନ ସମଂ ସଖି ବିରହିଜନସ୍ୟ ଦୁରନ୍ତେ ।

(୧ମ ସର୍ଗ/୨୮)

ଅର୍ଥାତ୍—ଦେଖ ସଖୀ, ମଳୟ ସମୀର ଦକ୍ଷିଣ ଦିଗରୁ ଧୀରେ ଧୀରେ ପ୍ରବାହିତ ହୋଇ ଲଳିତ ଲବଙ୍ଗଲତାର କୋମଳ ତନୁକୁ କିପରି ଆଦରରେ ଆଲିଙ୍ଗନ କରୁଛି । ମଧୁପର ଗୁଞ୍ଜନ ଓ କୋକିଳର କୁହୁ କୁହୁ ତାନରେ କୁଞ୍ଜବନ ମୁଖରିତ ହୋଇଉଠୁଛି । ଏହି ନବବସନ୍ତ କାଳରେ ନନ୍ଦସୁତ ଯୁବତି ମାନଙ୍କ ସହିତ ରାସକ୍ରୀଡ଼ାରେ ବିଭୋର ହୋଇଛନ୍ତି । କେବଳ ବିରହୀଜନମାନେ ହିଁ ବସନ୍ତକାଳରେ ସନ୍ତାପିତ ହୁଅନ୍ତି ।

ବାସନ୍ତିକ ପ୍ରକୃତିର ବର୍ଣ୍ଣନା କରିବାକୁ ଯାଇ କବିଙ୍କର ଶୃଙ୍ଗାରିକ ଭାବନାର ପ୍ରକାଶ ମୁଖ୍ୟତଃ ଘଟିଛି । ନାରୀ ପୁରୁଷର କାମଲାଳସାକୁ ଉଦ୍ଦୀପିତ କରିବା ପାଇଁ ଏହା ଏକ ଉଦ୍ଦୀପନ ବିଭାବ ରୂପେ ବର୍ଣ୍ଣିତ ହୋଇଛି ।

ଦରବିଗଳିତମଲ୍ଲୀବଲ୍ଲି ଚଂଚତ୍ ପରାଗ—
ପ୍ରକଟିତପଟବାସୈର୍ବାସୟନ୍ କାନନାନି ।
ଇହହି ଦହତି ଚେତଃ କେତକୀ ଗନ୍ଧବନ୍ଧୁଃ ।
ପ୍ରସରଦସମବାଣ ପ୍ରାଣବଦ୍ ଗନ୍ଧବାହଃ । (୧ମ ସର୍ଗ/୩୭)

ଅର୍ଥାତ୍—ଏହି ମଳୟାନିଳ ମଲ୍ଲୀଲତା ବନରେ ଧୀରେ ଧୀରେ ପ୍ରବାହିତ ହୋଇ ମଲ୍ଲୀ ପୁଷ୍ପକୁ ଚୁମ୍ବନ କରୁଛି । ପ୍ରସ୍ଫୁଟିତ ମଲ୍ଲୀ କେତକୀର ସୁଗନ୍ଧରେ ସୁରଭିତ ହୋଇଉଠୁଛି ଗନ୍ଧବହ । କିନ୍ତୁ ବିରହୀଙ୍କୁ ଦହନର କାରଣ ହେଉଛି ।

ସେହିପରି ବସନ୍ତର ଆଗମନରେ ନବପଲ୍ଲବିତ ତମାଳତରୁ ରକ୍ତବର୍ଣ୍ଣ ଓ ଶ୍ୟାମଳବର୍ଣ୍ଣର ସମ୍ମିଶ୍ରଣରେ ସୁନ୍ଦର ଦେଖାଯାଉଛି । ମାଧବୀଲତାର ଆଲିଙ୍ଗନରେ

ସହକାର ତରୁ ପୁଲକିତ ହୋଇଉଠୁଛି । ଚୂତ ମୁକୁଳର ଗନ୍ଧ ଯେତିକି ପ୍ରକଟିତ ହେଉଛି ମଧୁଲୋଭୀ ମଧୁକରଗଣ ସେତିକି ଉନ୍ମତ୍ତ ହୋଇ ତାକୁ ଚୁମ୍ବନ କରୁଛନ୍ତି । ଶ୍ରୁତିମଧୁର କୋକିଳର କୁହୁତାନ ଅଭିସାରୀ ହୃଦୟକୁ ପୀଡ଼ିତ କରୁଛି ।

ଏହି ମଧୁମାସକୁ କୃଷ୍ଣଙ୍କର ରାସକ୍ରୀଡ଼ାର ଉପଯୁକ୍ତ ସମୟ ମନେକରି ବସନ୍ତରାସର ପ୍ରବର୍ତ୍ତନ କରିଥିବା କବି ଜୟଦେବଙ୍କୁ ପରବର୍ତ୍ତୀକାଳର ଓଡ଼ିଆ କବିମାନେ ବହୁଭାବରେ ଅନୁସରଣ କରିଛନ୍ତି । ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ଆଦିକବି ସାରଳା ଦାସ ତାଙ୍କର ମହାଭାରତରେ ଯେଉଁ ବସନ୍ତରାସର ବର୍ଣ୍ଣନା କରିଛନ୍ତି ତାହା ଗୀତଗୋବିନ୍ଦର ପ୍ରଭାବ ବୋଲି ନିଃସନ୍ଦେହରେ କୁହାଯାଇପାରେ । ପରେ ଦେବଦୁର୍ଲ୍ଲଭ ଦାସଙ୍କର 'ରହସ୍ୟ ମଞ୍ଜରୀ' କାବ୍ୟରେ ଓ ଅନ୍ୟାନ୍ୟ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟରେ ବସନ୍ତରାସର ବିପୁଳ ବର୍ଣ୍ଣନା ଦେଖିବାକୁ ମିଳେ ।

ସଂସ୍କୃତ ସାହିତ୍ୟର ପରମ୍ପରାରେ ନାୟକ ନାୟିକାଙ୍କର ରୂପଚର୍ଯ୍ୟା ବହୁ ବର୍ଣ୍ଣିଳ ଧାରାରେ ଚର୍ଚ୍ଚିତ ହୋଇଛି । ମହାଭାରତ, ରାମାୟଣରେ ନାରୀ ପୁରୁଷର ଶରୀର ଶୋଭାର କରାଯାଇଥିବା ବର୍ଣ୍ଣନା କ୍ରମେ କାଳିଦାସ ଓ ଶ୍ରୀହର୍ଷ ପ୍ରଭୃତିଙ୍କ ଲେଖନୀରେ ଅଧିକ ସୂକ୍ଷ୍ମ ଓ ସୌନ୍ଦର୍ଯ୍ୟଗ୍ରାହୀ ହୋଇଉଠିଛି । ପୁରୁଷର ସୌନ୍ଦର୍ଯ୍ୟ, ନାରୀର ଅଙ୍ଗଶୋଭା, ଗତି, ଭଙ୍ଗୀ ଓ କଟାକ୍ଷ ପ୍ରଭୃତିର ଚମତ୍କାର ବର୍ଣ୍ଣନା କାବ୍ୟରେ ବହୁଭାବରେ କରାଯାଇଛି । ଜୟଦେବ ସେହି ପରମ୍ପରାର ବ୍ୟତିକ୍ରମ ନୁହନ୍ତି । ଗୀତଗୋବିନ୍ଦ କାବ୍ୟରେ ଲଳିତପଦାବଳୀ ମାଧ୍ୟମରେ କୃଷ୍ଣଙ୍କର ବିମୋହନ ରୂପମାଧୁରୀ ଯେପରି ଚର୍ଚ୍ଚିତ ହୋଇଛି ସେହିପରି ରାଧାଙ୍କର ରୂପ ବର୍ଣ୍ଣନା ମୁଖ୍ୟତଃ ତାଙ୍କର ସ୍ତନଜଘନର ଭୂୟସୀ ବର୍ଣ୍ଣନାରେ ମୁଖରିତ ହୋଇଛି ।

ଅଭିମାନିନୀ ରାଧାଙ୍କର ମାନଭଞ୍ଜନ ପାଇଁ କୃଷ୍ଣଙ୍କର ପ୍ରଚେଷ୍ଟାର ଶେଷ ନାହିଁ । ଏହି ଅବସରରେ କୃଷ୍ଣଙ୍କ ମୁଖରେ ରାଧାଙ୍କର ରୂପ ବର୍ଣ୍ଣନା କରି କବି ଲେଖିଛନ୍ତି—

> ବନ୍ଧୂକଦ୍ୟୁତିବାନ୍ଧବୋଽୟମଧରଃ ସ୍ନିଗ୍ଧୋ ମଧୂକଚ୍ଛବି—
> ର୍ଗଣ୍ଡଶ୍ଚଣ୍ଡି ଚକାସ୍ତି ନୀଳନଳିନ—ଶ୍ରୀମୋଚନଂ ଲୋଚନମ୍ ।
>
> ନାସାଭ୍ୟେତି ତିଳପ୍ରସୂନ-ପଦବୀଂ କୁନ୍ଦାଭଦନ୍ତି ପ୍ରିୟେ,
> ପ୍ରାୟସ୍ତ୍ୱନ୍ମୁଖସେବୟା ବିଜୟତେ ବିଶ୍ୱଂ ସ ପୁଷ୍ପାୟୁଧଃ ।

(୧୦ମ ସର୍ଗ/୧୪)

ଅର୍ଥାତ୍—ହେ ପ୍ରିୟତମା, ତୋର ସ୍ୱରୁ ଅଧର ସୁନ୍ଦର ବନ୍ଧୂଲ ପୁଷ୍ପସମ ରକ୍ତବର୍ଣ୍ଣ । ବିରହରେ ଗଣ୍ଡସ୍ଥଳ ପାଣ୍ଡୁର ବର୍ଣ୍ଣ ଦିଶୁଛି । ନୀଳକଇଁ ପରି ସୁନ୍ଦର ତୋର ଏ ନେତ୍ର ଶୋଭା । ନାସା ତ ତିଳପୁଷ୍ପ ଦଶନପନ୍ତି କୁନ୍ଦକଢ଼ି ସଦୃଶ ଦିଶୁଥିବାରୁ ମନେହେଉଛି କନ୍ଦର୍ପ ଯେପରି ତାର ପଞ୍ଚ ପୁଷ୍ପ ଶରରେ ତାକୁ ସଜ୍ଜିତ କରିଛି । ଅନୁମାନ କରାଯାଉଛି ବିଶ୍ୱବିଜୟୀ ମୀନକେତନ ସତେ ଯେପରି ତୋର ମୁଖକୁ ଆଶ୍ରୟ କରି ତ୍ରିଭୁବନ ଜୟ କରୁଛି ।

ସେଇ ରାଧାଙ୍କର ନେତ୍ରଯୁଗଳ ଅଳସଯୁକ୍ତ ହୋଇଥିବାରୁ, ସେ ମଦାଳସା ନାମରେ, ଚନ୍ଦ୍ରରୁ ବଳି ରାଧାଙ୍କର ମୁଖଶୋଭା ଅଧିକ ହେବାରୁ ସେ ଇନ୍ଦୁସନ୍ଦୀପନୀ, ମନୋହର ଗଢ଼ଥିବାରୁ ମନୋରମା, ରମ୍ଭାବୃକ୍ଷ ସଦୃଶ ଊରୁଥିବାରୁ ରମ୍ଭା ନାମରେ ପରିଚିତା । ରତିକଳାକୁଶଳା ହେବାରୁ ରାଧା କଳାବତୀ ଭାବରେ, ସୁନ୍ଦର ଭ୍ରୂଯୁଗଳ ପାଇଁ ଚନ୍ଦ୍ରଲେଖାର ଖ୍ୟାତିର ସେ ଅଧିକାରିଣୀ । ସ୍ୱର୍ଗର ଅପ୍‌ସରାମାନଙ୍କର ସୌନ୍ଦର୍ଯ୍ୟକୁ ନେଇ ତନ୍ୱୀ ରାଧା ମର୍ତ୍ତ୍ୟରେ ଅବତରଣ କରିଛନ୍ତି ।

କୃଷ୍ଣଙ୍କର ରୂପବର୍ଣ୍ଣନାରେ କବିଙ୍କର ପାରଦର୍ଶିତା ବିଶେଷ ଲକ୍ଷଣୀୟ । ବୃନ୍ଦାବନରେ ବସନ୍ତରାସରେ ନିମଜ୍ଜିତ କୃଷ୍ଣଙ୍କର ମନୋହର ରୂପର ଚିତ୍ର ଦେବାକୁ ଯାଇ କବି ଲେଖିଛନ୍ତି—

ଚନ୍ଦନଚର୍ଚ୍ଚିତ ନୀଳକଳେବର ପୀତବସନ ବନମାଳୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗ ସ୍ମିତଶାଳୀ
ହରିରିହ ମୁଗ୍ଧବଧୂନିକରେ
ବିଳସତି ବିଳାସିନୀ କେଳିପରେ । (୧ମ ସର୍ଗ/୪୦)

ଅର୍ଥାତ୍—ଚନ୍ଦନରେ ଚର୍ଚ୍ଚିତ ସୁନ୍ଦର ନୀଳତନୁ କୃଷ୍ଣଙ୍କର କଟୀଦେଶରେ ଶୋଭାପାଉଛି ପୀତବସ୍ତ୍ର, ଗଳାରେ ବନମାଳା, କର୍ଣ୍ଣରେ କୁଣ୍ଡଳର ଦ୍ୟୁତି ଝଟକି ଉଠୁଛି । ଶ୍ରୀପତି କୃଷ୍ଣ ବିମୋହିତ ଗୋପାଙ୍ଗନାଙ୍କ ସଙ୍ଗରେ ବୃନ୍ଦାବନରେ ନାନାରଙ୍ଗରେ କେଳି କରୁଛନ୍ତି ।

ଚନ୍ଦ୍ରକ ଚାରୁ ମୟୂର ଶିଖଣ୍ଡକମଣ୍ଡଳ ବଳୟିତକେଶମ୍
ପ୍ରଚୁର ପୁରନ୍ଦର ଧନୁରନୁରଞ୍ଜିତମେଦୁର ମୁଦିର ସୁବେଶମ୍ ।

ଅର୍ଥାତ୍—କୃଷ୍ଣଙ୍କର ମୟୂର ଚନ୍ଦ୍ରିକାରେ ଶୋଭିତ କେଶଗୁଚ୍ଛକୁ ଦେଖି ମନେ ହେଉଛି ସତେ ଯେପରି ନବୀନ ନୀରଦ ଅଙ୍ଗରେ ସପ୍ତରଙ୍ଗୀ ଇନ୍ଦ୍ରଧନୁ ଶୋଭାପାଉଛି ।

ଶୃଙ୍ଗାର କଳାର କବି ଜୟଦେବ । ନାଟ୍ୟଶାସ୍ତ୍ରରେ ତିନି ପ୍ରକାର ଶୃଙ୍ଗାରର ବର୍ଣ୍ଣନା କରାଯାଇଛି । ଧର୍ମଶୃଙ୍ଗାର, ଅର୍ଥଶୃଙ୍ଗାର ଓ କାମଶୃଙ୍ଗାର । ଏହି କାବ୍ୟରେ କାମଶୃଙ୍ଗାର ହିଁ ମୁଖ୍ୟତଃ ଚର୍ଚ୍ଚିତ ହୋଇଛି । ପତି ପତ୍ନୀର ସମ୍ବନ୍ଧ ବା ଗୃହସ୍ଥ ଧର୍ମରେ କୁଳଶୀଳ ମର୍ଯ୍ୟାଦାବୋଧ ସମ୍ପନ୍ନ ସମ୍ଭୋଗ ବା ସ୍ୱକୀୟା ରତିଚର୍ଯ୍ୟାର ବର୍ଣ୍ଣନା ଏଥିରେ ନାହିଁ । ପ୍ରେମ ଅପେକ୍ଷା ଉପଭୋଗସର୍ବସ୍ୱତା ଏଠାରେ ପ୍ରକାଶ ପାଇଛି । ବିରହ କେବଳ ଦେହ ମିଳନର ଆକାଂକ୍ଷାରେ ଜର୍ଜରିତ ହୋଇଛି । ଶୃଙ୍ଗାର ରସକୁ ସାଧାରଣ ଶାଳୀନତା ଦେବାର ଚେଷ୍ଟା କରାଯାଇଥିବା ପରି ମନେହୁଏନା । କାରଣ ସୁଯୋଗମାତ୍ରେ ହିଁ ନାୟକ ନାୟିକା କାମ କଳାରେ ପ୍ରବୃତ୍ତ ହୋଇଛନ୍ତି । କାବ୍ୟର ପ୍ରଥମ ସର୍ଗର ପ୍ରଥମ ଶ୍ଳୋକର ଭାବ ଅନୁସାରେ ନନ୍ଦ, କୃଷ୍ଣଙ୍କୁ ସାଙ୍ଗରେ ନେଇ ପଥରେ ଯାଉ ଯାଉ ହଠାତ୍ ଆକାଶ ଘନ ମେଘମାଳାରେ ଆଚ୍ଛାଦିତ ହୋଇଗଲା । ତମାଳତରୁ ଗାଢ଼ ଶ୍ୟାମବର୍ଣ୍ଣ ହୋଇଥିବାରୁ ମେଘ ଅନ୍ଧାରରେ ତମାଳ ବନରେ ଆହୁରି ଘନ ଅନ୍ଧାର ଘୋଟିଗଲା । କୃଷ୍ଣଙ୍କର ନିରାପଦ ପ୍ରତ୍ୟାବର୍ତ୍ତନ କଥା ନନ୍ଦ ଭାବୁଥିବା ବେଳେ ଶ୍ରୀମତୀ ରାଧା ହଠାତ୍ ସେଠାରେ ଉପସ୍ଥିତ ହେବାର ଦେଖି ନନ୍ଦ ଆଶ୍ୱସ୍ତ ହୋଇଗଲେ । କୃଷ୍ଣଙ୍କୁ ସଙ୍ଗରେ ନେଇ ଘରେ ନିରାପଦରେ ପହଞ୍ଚାଇ ଦେବାର ଦାୟିତ୍ୱ ରାଧାଙ୍କୁ ଦେଇ ନନ୍ଦ ନିଜର ଗନ୍ତବ୍ୟ ପଥରେ ଚାଲିଗଲେ । ଏହି ସୁଯୋଗରେ ରାଧା ତାଙ୍କର ଆକାଂକ୍ଷିତ ପୁରୁଷ କୃଷ୍ଣଙ୍କ ସହିତ ତମାଳ ବନ ପ୍ରାନ୍ତରେ ଥିବା ଯମୁନାକୂଳସ୍ଥ କଦମ୍ବତରୁ ତଳେ କେଳି ରଚନା କଲେ ।

ଅନ୍ୟତମ ବିଶିଷ୍ଟ ବୈଷ୍ଣବ ପ୍ରାମାଣିକ ଗ୍ରନ୍ଥ ଭାଗବତ (୨୯/୩୪-୩୫)ରେ ଗୋପରମଣୀଗଣ କୃଷ୍ଣଙ୍କର ମୋହନ ବଂଶୀର ଆହ୍ୱାନରେ ଲଜ୍ଜା, ସଙ୍କୋଚ, ଭୟ ସଂସ୍କାର, ଗୃହଧର୍ମ, କୁଳାଚାର ଓ ସାମାଜିକ ରୀତି ପ୍ରଭୃତିକୁ ଉପେକ୍ଷା କରି ଉନ୍ମାଦିନୀ ପରି ଧାଇଁ ଆସିଛନ୍ତି ବୃନ୍ଦାବନର ନିଭୃତ କୁଞ୍ଜକୁ । କୃଷ୍ଣ ପ୍ରେମର ପ୍ରବାହରେ ପରିପ୍ଲୁତା ଗୋପୀଗଣ ଆପଣାକୁ ସର୍ବାନ୍ତକରଣରେ ନିବେଦିତ କରି କହିଛନ୍ତି—

> ଚିତ୍ତଂ ସୁଖେନ ଭବତାପହୃତଂ ଗୃହେଷୁ
> ଯନ୍ନିର୍ବିଶତ୍ୟୁତ କରାବପି ଗୃହ୍ୟକୃତ୍ୟେ ।
> ପାଦୌପଦଂ ନ ଚଳତସ୍ତବ ପାଦମୂଳା—
> ଦ୍ୟାମଃ କଥଂ ବ୍ରଜମଥୋ କରବାମ କିମ୍ବା ।
> ସିଞ୍ଚାଙ୍ଗ ନସ୍ତ୍ୱଧରାମୃତପୂରକେଣ
> ହାସାବଲୋକ କଳଗୀତଜହୃଚ୍ଛୟାଗ୍ନିମ୍ ।

ନୋବେଦ୍‌ବୟୋଂ ବିରହଜାଗ୍ନ୍ୟୁପଯୁକ୍ତଦେହା
ଧ୍ୟାନେନୟାମ ପଦୟୋଃ ପଦବୀଂ ସଖେ ତେ ।

ଅର୍ଥାତ୍, ହେ କୃଷ୍ଣ, ଆମେ ଆମର ଗୃହ ସ୍ଥଳରେ ସୁଖରେ ଥିଲୁ । ଆମର ଚିତ୍ତ ଚଞ୍ଚଳ ନ ଥିଲା । ତୁମେ ଆମର ସେ ସୁଖ ଅପହରଣ କରନେଇଛ । ଆମର ଯେଉଁ ପାଦ ଆଜ ଗୃହଗୃହ୍ର ତୁମ ପାଖକୁ ଦଉଡ଼ି ଆସିଛି ସେ ଆଉ ଫେର ଯିବାକୁ ଚାହେଁନ । ଏବେ ଆଉ ଫେରଗଲେ ବା ଲାଭ କ'ଣ ! ତୁମର ମୃଦୁ ମଧୁର ବଂଶୀର ମନୋହର ସ୍ୱନ, ତୁମର ସ୍ମିତହାସ, ତୁମର ମନ୍ଦ ମନ୍ଦ ଦୃଷ୍ଟିର ଆନନ୍ଦ ପାଇବା ପରେ ଆମର ଆଉ ଦୃଢ଼ତାସ୍ୱ ଗତ ବା କାହିଁ । ତେଣୁ ତୁମ ପ୍ରେମ ଦାନରେ, ଅଧରର ସ୍ପର୍ଶରେ ଆମକୁ ଧନ୍ୟକର, ତୃପ୍ତ କର । ନ ହେଲେ ତୁମ ବିରହରେ ଦଗ୍‌ଧୀଭୂତ ଏ ଶରୀରକୁ ନେଇ ଆମେ ତୁମର ପାଦ ଦ୍ୱୟର ଧ୍ୟାନରେ କାଳାତିପାତ କରିବୁ ।

ଏଠାରେ ଗୋପୀ ପ୍ରେମରେ ଆତ୍ମସମର୍ପଣ ସମ୍ପୂର୍ଣ୍ଣ ହୋଇଥିବାରୁ ଶୃଙ୍ଗାର ଓ ବିରହ ଉଭୟେ ମର୍ଯ୍ୟାଦାବନ୍ତ ହୋଇଛନ୍ତି । କିନ୍ତୁ ଗୀତଗୋବିନ୍ଦରେ ପ୍ରେମର ଏହି ମର୍ଯ୍ୟାଦା, ଆତ୍ମସମର୍ପଣର ଏହି ମହନୀୟତା ଦେଖିବାକୁ ମିଳେ ନାହିଁ । ଏଠି ବୃନ୍ଦାବନରେ ବସନ୍ତରସରେ ମିଳିତା ହୋଇଥିବା କେହି ଗୋପାଙ୍ଗନା କୃଷ୍ଣଙ୍କୁ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରୁଛି ତ, କେହି ତାଙ୍କୁ ଅକୁଣ୍ଠିତ ଚୁମ୍ବନଦାନରେ ବିହ୍ୱଳ କରୁଛି । ପୁଣି କେହି—

କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାଜଳକୂଳେ
ମଞ୍ଜୁଳବଞ୍ଜୁଳ କୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଳେ । [୧ମ ସର୍ଗ/୪୪]

ଅର୍ଥାତ୍—କୌଣସି ଗୋପୀ ବେତସ କୁଞ୍ଜରେ କେଳିରତ ଶ୍ରୀହରିଙ୍କୁ ଦେଖି କାମତାପିତା ହୋଇ କାଳିନ୍ଦୀ ପୁଳିନରେ ତାଙ୍କର ପରିହିତ ବସ୍ତ୍ରକୁ ଆକର୍ଷିତ କରୁଛି ।

କୃଷ୍ଣ ମଧ୍ୟ 'ଶ୍ଳିଷ୍ୟତି କାମପି, ଚୁଂବତି କାମପି ରମୟତି କାମପି ରାମାମ୍' ରୀତିରେ ପ୍ରେମିକ ପରିବର୍ତ୍ତେ କାମୁକ ପୁରୁଷଟିଏ ପରି ମନେ ହୁଅନ୍ତି । ଭବକ୍ଲେଶ ଦୂରକାରୀ କେଶବ କିନ୍ତୁ ନର୍ତ୍ତନରେ ଗୋପକାମିନୀମାନେ ହସ୍ୟ, କଟାକ୍ଷପାତରେ ମୁକୁଳିତ କେଶ ପାଶକୁ ବାନ୍ଧିବାର ଛଳନାରେ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରୁଥିବା ବାହୁ ମୂଳରୁ ସେମାନଙ୍କର ପୀନକୁଚ ଦେଖାଇବା ବେଳେ ସସ୍ମିତ ବଦନରେ ସେମାନଙ୍କ ବକ୍ଷ ଉପରୁ ବସ୍ତ୍ର ଅପସାରିତ କରି ଦିଅନ୍ତି ।

କାବ୍ୟର ମୁଖ୍ୟ ନାୟିକା ରାଧାଙ୍କର କେଶଠାରୁ ପାଦ ନଖ ପର୍ଯ୍ୟନ୍ତ ଶୃଙ୍ଗାରିକ ବର୍ଣ୍ଣନାରେ ପୂର୍ଣ୍ଣ । ତାଙ୍କର ଶରୀର କୃଷ୍ଣଙ୍କର ସୁଖଭୋଗ ସାଧନ ରୂପେ ହିଁ ବର୍ଣ୍ଣିତ । ରାଧାଙ୍କର ମଧ୍ୟ ସମ୍ଭୋଗ ଲାଳସାର ଉଗ୍ରତା ଲକ୍ଷ୍ୟ କରାଯାଏ । ପ୍ରଥମ ଅବସ୍ଥାରେ ନନ୍ଦଙ୍କର ଅନୁରୋଧ ରକ୍ଷା କରି କୃଷ୍ଣଙ୍କୁ ନିରାପଦରେ ଘରେ ଆଣି ଛାଡ଼ିବା ଅବସରରେ ଯମୁନା କୂଳରେ ତାଙ୍କ ସହିତ ରତିରଙ୍ଗରେ ମାତିବା-ଠାରୁ ଆରମ୍ଭ କରି, ଗୋପୀଙ୍କ ସହ କେଳିକରୁଥିବା କୃଷ୍ଣଙ୍କୁ ଦେଖିବା, ପୁଣି ତାଙ୍କ ସହିତ ମିଳନ ହେବା ଆକାଂକ୍ଷାରେ କୁଞ୍ଜରେ ଅପେକ୍ଷା କରିବା ଓ ଶେଷରେ ତାଙ୍କ ସହିତ ସଂଭୋଗରେ ଲିପ୍ତ ହେବା ପର୍ଯ୍ୟନ୍ତ ସବୁ ସମୟରେ କୃଷ୍ଣଙ୍କର ଶରୀର ସାନ୍ନିଧ୍ୟ ଲାଗି ଅଧୀର ହୋଇଛନ୍ତି । ଏହି ସ୍ମର ଶାସ୍ତ୍ର ପଣ୍ଡିତା ନାୟିକା କୃଷ୍ଣଙ୍କୁ ଦର୍ଶନ କରିବା ସମୟରେ ଓ ଅଦର୍ଶନ କାଳରେ, ଉଭୟ ଅବସ୍ଥାରେ କେବଳ ଦେହ ସୁଖ କାମନାରେ ବ୍ୟାକୁଳ ହୋଇଛନ୍ତି ।

ରସିକ କୃଷ୍ଣ ମଧ୍ୟ ରାଧାଙ୍କର ପୀନ ସ୍ତନ ଓ ଗୁରୁ ନିତମ୍ବର ଚିନ୍ତାରେ ସଦା ଆଚ୍ଛନ୍ନ । ରାଧାଙ୍କ ସହ ପ୍ରତାରଣା କରି ଅନ୍ୟ ନାରୀ ସମ୍ଭୋଗର ଅପରାଧ ପାଇଁ ସେ ଯେଉଁ ପ୍ରକାର ଦଣ୍ଡ ରାଧାଙ୍କଠାରୁ ଆଶା କରୁଛନ୍ତି ତାହା ମଧ୍ୟ ଦେଖିବାର କଥା—

ମୁଗ୍‌ଧେ ବିଧେହି ମୟି ନିର୍ଦ୍ଦୟ-ଦନ୍ତ ଦଂଶମ୍
ଦୋର୍ବଲ୍ଲି-ବନ୍ଧ-ନିବିଡ଼-ସ୍ତନ ପୀଡ଼ନାନି । [୧୦ମ/୧୧]

ଅର୍ଥାତ୍—ହେ ମୁଗ୍‌ଧା ନାରୀ, ତୋର ତୀବ୍ର ଦଶନାଘାତରେ ମତେ ଆହତ କର । ତୋର ଦୁଇ ଭୁଜ ପାଶରେ ମତେ ଦୃଢ଼ ଭାବରେ ବାନ୍ଧି ପକାଇ ତୋର ପୀନ ସ୍ତନ ଦ୍ୱାରା ମତେ ନିବିଡ଼ ଭାବରେ ପୀଡ଼ନ କର ।—ଏହାହିଁ ହେବ ତାଙ୍କ ପ୍ରବଞ୍ଚନାର ଉପଯୁକ୍ତ ଶାସ୍ତି ।

କାବ୍ୟଟିରେ ପ୍ରେମର ଗଭୀର ମନନଶୀଳ ଅବସ୍ଥା ପରିବର୍ତ୍ତେ ସମ୍ଭୋଗ-ଲୀଳା ଓ କାମୋତ୍ତେଜନାର ବିପୁଳ ରସମୟ ବର୍ଣ୍ଣନା ରହିଛି ।

ସେଥିପାଇଁ କବି ବୋଧହୁଏ ପ୍ରଥମରୁ ସ୍ପଷ୍ଟ କରିଦେଇଛନ୍ତି, 'ଯଦି ହରିସ୍ମରଣେ ସରସଂ ମନୋ, ଯଦି ବିଳାସକଳାସୁ କୁତୂହଳମ୍' ତେବେ ମଧୁର-କୋମଳ କାନ୍ତପଦାବଳୀରେ ରଚିତ ତାଙ୍କର କାବ୍ୟ ରସିକମାନଙ୍କର ଧ୍ୟେୟ ହେଉ । ଗୀତଗୋବିନ୍ଦରେ ବର୍ଣ୍ଣିତ ଶୃଙ୍ଗାରିକତାର ପ୍ରଶଂସା କରି ପଞ୍ଚଦଶ ଶତାବ୍ଦୀରେ ନାଭାଜୀଦାସ ତାଙ୍କର ଭକ୍ତମାଳା ଗ୍ରନ୍ଥରେ ଯଥାର୍ଥ ଅଭିମତ ଦେଇ କହିଥିଲେ 'କୋକକାବ୍ୟନବରସସରସଶୃଙ୍ଗାର କୌ ଆଗାର' । ଏହା କାମଶାସ୍ତ୍ର କାବ୍ୟ, ନବରସ ଓ ସରସ ଶୃଙ୍ଗାରର ଆଗାର ସ୍ୱରୂପ ।

ସଂସ୍କୃତ କାବ୍ୟ ସାହିତ୍ୟରେ କବି ଶ୍ରୀହର୍ଷଙ୍କର ରଚିତ 'ନୈଷଧ ଚରିତମ୍' ଏକ ଆଦର୍ଶ କାବ୍ୟ ଭାବରେ ବହୁ କବିଙ୍କ ଦ୍ୱାରା ଗୃହୀତ ହୋଇଛି । ମଧ୍ୟଯୁଗୀୟ ପ୍ରାନ୍ତୀୟ କାବ୍ୟକାରଗଣ ମଧ୍ୟ ପ୍ରାକୃତ ଭାଷାରେ କାବ୍ୟ ପ୍ରଣୟନ କରିବାବେଳେ ନୈଷଧ କାବ୍ୟର ବର୍ଣ୍ଣନାରୀତି, ଉପମାବିନ୍ୟାସ, ଲଳିତପଦାବଳୀକୁ ବିଶେଷ ଭାବରେ ଅନୁସରଣ କରିଛନ୍ତି । ପ୍ରାୟ ଦ୍ୱାଦଶ ଶତାବ୍ଦୀରେ ରଚିତ ଏହି କାବ୍ୟକୁ କବି ଜୟଦେବ ମଧ୍ୟ ସ୍ଥଳବିଶେଷରେ ଆହରଣ କରିଛନ୍ତି । ରାଧାଙ୍କ ବିରହରେ ବ୍ୟାକୁଳ କୃଷ୍ଣ କନ୍ଦର୍ପକୁ ନିବେଦନ କରିଛନ୍ତି ଯେ, ହର କନ୍ଦର୍ପର ଶତ୍ରୁ ହୋଇଥିବାରୁ କୃଷ୍ଣଙ୍କର ହୃଦରେ ଶୋଭାପାଉଥିବା ବନମାଳାକୁ ଦେଖି ସର୍ପମାଳା, କଣ୍ଠର କୁବଳୟ ଦଳକୁ ଦେଖି ନୀଳକଣ୍ଠ ହର ଭ୍ରାନ୍ତିରେ କନ୍ଦର୍ପ ତାଙ୍କ ଉପରେ ଯେଉଁ ପ୍ରହାର କରୁଛି ତାହା ତା'ର ଉଚିତ ନୁହେଁ । ଏହି ପ୍ରସଙ୍ଗରେ ରଚିତ ଅଂଶଟି ହେଉଛି—

> ହୃଦି ବିସଲତାହାରୋ ନାୟଂ ଭୁଜଙ୍ଗ
> କୁବଳୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।
> ମଲୟଜରଜୋ ନେଦଂ ଭସ୍ମପ୍ରିୟାରହିତେ ମୟି, (୩ୟ ସର୍ଗ/୧୧)
> ପ୍ରହର ନ ହରଭ୍ରାନ୍ତ୍ୟାନଂଗକ୍ରୁଧା କିମୁଧାବସି ।

ସମାନ ଭାବ ଓ ସମାନ ଭାଷା ଦେଖିବାକୁ ମିଳେ ନୈଷଧ କାବ୍ୟର ଚତୁର୍ଥ ସର୍ଗର ୨୭ ପଦରେ —

> ବିରହତାପିନି ଚନ୍ଦନପାଂଶୁଭିର୍ବପୁଷି ସାର୍ପିତପାଣ୍ଡିମମଣ୍ଡନା
> ବିଷଧରାଭବିସାଭରଣା ଦଧେ ରତିପତିଂ ପ୍ରତି ଶମ୍ଭୁବିଭୀଷିକାମ୍ ।

ଗୀତଗୋବିନ୍ଦରେ ଅଭିମାନିନୀ ରାଧାଙ୍କର ମାନଭଞ୍ଜନ ପାଇଁ ରସିକ କୃଷ୍ଣ ସକଳ ପ୍ରକାର ଚେଷ୍ଟା କରିବା ପରେ ମଧ୍ୟ ପ୍ରିୟତମା ପ୍ରସନ୍ନ ନ ହେବାରୁ ଶେଷରେ ରାଧାଙ୍କର ପାଦତଳେ ପଡ଼ିଯାଇ କହିଛନ୍ତି—

> ସ୍ମର-ଗରଳ-ଖଣ୍ଡନଂ ମମ ଶିରସି ମଣ୍ଡନଂ
> ଦେହି ପଦପଲ୍ଲବ ମୁଦାରମ୍ । (୧୦ମ ସର୍ଗ/୮)

ଯଦବା ଅନ୍ୟନ କବି କୃଷ୍ଣଙ୍କ ମୁଖରେ କୁହାଇଛନ୍ତି—

> 'କରକମଲେନ କରୋମି ଚରଣମହମାଗମିତାସି ବିଦୂରମ୍' । (୧୨ଶ ସର୍ଗ/୨)

ଅର୍ଥାତ୍—ଦୂରପଥ ଚାଲି କୁଞ୍ଜକୁ ଆସିଥିବା ରାଧାଙ୍କର ପାଦପୀଡ଼ା ଦୂର କରିବା ପାଇଁ କୃଷ୍ଣ ତାଙ୍କର ଶ୍ରୀପଦ୍ମକୁ ନିଜ କରକମଳରେ ମର୍ଦ୍ଦନ କରିବା ନିମନ୍ତେ ବିନୀତ ଅନୁରୋଧ ଜଣାଇଛନ୍ତି ।

ତଥାପି ଗୀତଗୋବିନ୍ଦର 'ଦେହି ପଦ-ପଲ୍ଲବମୁଦାରମ୍' ଉକ୍ତିଟିକୁ ନେଇ ଓଡ଼ିଶାରେ ଏକ ଜନପ୍ରିୟ କଥା ପ୍ରଚଳିତ ଅଛି । କବି ଜୟଦେବ କାବ୍ୟରଚନା ସମୟରେ ରାଧାଙ୍କର ଦୁର୍ବାର ମାନଭଞ୍ଜନ ପ୍ରସଙ୍ଗ ବର୍ଣ୍ଣନା କରୁଥାନ୍ତି । କଥାଦେଇ ଘନଶ୍ୟାମ ଠିକ୍ ସମୟରେ ନ ଆସିବାରୁ ରାଧା ସମଗ୍ର ରାତିଟି ଉଜାଗରରେ ଉତ୍କଣ୍ଠିତା ହୋଇ ଅପେକ୍ଷା କରିଛନ୍ତି । ଅଥଚ ପ୍ରଭାତ କାଳରେ କୃଷ୍ଣଚନ୍ଦ୍ର ଆସି ପହଞ୍ଚିଛନ୍ତି ରତିକ୍ଳାନ୍ତ ଅବସ୍ଥାରେ । ଶରୀରରେ ପୁଣି ଅନ୍ୟ ନାରୀ ସମ୍ଭୋଗର ଚିହ୍ନମାନ ସ୍ପଷ୍ଟ । ପ୍ରଚଣ୍ଡ ଅଭିମାନ ଓ କ୍ରୋଧରେ ରାଧା କୃଷ୍ଣଙ୍କର କୌଣସି ଚାଟୁବାକ୍ୟ ପ୍ରତି କର୍ଣ୍ଣପାତ କଲେ ନାହିଁ । ମାନଭଞ୍ଜନର ସକଳ ପ୍ରଚେଷ୍ଟା ସରି-ସିବାରୁ କୃଷ୍ଣ ଅଭିମାନିନୀ ପ୍ରିୟାର ପାଦକୁ ନିଜ ମସ୍ତକରେ ଧାରଣ କରିବାକୁ ଆଗଭର ହୋଇଛନ୍ତି । କବି ଜୟଦେବଙ୍କର ବର୍ଣ୍ଣନା ଏହିଠାରେ ଅଟକିଗଲା । ଭାବିଲେ ଯାହାହେଲେ ବି ପରମପ୍ରଭୁ ଶ୍ରୀକୃଷ୍ଣଙ୍କ ମସ୍ତକରେ ରାଧାଙ୍କର ପାଦ ! ଅଥଚ ବାରମ୍ବାର ମନକୁ ଆସୁଥିଲା ସେହି ପଂକ୍ତିଟି, ତଥାପି କବି ତାକୁ ତାଳପତ୍ର ଲେଖନୀରେ ରୂପ ଦେଇ ନ ପାରି ସ୍ନାନ କରିବାର ସମୟ ହୋଇଥିବାରୁ ଉଠି ଚାଲିଗଲେ । ଠିକ୍ ପରେ ପରେ ଜୟଦେବଙ୍କ ରୂପରେ ପ୍ରବେଶ କଲେ କୃଷ୍ଣ । ଭକ୍ତପତ୍ନୀ ପଦ୍ମାବତୀଙ୍କୁ ଭୋଜନ ବ୍ୟବସ୍ଥା କରିବାକୁ କହି ଭିତରକୁ ଯାଇ ସ୍ୱହସ୍ତରେ 'ଦେହିପଦ-ପଲ୍ଲବମୁଦାରମ୍' ବାକ୍ୟଟି ଲେଖି ପଂକ୍ତିଟି ପୂର୍ଣ୍ଣ କରିଦେଇ-ଥିଲେ ।

ଭକ୍ତମାନେ ଏହି କାହାଣୀକୁ ବିଶ୍ୱାସ କରନ୍ତି···ଭାବବିହ୍ୱଳ ହୁଅନ୍ତି । କିନ୍ତୁ ପ୍ରକୃତ ଜୀବନରେ ପ୍ରିୟାର ମାନଭଞ୍ଜନ ପାଇଁ ପୁରୁଷଶ୍ରେଷ୍ଠମାନେ ଯେକୌଣସି ପ୍ରଥା ଅବଲମ୍ବନ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ । ପାଦତଳେ ପଡ଼ିବା କିବା କଥା ! ତେବେ ସଂସ୍କୃତ ସାହିତ୍ୟରେ ଏହାର ସୂଚନା ବିରଳ ନୁହେଁ । ନୈଷଧ କାବ୍ୟରେ ନଳଙ୍କ ମସ୍ତକରେ ଲାଗିଛି ଦମୟନ୍ତୀଙ୍କ ପାଦର ଅଳତା । ନଳଙ୍କର ଲଲାଟ ରକ୍ତବର୍ଣ୍ଣ ଦିଶୁଥିବାର ଦେଖି ଦମୟନ୍ତୀଙ୍କର ମନ ପ୍ରସନ୍ନ ହୋଇଉଠିଛି ପୂର୍ବରାତ୍ରିର ସ୍ମୃତିରେ । ତାଙ୍କ ମନ ନେବାପାଇଁ ନଳ ବିନ୍ତି କରୁ କରୁ ତାଙ୍କ ପାଦତଳେ ପଡ଼ିଯାଇଥିବାର ଦୃଶ୍ୟ ତାଙ୍କ ଆଖିଆଗରେ ଭାସିଉଠିଛି—

ନ୍ୟକ୍ଷସ୍ୟାନୁଚରଣସ୍ୟ ଚୁମ୍ବନା-<br>
ଚ୍ଚାରୁଭାଲମବଲୋକ୍ୟ ତନ୍ମୁଖମ୍<br>
ସା ହ୍ରିୟା ତେନଭାନନାଽସ୍ମର—<br>
ନ୍ନେଷ ରାଗମୁଦିତଂ ପଦଂ ନିଶଃ । (୧୮ସର୍ଗ/୧୨୭)

ହୁଏତ ସଂସ୍କୃତ ସାହିତ୍ୟର ଏହି ବର୍ଣ୍ଣନା କବି ଜୟଦେବଙ୍କୁ ପ୍ରଭାବିତ କରିଥିବ କୃଷ୍ଣଙ୍କ ଗୃହଚ୍ଛ୍ୟୁ ବର୍ଣ୍ଣନା କରିବାରେ । କିନ୍ତୁ ବୈଷ୍ଣବ ଭକ୍ତମାନେ ଶ୍ରୀକୃଷ୍ଣଙ୍କୁ ପରମ ଈଶ୍ୱର ଜ୍ଞାନ କରୁଥିବାରୁ ଏ ପ୍ରକାର ବର୍ଣ୍ଣନାକୁ ଗ୍ରହଣ କରିପାରିବା ପାଇଁ ଏକ ଭକ୍ତିକ କାରଣ ସଂଯୋଜନ କରିଥାଇପାରନ୍ତି । କିନ୍ତୁ କବି ଜୟଦେବ ତାଙ୍କର କାବ୍ୟନାୟକଙ୍କୁ ପ୍ରେମିକ ପୁରୁଷଟିଏ ଭାବରେ ହିଁ ଦେଖିଛନ୍ତି ଓ ତାଙ୍କର ପ୍ରେମିକା ନାରୀଟି ପାଖରେ ସମସ୍ତ ପ୍ରକାର ଆକୁତିକୁ ସ୍ୱାଭାବିକ ଆଚରଣ ବୋଲି ମନେ କରିଛନ୍ତି । ହୁଏତ ସେଠାରେ ଐଶ୍ୱରିକ ମହିମା ଆରୋପ କରିବାର ପ୍ରୟାସ କରାଯାଇଛି । ପରବର୍ତ୍ତୀ କାଳରେ ଏବଂ କୃଷ୍ଣଙ୍କର 'ଦେହିପଦ-ପଲ୍ଲବମୁଦାରମ୍' ପରି ଏକ ସାଧାରଣ ଘଟଣାକୁ ଏକ ଈଶ୍ୱରୀୟ ସ୍ୱୀକୃତି ଦେବାପାଇଁ କାହାଣୀଟିର ପରିକଳ୍ପନା କରାଯାଇଛି ।

ରୂପ ଓ ସୌନ୍ଦର୍ଯ୍ୟର ଉପାସକ କବି ଜୟଦେବ ବିଦଗ୍ଧ ·ନାରୀପୁରୁଷର ମାନ ଅଭିମାନ ଓ ଅନୁରାଗରେ ଉଚ୍ଚାରିତ ମଧୁର ବାଣୀସମୂହକୁ ସ୍ୱାଭାବିକ କାନ୍ତକୋମଳ ଲଳିତ ପଦାବଳୀରେ ପ୍ରକାଶ କରିଛନ୍ତି । କାବ୍ୟର ପ୍ରତିଟି ପଂକ୍ତିର ସଂଗୀତମୟ ଶବ୍ଦସଂଯୋଜନ ପାଠକ ଶ୍ରୋତା ମନରେ ଦୀର୍ଘକାଳ ଧରି ଅନୁରଣିତ ହୋଇ ରହିଥାଏ । ଏହି କାବ୍ୟଟିକୁ ପରବର୍ତ୍ତୀ କାଳରେ ବୈଷ୍ଣବ ଭକ୍ତମାନେ ଯେତେ ଧାର୍ମିକ ରୂପ ପ୍ରଦାନ କରିବାକୁ ଚେଷ୍ଟା କରିଥିଲେ ମଧ୍ୟ ଏହା ଯେ କୌଣସି ଧର୍ମତତ୍ତ୍ୱ ବ୍ୟାଖ୍ୟା କରିବା ପାଇଁ ବା ଦିବ୍ୟପୁରୁଷ-ନାରୀଙ୍କର ସ୍ୱର୍ଗୀୟ ପ୍ରେମର ଶୁଦ୍ଧତା ପ୍ରକଟ କରିବା ପାଇଁ ଉଦ୍ଦିଷ୍ଟ ଥିଲା ତାହା ମନେହୁଏ ନାହିଁ । କବି କାବ୍ୟର ପ୍ରଥମରେ (୧ମ ସର୍ଗ/୩ୟ ପଦ) ରସିକ ବିଦଗ୍ଧମାନଙ୍କର ଚିତ୍ତବିନୋଦନ ପାଇଁ କାବ୍ୟରଚନା କରିଥିବା କଥା ସ୍ପଷ୍ଟ କରିଦେଇଛନ୍ତି, ଭକ୍ତିଧର୍ମର ପ୍ରଚାର ପାଇଁ ନୁହେଁ । ରାଧାକୃଷ୍ଣଙ୍କୁ ନେଇ କାବ୍ୟରଚନା କରାଯାଇ-ଥିବାରୁ ଏହା ଶୁଦ୍ଧାଭକ୍ତିର ଉପାସକମାନଙ୍କ ପାଇଁ ଏକ ପ୍ରାମାଣିକ ଗ୍ରନ୍ଥ ବୋଲି ମନେକରାଯାଉଥିଲେ ମଧ୍ୟ ଚୈତନ୍ୟ ପ୍ରବର୍ତ୍ତିତ ଗୌଡ଼ୀୟ ଧର୍ମଧାରଣାର ପ୍ରାୟ ତିନିଶତ ବର୍ଷ ପୂର୍ବରୁ ଏହା ରଚିତ ହୋଇଥିବାରୁ ଜୟଦେବଙ୍କୁ ଜଣେ ଶୁଦ୍ଧାଭକ୍ତିର ଉପାସକ ବୈଷ୍ଣବ ଭକ୍ତ ଭାବରେ ଗ୍ରହଣ କରିବା ସମୀଚୀନ ମନେହୁଏ ନାହିଁ । ସେ ଜଣେ କୃଷ୍ଣଭକ୍ତ ଥିବା ହୁଏତ ନିଶ୍ଚିତ, କିନ୍ତୁ ତାଙ୍କ କାବ୍ୟର ନାୟକ କୃଷ୍ଣ ଜଣେ ରସିକଶେଖର ଈଶ୍ୱରୀୟ ମହିମାଦୀପ୍ତ ପୁରୁଷୋତ୍ତମ ନୁହନ୍ତି ।

କାବ୍ୟକଳା ଦୃଷ୍ଟିରୁ ଆଙ୍ଗିକ ଗଠନ, ରସଚର୍ଯ୍ୟା, ବର୍ଣ୍ଣନାବିଳାସ ଅଳଂକାର ସମାବେଶ ଓ ଲଳିତ ପଦାବଳୀ ସମନ୍ୱିତ ଏହି କାବ୍ୟ ଏକ ଅପୂର୍ବ ରସ-

ସ୍ନିଗ୍ଧ କଳାକୃତି । ଏଥିରେ ଭକ୍ତିଭାବନା ଜାଗ୍ରତ ହେବା ଅପେକ୍ଷା ସୌନ୍ଦର୍ଯ୍ୟ-
ବୋଧର ଉଦ୍‌ବୋଧନ ହିଁ ମୁଖ୍ୟତଃ ଘଟିଛି । ଦ୍ୱାଦଶ ଶତକରେ ରଚିତ
ଉତ୍କଳୀୟ କବି ଜୟଦେବଙ୍କର ରଚିତ ଏହି କାବ୍ୟ ଗୀତଗୋବିନ୍ଦର ପ୍ରଭାବରେ
ସଂସ୍କୃତ ଓ ପ୍ରାକୃତ ଭାଷାରେ ଭାରତର ବହୁ ବିଶିଷ୍ଟ କବିଙ୍କ ଦ୍ୱାରା ଅଗଣିତ
ଗୀତିକାବ୍ୟ, ପଦାବଳୀ, ଦୋହା ଓ ନାଟକମାନ ରଚିତ ହୋଇଛି । ଜନପ୍ରିୟତା
ଦୃଷ୍ଟିରୁ ଏ କାବ୍ୟ ଏବେ ବି ଅଦ୍ୱିତୀୟ ସ୍ଥାନ ଗ୍ରହଣ କରିଛି ଭାରତବର୍ଷର ପ୍ରତିଟି
ପ୍ରାନ୍ତରର ସଙ୍ଗୀତ ଓ ନୃତ୍ୟ ଜଗତରେ ।



# ଚର୍ଯ୍ୟାପଦ : ଏକ ଭିନ୍ନ ଦୃଷ୍ଟି

ଅପଭ୍ରଂଶର ଉତ୍ତରକାଳୀନ ଅବସ୍ଥାରେ ଓ ରୂପରେ ରଚିତ ଚର୍ଯ୍ୟାପଦ ଓଡ଼ିଆ ଭାଷାର ଆଦ୍ୟ ନିଦର୍ଶନ ରୂପେ ଗୃହୀତ ହୋଇଛି । ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ବଙ୍ଗଳାର ମହାମହୋପାଧ୍ୟାୟ ହରପ୍ରସାଦ ଶାସ୍ତ୍ରୀ ନେପାଳର ରାଜ-ଦରବାରରୁ ଏକ ପ୍ରାଚୀନ ପୋଥି ସଂଗ୍ରହ କରିଥିଲେ । ସେଥିରେ ଦୁଇ ପ୍ରକାରର ବିଷୟ ଥିଲା । ଗୋଟିଏ ଧର୍ମ ସମ୍ବନ୍ଧୀୟ ବିଧିନିଷେଧବିଷୟକ କେତେକ ଗୀତ ଓ ଅନ୍ୟଗୁଡ଼ିକ ଦୋହା । ଶାସ୍ତ୍ରୀଙ୍କ ଦ୍ୱାରା ପ୍ରଥମେ ଏହା 'ବୌଦ୍ଧଗାନ ଓ ଦୋହା' ନାମରେ ପ୍ରକାଶିତ ହୋଇ ଉକ୍ତ ନାମରେ ପରିଚିତ ହୋଇ ଆସୁଛି । ଏହାର ରଚନାକାଳ ଅଷ୍ଟମ/ନବମଠାରୁ ଏକାଦଶ/ଦ୍ୱାଦଶ ଶତାବ୍ଦୀ ବୋଲି ଅନୁମାନ କରାଯାଏ । ଧର୍ମ ଓ ଭାଷାତତ୍ତ୍ୱ ଦୃଷ୍ଟିରୁ ଏଗୁଡ଼ିକ ଓଡ଼ିଆ ଭାଷାର ପ୍ରାଚୀନ ରୂପ ବୋଲି ନିର୍ଦ୍ଧିଧାରେ କୁହାଯାଇ ପାରେ । ଚର୍ଯ୍ୟାପଦଗୁଡ଼ିକର ରଚୟିତା ଥିଲେ ସହଜିଆ ବୌଦ୍ଧସିଦ୍ଧାଚାର୍ଯ୍ୟଗଣ । ଏହି ସହଜିଆ ଧାର୍ମିକ ପରମ୍ପରା ଓଡ଼ିଶାରେ ଦୃଢ଼ ଭାବରେ ପ୍ରତିଷ୍ଠିତ ଥିଲା ।

**ସହଜଯାନର ସାଧନତତ୍ତ୍ୱ :**

ବୁଦ୍ଧଙ୍କ ପରେ ସମୟକ୍ରମେ ବୌଦ୍ଧଧର୍ମ ଦୁଇ ଭାଗରେ ବିଭକ୍ତ ହୋଇ-ଥିଲା । ମହାଯାନ ଓ ହୀନଯାନ । ହୀନଯାନୀମାନେ 'ଶୂନ୍ୟତା ଉପରେ ହିଁ' କେବଳ ଗୁରୁତ୍ୱ ଆରୋପ କରିଥିଲେ ଓ ବ୍ୟକ୍ତିଗତ ମୁକ୍ତି ବା ଅର୍ହତ୍ୱଲାଭ ଥିଲା ସେମାନଙ୍କର ଏକମାତ୍ର ଲକ୍ଷ୍ୟ । ମହାଯାନୀମାନେ ବିଶ୍ୱମୁକ୍ତିକୁ ଆଦର୍ଶ ରୂପେ ଗ୍ରହଣ କଲେ । ସୁତରାଂ ମୁକ୍ତିଦାୟିନୀ ଶୂନ୍ୟତା ସହିତ ସେମାନେ ଯୁକ୍ତକଲେ କୁଶଳ କର୍ମର ପ୍ରେରଣାଦାୟକ ମହାକରୁଣା, ଏଇ ଶୂନ୍ୟତା ହେଲା ନାସ୍ତିବାଚକ ପ୍ରଜ୍ଞା ଓ କରୁଣା ହେଲା ଅସ୍ତିବାଚକ ଉପାୟ ଅର୍ଥାତ୍ କୁଶଳ କର୍ମ ପ୍ରେରଣା ।(୧) ବୌଦ୍ଧଧର୍ମର ଏହି ମହାଯାନ ସଂପ୍ରଦାୟରେ କାଳକ୍ରମେ ଦୁଇପ୍ରକାର ମତ ପ୍ରକାଶ ପାଇଲା । ପାରମିତାନୟ ଓ ମନ୍ତ୍ରନୟ । ମଂନ୍ତ୍ରନୟରେ ନାନାପ୍ରକାର

---

(୧) ଭାରତରେ ଶକ୍ତି ସାଧନା ଓ ଶାକ୍ତ ସାହିତ୍ୟ—ପୃ ୧୩୬—ଶଶିଭୂଷଣ ଦାଶଗୁପ୍ତ ।

ତାନ୍ତ୍ରିକସାଧନାର ବିକାଶ ଘଟିଥିଲା । ମନ୍ତ୍ରନୟ ପ୍ରନଷ୍ଟ ବଜ୍ରଯାନ ଓ କାଳଚକ୍ର-ଯାନରେ ବିଭକ୍ତ ହେଲା । ସହଜଯାନ ସମ୍ଭବତଃ ବଜ୍ରଯାନର ପରବର୍ତ୍ତୀ ରୂପାନ୍ତର । ସହଜଯାନ ଅନେକ ପରିମାଣରେ ତାନ୍ତ୍ରିକ ଧାରଣା ଦ୍ୱାରା ପ୍ରଭାବିତ ଥିଲା । ଏହି ଧର୍ମ ମତରେ ବୋଧିଚିତ୍ତ ହିଁ ସାଧକର ପରମସାଧ୍ୟ । ଶୂନ୍ୟତା ଓ କରୁଣାର ମିଳିତ ଅବସ୍ଥା ବା ଅଭିନ୍ନତ୍ୱକୁ ବୋଧିଚିତ୍ତ କୁହାଯାଏ । ଶୂନ୍ୟତା ଓ କରୁଣାର ମିଳନ ଉପରେ ତାନ୍ତ୍ରିକ ବୌଦ୍ଧଧର୍ମର ପଦ୍ଧତି ପୂର୍ଣ୍ଣତଃ ନିର୍ଭର କଲା । ହିନ୍ଦୁତନ୍ତ୍ର ପ୍ରଭାବରେ ଏଇ ଶୂନ୍ୟତା ଓ କରୁଣା ଯଥାକ୍ରମ ନାରୀ ପୁରୁଷ ବା ପ୍ରଜ୍ଞା ଉପାୟ ରୂପରେ ରୂପାନ୍ତରିତ ହେଲେ । ଶୂନ୍ୟତା ପ୍ରଜ୍ଞାରୂପିଣୀ ଭଗବତୀ ଓ ଉପାୟ ନିଖିଳ କ୍ରିୟାତ୍ମକ ଭଗବାନଙ୍କର ଯୁଗନଦ୍ଧ ଅବସ୍ଥା । ବୋଧିଚିତ୍ତ ତନ୍ତ୍ରକଥିତ ଶିବଶକ୍ତିର ମିଳିତ ଅଦ୍ୱୟ ଅବସ୍ଥା ରୂପରେ ପରିକଳ୍ପିତ ହେଲା ।

## ହିନ୍ଦୁ ତନ୍ତ୍ରରେ ଶିବ :

ହିନ୍ଦୁ ତନ୍ତ୍ରରେ ପରମାର୍ଥ ସତ୍ୟର ଦ୍ୱୈତରୂପ ନିବୃତ୍ତି ରୂପ ପୁରୁଷ ବା ଶିବ ଏବଂ ପ୍ରବୃତ୍ତିରୂପା ପ୍ରକୃତି ବା ଶକ୍ତି । ଗୁହ୍ୟବିଦ୍ୟା ଅନୁସାରେ ମଣିଷ ଶରୀରରେ ବିଶ୍ୱର ସଂକ୍ଷିପ୍ତ ସାର ବର୍ତ୍ତମାନ । ଶିବ ସହସ୍ରାରରେ ଅବସ୍ଥାନ କରନ୍ତି ବିଶୁଦ୍ଧଚିତ୍ ରୂପରେ ଏବଂ ଶକ୍ତି ମୂଳାଧାରରେ କୁଣ୍ଡଳିନୀ ରୂପରେ ଜଗତ ଶକ୍ତିର କାରଣସ୍ୱରୂପ ହୋଇ ବାସ କରନ୍ତି । ସାଧକର ଲକ୍ଷ୍ୟ ହେଉଛି, ସାଧନା ମାଧ୍ୟମରେ କୁଣ୍ଡଳିନୀକୁ ଜାଗ୍ରତ କରି ଏକ ଚକ୍ରରୁ ଅନ୍ୟ ଚକ୍ରକୁ ଉନ୍ନୀତ କରି ଶିବଙ୍କ ସହ ମିଳିତ କରାଇବା ଏବଂ ଏହି ଦୁହିଁଙ୍କର ମିଳନରୁ ସୃଷ୍ଟ ଅଦ୍ୱୟ ଅବସ୍ଥା ହିଁ ସାଧକର ପରମକାମ୍ୟ । ଶିବ ନିଷ୍କ୍ରିୟ ଓ ସ୍ଥିର, ଶକ୍ତି କ୍ରିୟାତ୍ମିକା ଓ ଚଞ୍ଚଳ । ଯୋଗର ଉଦ୍ଦେଶ୍ୟ ଶକ୍ତିର ନିମ୍ନଗାମୀ ପ୍ରବୃତ୍ତି ସକଳକୁ ରୋଧକରି ଏହାର ଗତିକୁ ବିଭିନ୍ନ ଚକ୍ର ମଧ୍ୟ ଦେଇ ଊର୍ଦ୍ଧ୍ୱଗତି କରାଇ ସହସ୍ରାର ଚକ୍ରରେ ବା ସହସ୍ର ଦଳବିଶିଷ୍ଟ ପଦ୍ମ ଉପରେ ବାସ କରୁଥିବା ଶିବଙ୍କ ସହ ମିଳିତ କରାଇବା । ଦେହର ବାମ ପାର୍ଶ୍ୱରେ ଅବସ୍ଥିତ ଇଡ଼ା ଏବଂ ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ପିଙ୍ଗଳା ନାଡ଼ି ଦ୍ୱୟକୁ ଯଥାକ୍ରମେ ଶକ୍ତି ଓ ଶିବ, ନାରୀ ଓ ପୁରୁଷ ରୂପେ ଧରି ଏହା ମଧ୍ୟରେ ପ୍ରବାହିତ ପ୍ରାଣ ଓ ଅପାନବାୟୁକୁ ମେରୁଦଣ୍ଡସ୍ଥିତ ନାଡ଼ୀ ସୁଷୁମ୍ନାପଥରେ ପରିଚାଳିତ କରି ସହସ୍ରାରକୁ ପ୍ରେରଣ କରି ପାରିଲେ ହିଁ ଅଦ୍ୱୟ ସତ୍ୟ ଲାଭ ହୁଏ ବୋଲି ହଠଯୋଗରେ ବର୍ଣ୍ଣନା କରାଯାଇଛି । (୨)

---

(୨) ଚର୍ଯ୍ୟାଗୀତି ପରିଚୟ—ପୃ. ୫୧, ସତ୍ୟବ୍ରତ ଦେ ।

ବୌଦ୍ଧତାନ୍ତ୍ରିକ ମତରେ ପ୍ରଜ୍ଞା ବା ଶକ୍ତି ନିଷ୍କ୍ରିୟା ପରମଜ୍ଞାନସ୍ୱରୂପା ଓ ଉପାୟ ବା ପୁରୁଷ ଏହାର ବିପରୀତ ଏକ ସକ୍ରିୟତତ୍ତ୍ୱ ଅଟେ । ଶିବ ଶକ୍ତିର ମିଳିତ ଅଦ୍ୱୟ ଅବସ୍ଥା ସହ ପ୍ରଜ୍ଞା ଓ ଉପାୟର ମିଳିତ ଯୁଗନଦ୍ଧ ଅବସ୍ଥା ସମାନ । ବୌଦ୍ଧତନ୍ତ୍ରର ପ୍ରଜ୍ଞା ଓ ଉପାୟ ଇଡ଼ା-ପିଙ୍ଗଳା, ଲଲନା-ରସନା, ରବି-ଶଶି, ଧମଣ-ଚମଣ, ଚନ୍ଦ୍ର-ସୂର୍ଯ୍ୟ, ଶୂନ୍ୟତା କରୁଣା ଆଦି ବିବିଧ ନାମରେ ଚର୍ଚ୍ଚିତ ହୋଇଛି । ପ୍ରତ୍ୟେକ ପୁରୁଷ ଓ ନାରୀ ମଧ୍ୟରେ ଶିବ-ଶକ୍ତିତତ୍ତ୍ୱ ବିଦ୍ୟମାନ । (୩) ତେଣୁ ପରମସତ୍ୟ ବା ଉଚ୍ଚତମ ଆଧ୍ୟାତ୍ମିକ ଅନୁଭୂତିର ଲାଭ ନିମନ୍ତେ ପୁରୁଷ ଓ ନାରୀ ପ୍ରଥମେ ନିଜକୁ ଶିବ ଓ ଶକ୍ତିଙ୍କର ପ୍ରକାଶ ବୋଲି ମନେକରି ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ତ୍ରିବିଧ ସ୍ତରରେ ନିଜକୁ ସଂଯୁକ୍ତ କରିବା ଉଚିତ । ତାନ୍ତ୍ରିକମାନେ ଶିବ ଶକ୍ତି ବା ପୁରୁଷ ପ୍ରକୃତିର ମିଳନଜ ସୁଖକୁ ନାରୀପୁରୁଷର ଯୌନ ମିଳନର ଆନନ୍ଦ ସହ ତୁଳନା କରିଛନ୍ତି—

ପରାଶକ୍ତ୍ୟାମ୍ମିଥୁନ ସଂଯୋଗାନଂଦ ନିର୍ଭରଃ
ଯ ଆସ୍ତେ ମୈଥୁନଂ ତତ୍ ସ୍ୟାଦପରେ ସ୍ତ୍ରୀନିଷେବକାଃ । (୪)

ଅର୍ଥାତ୍ ଯେଉଁ ସାଧକ ପରାଶକ୍ତି ଓ ପରଂବ୍ରହ୍ମ ମିଥୁନଙ୍କର ସଂଯୋଗଜନିତ ଆନନ୍ଦରେ ବିଭୋର ହୋଇ ଅବସ୍ଥାନ କରେ ସେ ହେଉଛି ପ୍ରକୃତରେ ମୈଥୁନ-ସେବକ । ତାନ୍ତ୍ରିକମାନେ ବ୍ରହ୍ମ ଓ ଶକ୍ତିର ମିଳନକୁ ଲୌକିକ ସ୍ତ୍ରୀ ପୁରୁଷର ସମ୍ଭୋଗଜନିତ ସୁଖ ସହିତ ଆକ୍ଷରିକ ଭାବରେ ତୁଳନା କରିଛନ୍ତି । ସେମାନେ ଜଗତର ସମସ୍ତ ପଦାର୍ଥରେ ବ୍ରହ୍ମ ଓ ଶକ୍ତିର ମିଥୁନୀକୃତ ବିଭୂତିର ଧାରଣା କରିଥାନ୍ତି । (୫)

ବୌଦ୍ଧତନ୍ତ୍ରମାନଙ୍କରେ ଠିକ୍ ଏହି ପ୍ରକାର ସାଧନାର ବ୍ୟବସ୍ଥା ରହିଛି । ନାରୀମାନେ ହିଁ ପ୍ରଜ୍ଞାରୂପିଣୀ ଓ ପୁରୁଷ ମାନେ ହିଁ ବଜ୍ରଧର ବା ବଜ୍ରସତ୍ତ୍ୱ । ଏହି ସ୍ୱରୂପରେ ପ୍ରତିଷ୍ଠିତ ସାଧନା ହେଲା ପ୍ରଜ୍ଞୋପାୟ ସାଧନାର ତାତ୍ପର୍ଯ୍ୟ । ହିନ୍ଦୁତନ୍ତ୍ର ମତରେ ମଣିଷ ଶରୀର ମଧ୍ୟରେ ଷଡଚକ୍ରର ସ୍ଥିତି କଳ୍ପନା କରାଯାଇଛି । ଯଥା— ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଓ ଆଜ୍ଞା ବା ସହସ୍ରାର । ମୂଳାଧାର ଚକ୍ରରେ ସୁପ୍ତ କୁଣ୍ଡଳିନୀ ଶକ୍ତିକୁ ସାଧନା ଦ୍ୱାରା ଜାଗ୍ରତ କରି ତାକୁ

---

(୩) ଶଙ୍କରଃ ପୁରୁଷାଃ ସର୍ବେ ସ୍ତ୍ରିୟଃ ସର୍ବା ମହେଶ୍ୱରୀ, ପୁଲିଙ୍ଗପଦବାଚ୍ୟା ଯେତେ ଚ ରୁଦ୍ରାଃ ପ୍ରକୀର୍ତ୍ତିତାଃ । (ଲିଙ୍ଗ ପୁରାଣ) ୭୧୨।୪୦)

(୪) କୁଳାର୍ଣ୍ଣବ ତନ୍ତ୍ର—ପୃ. ୫।୧୦୭।୧୧ ।

(୫) ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ—ପୃ. ୧୦୭—ଡଃ କରୁଣାକର କର ।

ଚକ୍ରକ୍ରମରେ ଊର୍ଦ୍ଧ୍ୱଗାମୀ କରାଇ ସହସ୍ରାରରେ ବର୍ତ୍ତମାନ ଶିବଙ୍କ ସହିତ ମିଳିତ କରାଇବା ତାନ୍ତ୍ରିକମାନଙ୍କର ଲକ୍ଷ୍ୟ । ତନ୍ତ୍ର ସଦୃଶ ମହାଯାନ ସମ୍ପ୍ରଦାୟରେ ବୁଦ୍ଧଙ୍କର ତ୍ରିକାୟା କଳ୍ପନାର ବିକାଶ ଘଟିଥିଲା—ନିର୍ମାଣ, ଧର୍ମ ଓ ସମ୍ଭୋଗ କାୟା । ପରବର୍ତ୍ତୀ କାଳରେ ବୌଦ୍ଧତାନ୍ତ୍ରିକମାନେ ସହସ୍ରାରର ଅନୁସରଣରେ ସମରୂପୀ ମହାସୁଖକାୟାର କଳ୍ପନା ମଧ୍ୟ କରିଛନ୍ତି ।(୬) ବୌଦ୍ଧତନ୍ତ୍ରରେ ବୋଧି-ଚିତ୍ତ ପ୍ରଥମେ ନାଭିଦେଶସ୍ଥ ନିର୍ମାଣକାୟାରେ ଉତ୍ପନ୍ନ ହୋଇ କ୍ରମଶଃ ଧର୍ମ ଓ ସମ୍ଭୋଗକାୟ ମଧ୍ୟରେ ଊର୍ଦ୍ଧ୍ୱଗତି କରି ମହାସୁଖକାୟରେ ସ୍ଥିତ ନୈରାତ୍ମା ସହିତ ଯୁଗନଦ୍ଧ ଅବସ୍ଥାରେ ଉପନୀତ ହୁଏ ଓ ସହଜାନନ୍ଦ ମହାସୁଖ ଲାଭକରେ । ଏହି ମହାସୁଖ ଲାଭ କାଳରେ ସାଧକର ବାହ୍ୟେନ୍ଦ୍ରିୟସକଳ ନିଷ୍କ୍ରିୟ ହୁଏ । ଆତ୍ମା ତାର ଭେଦ ଓ ଜାଗତିକ ସମସ୍ତ ମୋହ ଲୁପ୍ତ ହୁଏ, ଶୂନ୍ୟତା ଜ୍ଞାନ ଲାଭ ହୁଏ ଓ ସାଧକ ସେତେବେଳେ ପ୍ରମତ୍ତ ପରି ଅବସ୍ଥାନ କରେ । (୭)

ଚର୍ଯାପଦ ନିଚୟରେ ବୁଦ୍ଧ ବା ତଥାଗତଙ୍କର ନାମ କୌଣସି ସ୍ଥାନରେ ଉଲ୍ଲେଖ ହୋଇଥିବାର ଜଣାଯାଏ ନାହିଁ । ବରଂ ଯାହା ଦେଖାଯାଏ ତାହା ବୈଦାନ୍ତିକ ମାୟାବାଦ ଯୋଗଶାସ୍ତ୍ରର କଥା ଏବଂ କ୍ୱଚିତ୍ ପରିମାଣରେ ଶୂନ୍ୟତାର ଆଭାସ । ଏ ଦୃଷ୍ଟିରୁ ଚର୍ଯାପଦ ବୌଦ୍ଧଭାବାପନ୍ନ ଶୈବସନ୍ୟାସୀମାନେ ରଚନା କରିଥିବାର ମଧ୍ୟ ଅନୁମାନ କରାଯାଏ । ଏ ଦେଶରେ ଶୈବଗଣ ହିଁ ତାନ୍ତ୍ରିକ ଆଙ୍ଗିର ପଦ୍ଧତି ସମ୍ବନ୍ଧରେ ପ୍ରଥମ ପଥ ପଦର୍ଶକ ଥିଲେ ବୋଲି ଜଣାଯାଏ । କାରଣ ଶୈବ ଧର୍ମାଶ୍ରିତ ପ୍ରାଚୀନ ପାମିରୀୟଜାତି ଏ ଦେଶରେ ପ୍ରଥମେ ତାନ୍ତ୍ରିକମତ ପ୍ରବର୍ତ୍ତନ କରିଥିଲେ ବୋଲି ଅନୁମିତ ହୁଏ । ଯୁଗ ଯୁଗ ଧରି ଶିବଦେବତାଙ୍କ ସହିତ ତନ୍ତ୍ରର ଅଚ୍ଛେଦ୍ୟ ସମ୍ବନ୍ଧ ରହି ଆସିଛି ଓ ସପ୍ତମ/ଅଷ୍ଟମ ଶତାବ୍ଦୀରୁ ରଚିତ ହୋଇ ଆସିଥିବା ଚର୍ଯାପଦଗୁଡ଼ିକରେ ତାନ୍ତ୍ରିକ ଶିବଦେବତାଙ୍କର ଇଙ୍ଗିତ ସ୍ପଷ୍ଟ ଲକ୍ଷ୍ୟ କରାଯାଇପାରେ । (୮)

**ଚର୍ଯାପଦର ଶକ୍ତି :**

ଏମାନଙ୍କର ଯୋଗ ସାଧନରେ ରୂପକାତ୍ମକ ଭାବରେ ନାରୀଚର୍ଯା ପରିଦୃଷ୍ଟ ହୁଏ । ମହାସୁଖ ବା ସହଜାନନ୍ଦକୁ ଏମାନେ ନାରୀ ସହିତ ରୂପକ କରିଛନ୍ତି ।

---

(୬) ପ୍ରାଚୀନ ବାଂଲାସାହିତ୍ୟେର ଇତିହାସ, ପୃ ୪୧, ଡଃ ତମୋନାଶ ଚନ୍ଦ୍ର ଦାଶଗୁପ୍ତ ।

(୭) ଏଜନ, ପୃ. ୩୯ ।

(୮) ଚର୍ଯାଗୀତିକା, ପୃ. ୩୦-୩୪, ଡଃ ଖଗେଶ୍ୱର ମହାପାତ୍ର ।

ତାହା ଡୋମ୍ବୀ ଶବରୀ ଚଣ୍ଡାଳୀ ଇତ୍ୟାଦି ଭାବରେ ରୂପାୟିତ ହୋଇଛି । ଚର୍ଯ୍ୟାପଦରେ ବର୍ଣ୍ଣିତ ହୋଇଥିବା ଚଣ୍ଡାଳୀ, ଡୋମ୍ବୀ, ଶବରୀ, ସହଜସୁନ୍ଦରୀ ଓ ନୈରାମଣି ପ୍ରଭୃତି ତନ୍ତ୍ରୋକ୍ତଯୋଗିନୀ ଶକ୍ତିର ବିଭିନ୍ନ ନାମ ମାତ୍ର । ଏହି ଶକ୍ତି ତନ୍ତ୍ର ମତରେ ଶିବଙ୍କ ଗୃହିଣୀ ଏବଂ ବୌଦ୍ଧତନ୍ତ୍ରରେ ଏଇ ସହଜସୁନ୍ଦରୀ ନୈରାମଣି ବଜ୍ରସତ୍ତ୍ୱଙ୍କ ଗୃହିଣୀ ହେଲେ ମଧ୍ୟ କାବ୍ୟରେ ଇଏ ଅନେକ ସ୍ଥାନରେ ସିଦ୍ଧିକାମୀ ତାନ୍ତ୍ରିକର ପ୍ରେମିକା ବା ସାଧନାସଙ୍ଗିନୀ ହିସାବରେ କଳ୍ପିତା ହୋଇଛି ।(୯) ଚର୍ଯ୍ୟାପଦରେ ଏଇ ଶିବ ବଜ୍ରସତ୍ତ୍ୱ ବଜ୍ରଧର । ସେ ଶବରୀଙ୍କୁ ଦେଖେ ନୈରାମଣିଙ୍କୁ ଚାହାନ୍ତି, ତାର କଣ୍ଠରେ ଓ ବକ୍ଷରେ ବିହାର କରେ, ଦେବୀ ଜାଗ୍ରତ ହୁଅନ୍ତି ମୂଳାଧାରରେ ସହଜାନନ୍ଦ ଲାଭ କରନ୍ତେ, ନିର୍ମାଣଚକ୍ର, ଧର୍ମଚକ୍ର, ସମ୍ଭୋଗଚକ୍ର ଓ ମହାସୁଖଚକ୍ରରେ ପରିଭ୍ରମଣ କରନ୍ତି । ନିର୍ମାଣ ଚକ୍ରରେ ତାଙ୍କର ପ୍ରଥମ ଜାଗ୍ରତ । ତାଙ୍କର ପ୍ରଚଣ୍ଡ ବାହନ, ସେ ଚଣ୍ଡାଳୀ । ଏଇ ଦେବୀଙ୍କୁ ସ୍ଥୂଳ ଭାବରେ ଧରିହେବ ନାହିଁ । ସେତେବେଳେ ସେ ଡୋମ୍ବୀ ଅର୍ଥାତ୍ ଅସ୍ପୃଶ୍ୟା । ଏହାଙ୍କୁ ଯେ ଧରିପାରିବ ସେ ଆବରଣହୀନ ଉଲଗ୍ନ । ଅର୍ଥାତ୍ ନଗ୍ନ, ସ୍ଥୂଳ ଭାବରେ ନୁହେଁ ସୂକ୍ଷ୍ମରେ, କେବଳ ଦେହର ନୁହେଁ ମନର । ଯାହାର ଘୃଣା, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ କାମନାର ଆବରଣ ଖୋଲିଯାଇଛି । ସେତେବେଳେ ବଜ୍ରଧର ସାଧକ ସହ ଡୋମ୍ବୀର ସହଜ ରମଣାନନ୍ଦ—ଡୋମ୍ବୀ ସେତେବେଳେ ଆଦରଣୀ ସ୍ପୃଶ୍ୟା । (୧୦)

ଆଲୋ ଡୋମ୍ବୀ ତୋଏ ସମ କରିବ ମୋ ସାଙ୍ଗ<br>
ନିଘିନ କାହ୍ନୁ କାପାଲି ଜୋଇ ଲାଙ୍ଗ ।<br>
ଏକ ସୋ ପଦୁମା ଚୌଷଠୀ ପାଖୁଡ଼ୀ<br>
ତହିଁ ଚଢ଼ି ନାଚଅ ଡୋମ୍ବୀ ବାପୁଡ଼ୀ । (୧୧)

ଚୌଷଠି ପାଖୁଡ଼ା ବିଶିଷ୍ଟ ପଦ୍ମ ଉପରେ ନୃତ୍ୟରତା ଡୋମ୍ବୀ ସହ ମିଳିତ ହେବାପାଇଁ ଶିବ ସଦୃଶ ସାଧକଙ୍କୁ ନିର୍ଘୃଣ, ଲଜ୍ଜାବିରହିତ, ଦିଗମ୍ବର ଯୋଗୀ ହେବାକୁ ପଡ଼ିବ । ଚର୍ଯ୍ୟାର ବର୍ଣ୍ଣିତ ସହଜସୁନ୍ଦରୀ ଓ ନୈରାମଣି ମାତଙ୍ଗୀ, ଶୁଂକିନୀ ଓ ଶବରୀ ପ୍ରଭୃତି ନାମରେ ଉଲ୍ଲିଖିତ ହୋଇଛନ୍ତି—

ଗଙ୍ଗା ଯମୁନା ମଝିରେ ବହଇ ନାଈ<br>
ତହିଁ ବୁଡ଼ିଲି ମାତଙ୍ଗୀ ଜୋଇଆଲିଲେ ପାରକରଇ । (୧୨)

---

(୯) ଚର୍ଯ୍ୟାଗୀତି ପରିଚୟ, ପୃ. ୬୭, ସତ୍ୟବ୍ରତ ଦେ ।

(୧୦) ଶିବ ଭାବନା, ପୃ ୧୬୪, ସୁଧାଂଶୁମୋହନ ବନ୍ଦୋପାଧ୍ୟାୟ ।

(୧୧) ଡୋମ୍ବୀଚର୍ଯ୍ୟା—ନଂ ୧୦ ।

(୧୨) ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ—ଡୋମ୍ବୀ ପାଦାନାମ, ପୃ. ୪୧୯ ।

ଏହି ମାତଙ୍ଗୀ ନାମ ତନ୍ତ୍ରୋକ୍ତ ଦଶମହାବିଦ୍ୟା ମଧ୍ୟରେ ଗୃହୀତ ବୋଲି ଜଣାଯାଏ ଏବଂ ପୁରାଣ ପ୍ରଭୃତିରେ ଦେବୀଙ୍କୁ କିରାତୀ ଓ ଶବରୀ ରୂପରେ ବର୍ଣ୍ଣିତ ହୋଇଥିବାର ମଧ୍ୟ ଦେଖାଯାଏ । ଦେବୀ ପର୍ବତକନ୍ୟା ଓ ପର୍ବତବାସିନୀ ହୋଇଥିବାରୁ ପାର୍ବତୀ ଓ ବିନ୍ଧ୍ୟବାସିନୀ ନାମରେ ପରିଚିତା । ପାର୍ବତ୍ୟ ଅଞ୍ଚଳର ଅଧିବାସୀଙ୍କ ଦ୍ୱାରା ଦେବୀ ପୂଜିତା ହେଉଥିବାର ବହୁ ପ୍ରାଚୀନ ନିଦର୍ଶନ ମିଳେ । ଶିବ ମଧ୍ୟ କିରାତ ଓ ଶବର ରୂପରେ ମହାଭାରତ, କିରାତାର୍ଜ୍ଜୁନୀୟ ପ୍ରଭୃତି ଗ୍ରନ୍ଥରେ ବର୍ଣ୍ଣିତ । ଚର୍ଯ୍ୟାପଦର ଶବରୀ ମଧ୍ୟ ଉଚ୍ଚ ପର୍ବତବାସିନୀ । ଶବରଶବରୀ ପ୍ରେମଚର୍ଯ୍ୟା ସିଦ୍ଧାଚାର୍ଯ୍ୟ ଶବରୀପାଙ୍କ ଦ୍ୱାରା ରଚିତ । ଏହି ସିଦ୍ଧ କବିଙ୍କର ଜନ୍ମସ୍ଥାନ ସମ୍ପର୍କରେ କେତେକ ମତ ଥିଲେ ମଧ୍ୟ ତାଙ୍କର ପଦଗୁଡ଼ିକରେ ବ୍ୟବହୃତ ଶବ୍ଦାବଳୀ ଓ କୁରୁକୁଲ୍ଲା ସାଧନା ପ୍ରଭୃତିରୁ ଶବରୀପା ଓଡ଼ିଶାର ଅଧିବାସୀ ବା ଓଡ଼ିଶା ତାଙ୍କର ସାଧନାପୀଠ ଥିଲା ବୋଲି ଅନୁମାନ କରାଯାଏ । ତାଙ୍କ ରଚିତ ଚର୍ଯ୍ୟାଟିରେ ଶବର-ଶବରୀର ଦାମ୍ପତ୍ୟଜୀବନ, ଶବରର ଉନ୍ମତ୍ତତା, ଗୃହତ୍ୟାଗ ଆଦି ପ୍ରସଙ୍ଗ ପରବର୍ତ୍ତୀ ଓଡ଼ିଆ ଲୋକକଥା ଓ ସାହିତ୍ୟରେ ହରପାର୍ବତୀଙ୍କ ଗାର୍ହସ୍ଥ୍ୟ ଜୀବନର ବର୍ଣ୍ଣନାକୁ କେତେକାଂଶରେ ପ୍ରଭାବିତ କରିଛି । ଗୀତଟିରେ କୁହାଯାଇଛି—

> ଉଞ୍ଚା ଉଞ୍ଚା ପାବତ ତହିଁ ବସଇ ସବରୀବାଳୀ
> ମୋରଙ୍ଗୀ ପିଚ୍ଛ ପରହିଣ ସବରୀ ଗିବତ ଗୁଞ୍ଜରୀମାଳୀ
> ଉମତ ସବରୋ ପାଗଲ ସବରୋ ମାକର ଗୁଲିଗୁହାଡ଼ା ତୋହୋର
> ଣିଅ ଘରଣୀ ନାମେ ସହଜସୁନ୍ଦରୀ ।
> ନାନା ତରୁବର ମୌଲିଲରେ ଗଅଣତ ଲାଗେଲୀ ଡାଲୀ
> ଏକେଲୀ ସବରୀ ଏବଣ ହିଣ୍ଡଇ କର୍ଣ୍ଣକୁଣ୍ଡଲ ବଜ୍ରଧାରୀ ।
> ତିଅଧାଉ ଖାଟ ପାଡ଼ିଲା ସବରୋ ମହାସୁହେ ସେଜି ଛାଇଲି
> ସବରୋ ଭୁଜଙ୍ଗ ନୈରାମଣୀ ଦାରୀ ପେମ୍ହରାତିପୋହାଇଲୀ
> ହିଅ ତାମ୍ବୋଲୋ ମହାସୁହେ କାପୁରଖାଇ
> ସୁନ ନୈରାମଣି କଣ୍ଠେ ଲଇଆ ମହାସୁହେ ରାତି ପୋହାଇ ।
> ଗୁରୁବାକ୍ ପୁଂଚଆ ବିଂଧ ଣିଅମଣ ବାଣେ
> ଏକେଶର ସନ୍ଧାନେ ବିନ୍ଧହ ବିନ୍ଧହ ପରମଣିବାଣେ ।
> ଉମତ ସବରା ଗରୁଆ ରୋଷେ
> ଗିରବର ସିହର ସନ୍ଧି ପଇସନ୍ତେ ସବରେ ଲୋଡ଼ିବ କଇସେ । (୧୩)

୧୩ । ଗୀତିକା ୨୮ ସଂଖ୍ୟା ।

ଅର୍ଥାତ୍ ଉଚ୍ଚ ପର୍ବତମାଳା—ତା' ଉପରେ 'ବାସକରେ ଗୋଟିଏ ଶବର ବାଳିକା । ତାର ପରିଧାନ ମୟୂର ପୁଚ୍ଛ, କଣ୍ଠରେ ଗୁଞ୍ଜମାଳ । ତାର ପ୍ରଣୟପ୍ରାର୍ଥି ଶବର ଯୁବକର ଚିତ୍ତରେ ଦ୍ୱନ୍ଦ୍ୱ ଦେଖି ସେ ତାକୁ କହିଲା ହେ ପାଗଳ ଶବର, ତୋତେ ମୋର ଗୁହାରି କରୁ ମିଛରେ ଧନ୍ଦି ହୋଇ ଗୋଲମାଲ କରନାହିଁ । ଥରେ ମତେ ଦେଖ, ମୁଁ ହିଁ ତୋର ସ୍ତ୍ରୀ ସହଜସୁନ୍ଦରୀ । ଏହା ଶୁଣି ଶବରର ଚେତନା ଫେରିଲା । ତାର ପ୍ରାଣରେ ପ୍ରୀତିର ପ୍ରସ୍ରବଣ ଉତ୍ସରିତ ହେଲା । ସେଇ ନୀରସ ପାର୍ବତ୍ୟଭୂମି ତାର ପ୍ରେମରେ ପ୍ଲାବିତ ହେଲା । ବୃକ୍ଷରାଜିରେ ନାନାଜାତିର ପୁଷ୍ପ ଫୁଟିଗଲା, ଶାଖାପ୍ରଶାଖା ଆକାଶ ଛୁଇଁଲା । ସେତେବେଳେ ଶବର ବାଳିକା ସେହି ସୁନ୍ଦର ବନଭୂମିରେ କର୍ଣ୍ଣରେ କୁଣ୍ଡଳ ବଜ୍ରାଦି ଭୂଷିତ ହୋଇ ଏକାକୀ ବୁଲୁଥାଏ । ପ୍ରେମିକ ଶବର ଯୁବକ ମନର ଦ୍ୱନ୍ଦ୍ୱ ଦୂର କରି ତାକୁ ସଙ୍ଗିନୀ ରୂପେ ଗ୍ରହଣ କଲା । ସେ ତିନି ଧାତୁରେ ନିର୍ମିତ ଗୋଟିଏ ଖଟ ପକାଇ ତା' ଉପରେ ମହା ସୁଖକର ଶଯ୍ୟା ବିଛାଇ ଦେଲା । ତା'ପରେ ପ୍ରେମିକା ଶବରୀ ବାଳିକା ସହିତ ସମ୍ଭୋଗ ବିଳାସରେ ରାତ୍ରି ଯାପନ କଲା । ହୃଦୟସ୍ଥ ଆନନ୍ଦରେ ମହାସୁଖଙ୍କର ତାମ୍ବୁଲ ଓ କର୍ପୂର ସେବନ କଲା ଏବଂ ପ୍ରେମିକାକୁ କଣ୍ଠାଶ୍ଲେଷ କରି ରାତ୍ରି ବିତେଇ ଦେଲା । (୧୪) କିନ୍ତୁ ଉନ୍ମତ୍ତ ଶବରର ବା କି ଠିକଣା । ପୁଣି କେତେବେଳେ ଗୁରୁକ୍ଷେପରେ ପାଗଳ ପରି ପର୍ବତର କେଉଁ ଶିଖର ସନ୍ଧିରେ ପଶି ନିଖୋଜ ହୋଇଗଲା । ତାକୁ କ'ଣ ଆଉ ଖୋଜିଲେ ମିଳିବ ।

ଶିବପାର୍ବତୀଙ୍କର ଗାର୍ହସ୍ଥ୍ୟ ଜୀବନର ଚିତ୍ର ମୈଥିଳୀ ଲୋକ ସାହିତ୍ୟରେ, ବିଦ୍ୟାପତିଙ୍କ ଗୀତ ରଚନାରେ, ବଙ୍ଗଳା ଲୋକ ସାହିତ୍ୟ ଓ ଓଡ଼ିଆ ଲୋକକଥା ଓ ଗୀତରେ ବର୍ଣ୍ଣିତ ହୋଇଥିବାର ଦେଖାଯାଏ । ପାଗଳ ଭୋଳାନାଥ କେତେବେଳେ ନିଶାଜୋରରେ କେବେ ବା ପାର୍ବତୀଙ୍କ ସହ କଳହ କରି ପୁଣି କେବେ ଧ୍ୟାନ କରିବା ଆଳରେ କୁଆଡ଼େ ନିଖୋଜ ହୋଇଯାଆନ୍ତି । ତାଙ୍କର ସନ୍ଧାନ କରିବା ପାଇଁ ପାର୍ବତୀଙ୍କର କି ଉଦ୍ୟମ । କେତେ ଅନୁନୟ । ଓଡ଼ିଆ ଲୋକକଥାର ପାଗଳ, ଘର ଉଦାସୀ ମହାଦେବଙ୍କର ଘର ଅଛି କି ନାହିଁ ମନେ ନାହିଁ । ଭୋଳାନାଥ କେଉଁ ପର୍ବତ କାନ୍ତାର କୁଆଡ଼େ କୁଆଡ଼େ ବୁଲନ୍ତି ତାର ଠିକ୍ ଠିକଣା ନାହିଁ । ଏଣେ ପାର୍ବତୀ ଅସ୍ଥିର । ଭୋଳାନାଥଙ୍କୁ ଆଜି-ଠାରୁ ଘରମୁହାଁ କରିବାକୁ ପଡ଼ିବ । ଏଇ କଥା ଭାବି ଭାବି ଦେବୀ ଦେହକୁ ଘଷି ଘଷି ଗୁଡ଼ାଏ ମଳି ଭୂଇଁରେ ଜମା ହୋଇପଡ଼ିଲା । ପାର୍ବତୀ ଦେହଘଷା ମଳି ଆଞ୍ଜୁଳାଏ ଉଡ଼ାଇ ଦେଇ କହିଲେ, ଯାରେ ମଳି ପବନରେ ଉଡ଼ି ଉଡ଼ି ଯା

---

(୧୪) (ଅନୁବାଦ) ଚର୍ଯ୍ୟାଗୀତିକା-୧୧୯, ଡ଼ଃ ଖଗେଶ୍ୱର ମହାପାତ୍ର ।

ପାଗଲା ମହାଦେବ ଯେଉଁଠିଥିବ ଖୋଜି ଧରି ଆଣିବୁ । ଧୂଳିସବୁ ସଙ୍ଗେ ସଙ୍ଗେ ମଶା ପାଲଟି ଗଲେ । ବଣ ଜଙ୍ଗଲରେ କେଉଁଠି ହୁଏତ କେଉଁ ବେଲ ଗଛ ଡାଳରେ କି ତେନ୍ତୁଳି ଗଛର ପତ୍ର ଗହଳରେ ପାର୍ବତୀ ଅତ୍ୟାଗ୍ରହରତ ମହାଦେବ ଆତ୍ମଗୋପନ କରି ବସିଥିଲେ । ଗୁହୁଁ ଗୁହୁଁ କୁଆଡ଼ୁ ପଲକୁ ପଲ ମଶା ମାଡ଼ିଆସି ତାଙ୍କୁ କାମୁଡ଼ି ଝୁଣି ଅସ୍ଥିର କରି ପକାଇଲେ । ମଶା କାମୁଡ଼ାରେ ଅସ୍ତବ୍ୟସ୍ତ ହୋଇ ମହାଦେବ ଘରମୁହାଁ ଧାଇଁଲେ । (୧୫)

ପରବର୍ତ୍ତୀ ସାରଳା ଦାସ ରଚିତ ମହାଭାରତରେ ଏହିପରି ଶିବଙ୍କର ହଠାତ୍ ଅନ୍ତର୍ଧାନ ଓ ଦେବୀଙ୍କର ବ୍ୟାକୁଳ ଅନୁସନ୍ଧାନର ଚିତ୍ର ପ୍ରକାଶ ପାଇଛି । ଦେବୀ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ଭୁବନକୁ ଅଗଣିତ ଦୂତ ପ୍ରେରଣ କରିଛନ୍ତି ଈଶ୍ୱରଙ୍କୁ ଖୋଜି ଆଣିବା ପାଇଁ । ଶେଷରେ କୃଷ୍ଣ ଓ ଅର୍ଜ୍ଜୁନ କପିଳାସ ପୁରୀରେ ଶିବଙ୍କ ଦର୍ଶନ ପାଇଁ ଉପସ୍ଥିତ ହୋଇଛନ୍ତି । ଦେବୀ କୃଷ୍ଣଙ୍କୁ ବ୍ୟାକୁଳ ନିବେଦନ ଜଣାଇଛନ୍ତି—

ଈଶ୍ୱରେ କାହିଁଛନ୍ତି ଦେଖିଲି କି ଜଗନ୍ନାଥେ<br>
କପିଳାସୁଁ ଗଲେକ ଏସ୍ତୁକାଦଶ ବରଷ ପରିଯନ୍ତେ । (୧୬)

କୃଷ୍ଣଙ୍କ ନିର୍ଦ୍ଦେଶରେ ଅର୍ଜ୍ଜୁନଙ୍କ ମନଭେଦୀ ନାରାଚ ଶିବଙ୍କୁ ରାକ୍ଷସୀ ହିରଣ୍ୟାକ୍ଷୀ ଆଲିଙ୍ଗନ ମଧ୍ୟରୁ ଉଦ୍ଧାର କରି ଆଣିଛି । ଏହି କେତୋଟି ଦୃଷ୍ଟାନ୍ତରୁ ଶିବଙ୍କର ଭୋଳାପଣିଆ ଓ ହଠାତ୍ ଅନ୍ତର୍ହିତ ହୋଇଯିବାର ସ୍ୱଭାବ ଚର୍ଚ୍ଚିତ ହୋଇଛି । (୧୭)

ଚତୁର୍ଦ୍ଦଶ ଶତକର ଶେଷ ଭାଗରେ ବା ପଞ୍ଚଦଶ ଶତକର ପ୍ରଥମ ଭାଗରେ ମିଥିଳାର ପ୍ରସିଦ୍ଧ କବି ବିଦ୍ୟାପତି ମୈଥିଳୀ ଭାଷାରେ ହରଗୌରୀ ବିଷୟକ ଅନେକ ପଦ ରଚନା କରିଛନ୍ତି । ସେଥିରୁ ଅଧିକାଂଶ ପଦ ସେମାନଙ୍କର ଗାର୍ହସ୍ଥ୍ୟ ଜୀବନର ନାନା ଜଞ୍ଜାଳ, କଳହ ଓ ଭଲ ପାଇବାକୁ କେନ୍ଦ୍ର କରି ବର୍ଣ୍ଣିତ । ଏହିପରି ଏକ ପଦରେ କବି ଲେଖିଛନ୍ତି—

ପୀସଲି ଭାଙ୍ଗ ରହଲି ଏହି ଗତୀ ।<br>
କଥିଲଁଇ ମନାଇବ ଉମଜା ଜତୀ ॥<br>
ଆନ ଦିନ ନିକହି ଛଲିହ ମୋର ପତୀ ।<br>
ଆଇ ବଡ଼ାଏ ଦେଲି କୋନ ଉଦମତୀ ॥

---

(୧୫) ଫକୀରମୋହନ ସମୀକ୍ଷା, ପୃ. ୪୪—ସୁରେନ୍ଦ୍ର ମହାନ୍ତି ।

ଆନକ ମାକ ଆପନ ହେ ରଖ ।
ପମେ ଏକ ଠେସତା ପଡ଼ତ ବପଥ ୧୬ ॥

ଅର୍ଥାତ୍, ଖଙ୍ଗ ବନ୍ଧାହୋଇ ସେଣ୍ଠପର ପଡ଼ି ରହିଲା, କପର ଏଇ ଉନ୍ମତ୍ତ ଯଡକୁ ବୁଝାଇବ । ଅନ୍ୟଦନ ମୋ' ପଢ ଭଲଥିଲେ । ଆଜ ପୁଣି କଏ ତାଙ୍କର ପାଗଲାମି ବଢାଇ ଦେଲା ? ଅନ୍ୟର ଭଲ ହେଲେ ନଜର କ୍ଷତ ହେବ, କୋଉଠି ଆଘାତ ଲଗିବ, ବପତ୍ତି ପଡ଼ିବ ଏଇ ଚନ୍ତାରେ ଦେଖା ମୂହ୍ୟମାନା ।

ଉପର୍ଯ୍ୟୁକ୍ତ ରଚନାଗୁଡ଼ିକର ବଗୃର ବଶ୍ଳେଷଣ କଲେ ଜଣାଯାଏ ଚର୍ଯ୍ୟାପଦ ଗୁଡ଼ିକରେ ବର୍ଣ୍ଣିତ ସାଧନ ପଦ୍ଧତି ଶିବଶକ୍ତି ତତ୍ତ୍ୱର ଅନୁରୂପ କେବଳ ନୁହେଁ । କେତେକ ଚର୍ଯାପଦରେ ବର୍ଣ୍ଣିତ ଶବର ଶବରୀର ଜୀବନଚର୍ଯା ପରବର୍ତ୍ତୀ କାଳରେ ରଚତ ଶୈବ ସାହିତ୍ୟରେ ସ୍ଥାନ ପାଇଥିବା ଶିବ ପାର୍ବତୀଙ୍କ ଗୃହସ୍ଥ ଜୀବନର ଚନ୍ତକୁ ମଧ୍ୟ ପ୍ରଭାବତ କରଛି ।

---

୧୬—ସା. ମହାଭାରତ—ବରାଟପର୍ବ-ପୃ ୩୦
୧୭—Vidyapati—Edited by K. M. Mitra.



# ମଧ୍ୟଯୁଗୀୟ ଓଡ଼ିଆ କାବ୍ୟର ଅଂଗିକା ବିକାଶ

ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଧାର୍ମିକ ମତବାଦ ଓଡ଼ିଶୀ ଜୀବନ, ସମାଜ ଓ ସାହିତ୍ୟକୁ ବହୁପ୍ରକାର ପ୍ରଭାବିତ କରିଛି । ବୌଦ୍ଧ ସହଜିଆ ମାନଙ୍କର ସାଧନ ପ୍ରଣାଳୀ କ୍ରମେ ବ୍ୟଭିଚାରଗ୍ରସ୍ତ ହୋଇ ସାମାଜିକ ଜୀବନରେ ଯେଉଁ ପ୍ରକାର ବିଡ଼ମ୍ବନା ସୃଷ୍ଟି କରିଥିଲା ତାହାର ବହୁ ସଙ୍କେତ ସାରଳା ମହାଭାରତରେ ଦେଖାଯାଏ । ସହଜିଆମାନଙ୍କର ନିନ୍ଦିତ ଜୀବନଧାରା ପ୍ରତି ସ୍ପଷ୍ଟ ଅଂଗୁଳି ନିର୍ଦ୍ଦେଶ କରିଥିଲେ କବି ସାରଳାଦାସ । ଓଡ଼ିଆର ଜାତୀୟ ଜୀବନରେ ସଂଯମ ଓ ଶୃଙ୍ଖଳାର ପ୍ରତିଷ୍ଠା କରିବା ସଙ୍ଗେ ସେମାନଙ୍କୁ ଆଧ୍ୟାତ୍ମିକ ଚେତନା ପ୍ରତି ଉନ୍ମୁଖ କରାଇବାରେ ଏକ ନିଷ୍ଠାପର ପ୍ରଚେଷ୍ଟା ଲକ୍ଷ୍ୟ କରାଯାଏ ଜଗନ୍ନାଥ ଦାସଙ୍କ ଭାଗବତରେ ଏବଂ ବଳରାମଦାସଙ୍କର ଦାଣ୍ଡି ରାମାୟଣ, ଅଚ୍ୟୁତାନନ୍ଦଙ୍କ ହରିବଂଶ, ଯଶୋବନ୍ତ ଓ ଅନନ୍ତ ପ୍ରଭୃତିଙ୍କ ଧର୍ମସମ୍ବନ୍ଧୀୟ ରଚନା ଗୁଡ଼ିକ, ଓଡ଼ିଶାରେ ଏକ ଶୁଦ୍ଧ ଧାର୍ମିକ ବାୟୁମଣ୍ଡଳ ସୃଷ୍ଟି କରିବାରେ ସହାୟକ ହୋଇଥିଲା । ପୁରାଣ ଗ୍ରନ୍ଥର ଅଲୌକିକ ଦେବ ଚରିତ୍ର ଓ ଘଟଣା ଗୁଡ଼ିକୁ କବିମାନେ ନିଜ ନିଜ ରଚନାରେ ମୁଖ୍ୟ ସ୍ଥାନ ପ୍ରଦାନ କରିଥିଲେ । ନ୍ୟାୟ ଓ ଧର୍ମର ବିଜୟ ଏକ ନିଶ୍ଚିତ ସତ୍ୟ; ଏ ସଂପର୍କରେ ଜନଚେତନାରେ ଏକ ଦୃଢ଼ ସ୍ୱାକ୍ଷରର ଅଙ୍କନ ଥିଲା ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ, ଓଡ଼ିଆ କାବ୍ୟ ରଚନାର ଇତିହାସରେ ଏକ ମହତ୍ତ୍ୱପୂର୍ଣ୍ଣ ସମୟ । ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ କାବ୍ୟ-କାରମାନେ ସେମାନଙ୍କର ପୂର୍ବବର୍ତ୍ତୀ ରଚନାକାରମାନଙ୍କର ନିର୍ଦ୍ଧାରିତ ଆଦର୍ଶ ଓ ଉଦ୍ଦେଶ୍ୟ ସମ୍ପର୍କରେ ସଚେତନ ରହିନାହାନ୍ତି । ପ୍ରାକୃତ ଭାଷାର ସହଜ ଓ ସରଳ ଅଭିବ୍ୟକ୍ତି ଅପେକ୍ଷା ସଂସ୍କୃତ ଭାଷାର ପାଣ୍ଡିତ୍ୟପୂର୍ଣ୍ଣ ପ୍ରକାଶ ପ୍ରତି ଏମାନେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ଫଳରେ କାବ୍ୟରଚନା ପ୍ରାକୃତସ୍ତର ଠାରୁ କ୍ରମଶଃ ଦୂରେଇ ଯାଇ ଅଧିକ ସଂସ୍କୃତାନୁସାରୀ ହୋଇ ପଡ଼ିଥିଲା । ସଂସ୍କୃତ ରୀତିକାବ୍ୟର ଆଦର୍ଶରେ ଓଡ଼ିଆ କବିମାନେ ତଦନୁରୂପ ସଂସ୍କୃତାନୁଗ ପ୍ରାକୃତ ଭାଷାରେ କାବ୍ୟ

ରଚନା କରିଥିଲେ । ବାମନଙ୍କ ରୀତିବାଦ କ୍ଷେମେନ୍ଦ୍ରଙ୍କ ଔଚିତ୍ୟବାଦ, ଆନନ୍ଦ-ବର୍ଦ୍ଧନଙ୍କ ଧ୍ୱନିବାଦ ବା ବିଶ୍ୱନାଥଙ୍କର ରସବାଦ ମଧ୍ୟଯୁଗୀୟ କାବ୍ୟ ଗୁଡ଼ିକରେ ମୁଖ୍ୟତଃ ଅନୁସୃତ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ରକ୍ଷା କରାଯାଇନଥିଲା । ଆଙ୍ଗିକ ଦୃଷ୍ଟିରୁ ମଧ୍ୟଯୁଗୀୟ ସମସ୍ତ କାବ୍ୟ ପ୍ରାୟ ସମାନ ଧାରା ଅନୁସରଣ କରିଛି । କାବ୍ୟାରମ୍ଭରେ ମଙ୍ଗଳାଚରଣ, ନାୟକ ନାୟିକାର ଜନ୍ମ ବିବରଣୀ, ନାୟିକାର ବାଲ୍ୟ, ପୌଗଣ୍ଡ ଓ ଯୌବନ ପ୍ରାପ୍ତି ବର୍ଣ୍ଣନା, ନାୟକ ଓ ନାୟିକା ପରସ୍ପର ମଧ୍ୟରେ ଦୂତ, ଚିତ୍ରପଟ, ବା ସ୍ୱପ୍ନ ଦର୍ଶନ ମାଧ୍ୟମରେ ଅନୁରାଗର ସଞ୍ଚାର, ପ୍ରଣୟର ପରିଣୟ ପରିଣତି ମଧ୍ୟରେ ସାମାନ୍ୟ ବାଧା ପ୍ରତିବନ୍ଧକର ସୂଚନା, ମିଳନ ବ୍ୟବସ୍ଥା, କେଳିପୁର ପ୍ରସଙ୍ଗ, ସାମୟିକ ବିଚ୍ଛେଦ, ନାୟକ ନାୟିକାର ମାନସିକ ଅବସ୍ଥାର ପଟ୍ଟଭୂମିରେ ଋତୁଚିତ୍ର, ପୁନର୍ମିଳନ ଓ ଶେଷରେ ବାଧାହୀନ ଦାମ୍ପତ୍ୟ ଜୀବନର ସୁଖାସ୍ୱାଦନରେ କାବ୍ୟର ପରିସମାପ୍ତି । ପ୍ରାୟ ସମସ୍ତ କାବ୍ୟରେ ବିଷୟବସ୍ତୁ ବିନ୍ୟାସରେ ବୈଚିତ୍ର୍ୟହୀନ କ୍ଳାନ୍ତିକର ଗତାନୁ-ଗତିକତା । ସାଧାରଣ ଜନ ଜୀବନର ତଥା ଜାତୀୟ ଜୀବନର ଗତି-ଅଗତି ଓ ସଂଘର୍ଷର ଚିତ୍ର ଏଥିରେ ବିରଳ, ଚରିତ୍ର ଚିତ୍ରଣ ଫର୍ମୁଲାଧର୍ମୀ । ନାୟିକା ରାଜ-କନ୍ୟା, ଅପୂର୍ବ ସୁନ୍ଦରୀ । ବୟଃପ୍ରାପ୍ତ ହେବା ମୁହୂର୍ତ୍ତରେ ହିଁ ପୁରୁଷ ସଙ୍ଗ କାମନା, ବିରହ ବ୍ୟଥା ଓ ମିଳନ ଚିନ୍ତାରେ ସଦାବିବ୍ରତା । ନାୟକ ରାଜପୁରୁଷ । ବଳ-ବୀର୍ଯ୍ୟର ସାମାନ୍ୟ ପରିଚୟ ପ୍ରଦାନ, ଯୌବନ ପ୍ରାପ୍ତି ସଙ୍ଗେ ନାୟିକାଲାଭର ବହୁବିଧ ପ୍ରଚେଷ୍ଟା, ବିରହବେଦନା, କେଳିଗୃହରେ ବାତ୍ସାୟନ-ନିର୍ଦ୍ଧାରିତ ଚୌଷଠୀ ବନ୍ଧର ପରୀକ୍ଷାନିରୀକ୍ଷାରେ ବ୍ୟାପୃତ । ଏହି ସମ୍ଭୋଗ ପ୍ରସଙ୍ଗ ବର୍ଣ୍ଣନାରେ କବିମାନେ ଅତ୍ୟଧିକ ଶୃଙ୍ଗାରିକତାର ଆଶ୍ରୟ ନେଇଛନ୍ତି । ଏପରିକି ବୈଷ୍ଣବ କାବ୍ୟଗୁଡ଼ିକର ନାୟକନାୟିକା କୃଷ୍ଣରାଧା ମଧ୍ୟ ଲୌକିକ ପୁରୁଷ ନାରୀର ପ୍ରତିଭୂ ବ୍ୟତୀତ ଅନ୍ୟ କିଛି ନୁହନ୍ତି । ସେଥିପାଇଁ ଏହି କାବ୍ୟର ମୁଖ୍ୟ ବର୍ଣ୍ଣିତ ବିଷୟ ରାସଲୀଳାରେ ତାତ୍ତ୍ୱିକତା ଅପେକ୍ଷା ଶୃଙ୍ଗାରିକତା ଅଧିକ ସ୍ଥାନ ପାଇଛି ।

ଭୋଜରାଜଙ୍କର 'ଶୃଙ୍ଗାରୀଚେତ୍ କବିଃ' ନିର୍ଦ୍ଦେଶରୁ କାବ୍ୟକାରମାନେ ଶୃଙ୍ଗାରରସ ହିଁ କାବ୍ୟର ପ୍ରଧାନ ଉପଜୀବ୍ୟ ହେବା ବିଧେୟ ବୋଲି ମନେ କରିଥିଲେ । ତେବେ କାବ୍ୟର ମୁକ୍ତ ଯୌନଚର୍ଯ୍ୟାର ପୃଷ୍ଠପଟ ରୂପେ ସେ ଯୁଗର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ଅବସ୍ଥା ମଧ୍ୟ ବିସ୍ମରଣୀୟ । ସେ ସମୟରେ ମୋଗଲ ସାମ୍ରାଜ୍ୟର ଶାସକ, ଧନିକ ଓ କ୍ଷମତାସମ୍ପନ୍ନ ବ୍ୟକ୍ତିମାନଙ୍କର ବିଳାସପୂର୍ଣ୍ଣ ଜୀବନଧାରାର ପ୍ରଭାବ ଓ ପ୍ରତିକ୍ରିୟା ସାଧାରଣ ସ୍ତରରେ ମଧ୍ୟ ପ୍ରକାଶ ପାଇଥିଲା । ବହୁନାରୀ ସମ୍ଭୋଗ, ସୁରାପାନ ଓ ସମସ୍ତ ପ୍ରକାର ଐଶ୍ୱର୍ଯ୍ୟ-

ଭୋଗ ଏମାନଙ୍କ ଜୀବନର ଚରମ ଲକ୍ଷ୍ୟ ରୂପେ ପ୍ରତିଷ୍ଠିତ ହୋଇଥିବାର ମନେହୁଏ । ଏହି ସମୟରେ ଉତ୍ତର ଭାରତରେ ଶୃଙ୍ଗାରିକାବ୍ୟ ରୀତିର ଅନୁସରଣରେ ସୃଷ୍ଟ ଏକ ସ୍ୱତନ୍ତ୍ର କାବ୍ୟଧାରା 'ବାରୋମାସ' ବେଶ୍ ଜନପ୍ରିୟତା ଲାଭ କରିଥିଲା । ଏହି କାବ୍ୟଗୁଡ଼ିକର ବିଷୟବସ୍ତୁ, ଚରିତ୍ରଚିତ୍ରଣ ଓ ବର୍ଣ୍ଣନାବିଳାସ ଥିଲା ଉତ୍କଟ ଶୃଙ୍ଗାରଧର୍ମୀ । ବିଳାସୀ ମୋଗଲ ଜୀବନର ପ୍ରଭାବରେ ପ୍ରାନ୍ତୀୟ ରାଜ୍ୟଗୁଡ଼ିକର ରାଜନ୍ୟ ଗୋଷ୍ଠୀ ମଧ୍ୟ ସମରୂପ ରସମୟ ଜୀବନ ଯାପନରେ ଆଗ୍ରହୀ ହୋଇଥିଲେ । ମୋଗଲମାନଙ୍କର ଅବାଧ ସୁରାପାନ ଓ ଉଚ୍ଛୃଙ୍ଖଳ ପ୍ରମତ୍ତତା ଓଡ଼ିଶୀ ସମାଜରେ ପ୍ରଚଳିତ ହୋଇପାରି ନ ଥିବାରୁ ହୁଏତ ସୁରାପାନର ବର୍ଣ୍ଣନା ଓଡ଼ିଆ ରୀତିକାବ୍ୟମାନଙ୍କରେ ସ୍ଥାନ ପାଇନାହିଁ; କିନ୍ତୁ ଯୌନଚର୍ଯ୍ୟାର ବିପୁଳ ପ୍ରକାଶ ଘଟିଛି ରୀତି କବିଗଣଙ୍କର ରଚନାରେ ।

କେବଳ ଧନିକ ଗୋଷ୍ଠୀ ନୁହନ୍ତି ଅଭିଜାତ ସଂସ୍କୃତ ସାହିତ୍ୟର ପଣ୍ଡିତ ଓ ପାଠକବୃନ୍ଦଙ୍କର ଶୃଙ୍ଗାର ରସଧର୍ମ ପ୍ରତି ଥିଲା ପ୍ରଚଣ୍ଡ ଆସକ୍ତି । ଏପରିକି ଶୃଙ୍ଗାରାତ୍ମକ ଚମତ୍କାର ଶ୍ଳୋକମାନ କାବ୍ୟରୁ ହେଉ ବା ଉଦ୍ଭଟ ସୁଭାଷିତରୁ ହେଉ ପାଠ ତଥା ଆଲୋଚନା କରିବା ଥିଲା ଅବସରବିନୋଦନର ପ୍ରଧାନ ଆକର୍ଷଣୀୟ ମାଧ୍ୟମ । ଆଜିକାଲିର ବିବିଧ ଆମୋଦନ ମାଧ୍ୟମ ସେ କାଳରେ ନଥିବାରୁ ତତ୍କାଳୀନ ପ୍ରାକୃତ ଶୃଙ୍ଗାରାତ୍ମକ ରଚନା କିମ୍ବା ଯୌନ ଚର୍ଚ୍ଚାକୁ ସାଧାରଣ ଲୋକେ ମଧ୍ୟ ଆମୋଦନ ମାର୍ଗ ରୂପେ ଗ୍ରହଣ କରୁଥିଲେ । ଏହା ଥିଲା ସେମାନଙ୍କର ସହଜାତ ଓ ଆଦିମ ମାନସିକ ଅଭୀପ୍ସା ବା କାମନାର ଏକ ରେଚନ କ୍ରିୟା, ଏକ ସ୍ୱଭାବ । ଏ ସମସ୍ତର ମୌଳିକ ହେତୁ ହେଉଛି ଗୋଟିଏ, ତାହା ଯଥୋଚିତ ରୂପେ ବ୍ୟକ୍ତ କରାଯାଇଛି ନିମ୍ନୋକ୍ତ ଶ୍ଳୋକରେ—

କଂଦର୍ପୋ ହର୍ମତନୟୋ ଯୋଽସୌ କାମୋ ନିଗଦ୍ୟତେ
ସ ଶଂକରେଣ ସଂଦଗ୍‌ଧେ ହ୍ୟନଂଗତ୍ୱା ମୁପାଗତଃ ।

(ବାୟୁପୁରାଣ, କାମଦହନ ପ୍ରସଙ୍ଗ)

କନ୍ଦର୍ପକୁ ପୁରାଣଭିତ୍ତିକ କୃଷ୍ଣତନୟ ନ କହି ହର୍ମତନୟ କହିବା ବାସ୍ତବ ଓ ଯଥାର୍ଥ; ତାହାହିଁ କାମ, ଆସଙ୍ଗଲିପ୍ସା ନରନାରୀଙ୍କ ପାରସ୍ପରିକ ସମ୍ଭୋଗ କାମନା, ରସସାର ଶୃଙ୍ଗାର ରସ । ଏହା ସମସ୍ତଙ୍କ ନିମନ୍ତେ ଆନନ୍ଦଜନକ । ସେ ଦୃଷ୍ଟିରୁ ମଧ୍ୟଯୁଗୀୟ କାବ୍ୟସାହିତ୍ୟ କେବଳ ରାଜନ୍ୟଗୋଷ୍ଠୀର ଅଭିରୁଚି ପ୍ରତିଫଳିତ କରିଥିଲା, ତା' ନୁହେଁ; ବରଂ ସାଧାରଣ ପାଠକର ଆନନ୍ଦ ବିଧାନ ଉଦ୍ଦେଶ୍ୟରେ ଆଦିରସ ବା ଶୃଙ୍ଗାର ରସର ବିପୁଳ ପ୍ରକାଶ ଏଥିରେ ଘଟିଥିଲା ।

କବିମାନେ ଆଦିରସମୁଖ୍ୟ ନାୟକ ନାୟିକା ନିର୍ବାଚନରେ ଅନୁକୂଳ ଚରିତ୍ର ସନ୍ଧାନ କରୁଥିଲେ । ବହୁନାରୀବାଞ୍ଛିତ କୃଷ୍ଣଙ୍କ କେନ୍ଦ୍ରକରି ପରକୀୟା ପ୍ରୀତିର ନଗ୍ନ ପ୍ରକାଶ ସଂଘଟିତ ହେବାବେଳେ ଭଞ୍ଜୀୟ କାବ୍ୟରେ ସ୍ୱକୀୟାରତିର ବର୍ଣ୍ଣନା-ପ୍ରାଚୁର୍ଯ୍ୟ ରୀତିକାବ୍ୟ ସମୂହକୁ ରସଦୀପ୍ତ କରିଥିଲା ।

ଏହି ପୃଷ୍ଠଭୂମିରେ ଶିବପାର୍ବତୀଙ୍କର କଠିନ ତପସ୍ୟାଲବ୍ଧ ପ୍ରେମ, ସଂଯତ ଗାର୍ହସ୍ଥ୍ୟ ଜୀବନର ଆଦର୍ଶ 'ଶୃଙ୍ଗାରଚେତ କବି'ଙ୍କର ବର୍ଣ୍ଣନାନୁକୂଳ ହୋଇ ନଥିବାର ଆଶ୍ଚର୍ଯ୍ୟ କିଛି ନାହିଁ । ଅମ୍ବିକା ବିଳାସ କାବ୍ୟ ଓ କେତୋଟି ଚଉତିଶା ବ୍ୟତିରେକେ ଶିବ ମୁଖ୍ୟ ଚରିତ୍ର ରୂପେ ବା ଶିବ କଥା ମୁଖ୍ୟ ପ୍ରସଙ୍ଗ ଭାବରେ ଅନ୍ୟ କୌଣସି କାବ୍ୟରେ ବର୍ଣ୍ଣିତ ହୋଇନାହିଁ । କିନ୍ତୁ ବର୍ଣ୍ଣନା କ୍ରମରେ ଶିବ ସମ୍ପର୍କ ବାରମ୍ବାର ସୂଚିତ ହୋଇଅଛି । ମଧ୍ୟଯୁଗୀୟ କାବ୍ୟଗୁଡ଼ିକରେ ନାୟକ ନାୟିକା ପରସ୍ପରକୁ ଲାଭକରିବା ପାଇଁ ଶିବୋପାସନା କରିଛନ୍ତି । ମାନସିକ ପୂରଣ ଲାଗି ଶିବଙ୍କ ନିକଟରେ ପୂଜାର୍ଚ୍ଚନାର ଆୟୋଜନ କରାଯାଇଛି ଓ କାମଦେବର ଆକ୍ରମଣରୁ ରକ୍ଷାପାଇବା ନିମନ୍ତେ କାମଜିତ୍ ବାମଦେବଙ୍କୁ ବାରମ୍ବାର ସ୍ମରଣ କରାଯାଇଛି । ନାରୀ ବକ୍ଷୋଜର ଭଙ୍ଗିମା ସୌନ୍ଦର୍ଯ୍ୟକୁ ବର୍ଣ୍ଣନା କରିବାକୁ ଯାଇ ପ୍ରାୟ ସମସ୍ତ କବି ଶିବଲିଙ୍ଗକୁ ମୁଖ୍ୟ ଉପମାନ ରୂପେ ଗ୍ରହଣ କରିଛନ୍ତି । ପ୍ରସଙ୍ଗ କ୍ରମରେ ଶିବବନ୍ଦନା, ରୂପବର୍ଣ୍ଣନା କାମୁକତା, ଗୌରୀପ୍ରୀତି, ମଧ୍ୟସ୍ଥତା, ଭୋଳାପଣ, ଯୋଗୀ, ରୂପ, ଭାଙ୍ଗାସକ୍ତ ଓ ହରିହର ସ୍ୱରୂପ ପ୍ରଭୃତିର ବହୁ ବର୍ଣ୍ଣନା କାବ୍ୟଗୁଡ଼ିକୁ ଋଦ୍ଧିମନ୍ତ କରିଛି ।

ମଧ୍ୟଯୁଗୀୟ ସାହିତ୍ୟରେ ଶିବକାବ୍ୟର ସଂଖ୍ୟା ନଗଣ୍ୟ ହେଲେ ମଧ୍ୟ ଶିବସ୍ତୁତି ମୂଳକ ରଚନାର ପରିମାଣ ଉଲ୍ଲେଖଯୋଗ୍ୟ । ସପ୍ତଦଶ, ଅଷ୍ଟାଦଶ ଶତାବ୍ଦୀରେ ଅନ୍ୟୂନ ଛଅଗୋଟି ସ୍ୱତନ୍ତ୍ର ଓଡ଼ିଆ ଶିବ ପୁରାଣ ବିଭିନ୍ନ ଗ୍ରନ୍ଥକାରଙ୍କ ଦ୍ୱାରା ରଚିତ ହୋଇଛି । ପୁରାଣଗୁଡ଼ିକ କାବ୍ୟପର୍ଯ୍ୟାୟଭୁକ୍ତ ନ ହେଲେ ମଧ୍ୟ ଏ ଗୁଡ଼ିକର ତଥାବସ୍ତୁ ସଜ୍ଜୀକରଣ, ବର୍ଣ୍ଣନା ଶୈଳୀ, ଭାଷାପ୍ରୟୋଗ ଓ ଉପସ୍ଥାପନା-ଗତ ବୈଶିଷ୍ଟ୍ୟ ଦୃଷ୍ଟିରୁ ଏହାର ସାହିତ୍ୟିକ ମୂଲ୍ୟ ନିର୍ଦ୍ଧାରଣ କରାଯାଇ ପାରେ । ଏତଦ୍ବ୍ୟତୀତ ଏ ସମୟରେ ରଚିତ ଶିବ ଭକ୍ତି ଚନ୍ଦ୍ରୋଦୟ, ଶିବପୁରାଣ ଗୀତା ଓ ଶ୍ରୀ ଶିବ ଗୀତା ପ୍ରଭୃତି ଉଲ୍ଲେଖନୀୟ ଶିବସ୍ତୁତି ମୂଳକ ଗ୍ରନ୍ଥ ।

**ଅମ୍ବିକା ବିଳାସ** : ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସାହିତ୍ୟରେ ଅବିସ୍ମରଣୀୟ କବିପ୍ରତିଭା ବ୍ରଜନାଥ ବଡ଼ଜେନା । ଢେଙ୍କାନାଳ ନିବାସୀ ଏହି କବି ଗଦ୍ୟ ଓ ପଦ୍ୟ ଉଭୟ କ୍ଷେତ୍ରରେ ତାଙ୍କର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଛନ୍ତି । ରୀତି-ଯୁଗର ଶ୍ରେଷ୍ଠ କବି ଉପେନ୍ଦ୍ର ଭଞ୍ଜଙ୍କୁ ଅନେକତ୍ର ଅନୁସରଣ କରିଥିଲେ ମଧ୍ୟ ବ୍ରଜ-

ନାଥ ନିଜର ମୌଳିକ କଳ୍ପନାବିଳାସ ଓ ବର୍ଣ୍ଣନା ବୈଚିତ୍ର୍ୟରେ ନୂତନତାର ସ୍ୱାକ୍ଷର ଅଙ୍କନ କରିଛନ୍ତି । କାବ୍ୟର ଅନ୍ତରଙ୍ଗ ସୌନ୍ଦର୍ଯ୍ୟ ବୃଦ୍ଧିର ସହାୟକ ଗୁଣ, ଅଳଂକାର ବାହ୍ୟସୌନ୍ଦର୍ଯ୍ୟ ବିକାଶରେ ସାହାଯ୍ୟ କରିଥାଏ । ଆଚାର୍ଯ୍ୟ ଦଣ୍ଡୀଙ୍କ ମତରେ 'କାବ୍ୟଶୋଭାକରାନ୍ ଧର୍ମାନ୍ ଅଳଙ୍କାରାନ୍ ପ୍ରଚକ୍ଷତେ' । ଏହି ମତ ଅବଲମ୍ବନରେ ଓଡ଼ିଆ ରୀତିକବିମାନେ ରସ ଓ ଗୁଣ ଅପେକ୍ଷା କାବ୍ୟରେ ବହୁଳ ଅଳଙ୍କାର ପ୍ରୟୋଗକୁ ଅଧିକ ପ୍ରାଧାନ୍ୟ ଦେଇଥିବାର ଜଣାଯାଏ । ଅତ୍ୟଧିକ ଶବ୍ଦାଳଙ୍କାର ପ୍ରୟୋଗରେ ରୀତିକବିମାନଙ୍କ ସଦୃଶ ବ୍ରଜନାଥ ସ୍ୱରଚନାବଳୀକୁ ଦୁର୍ବୋଧ କରିନଥିଲେ ମଧ୍ୟ ଯୁଗନିୟମାନୁସାରେ କାବ୍ୟ ମାନଙ୍କରେ ପ୍ରାୟ ସମସ୍ତ ପ୍ରକାର ଅଳଙ୍କାରର ସନ୍ନିବେଶ କରିଚନ୍ତି । ଭଞ୍ଜଙ୍କର ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, ଦୀନକୃଷ୍ଣଙ୍କର ରସକଲ୍ଲୋଳ କାବ୍ୟ ବ, ସ ଓ କ ଆଦ୍ୟବର୍ଣ୍ଣ ନିୟମରେ ରଚିତ ହେବା ଆଦର୍ଶରେ କବି ବ୍ରଜନାଥ ଆଦ୍ୟରେ 'ଶ' ବର୍ଣ୍ଣ ନିୟମରେ ଶ୍ୟାମରାସୋତ୍ସବ ରଚନା କରିଛନ୍ତି । କିନ୍ତୁ ସ୍ୱରବର୍ଣ୍ଣ 'ଅ' କାର ନିୟମରେ ପ୍ରଥମ କାବ୍ୟ ରଚନା କରିଛନ୍ତି ଅଂବିକା ବିଳାସ । କବିଙ୍କର ସଙ୍ଗୀତ ଶାସ୍ତ୍ର ସମ୍ବନ୍ଧରେ ସ୍ପଷ୍ଟଜ୍ଞାନ ଥିବାରୁ କାବ୍ୟଗୁଡ଼ିକରେ ରାଗ, ତାଳ ଛନ୍ଦର ଯଥାଯଥ ଅବତାରଣା କରାଯାଇଛି ଓ ଜ୍ୟୋତିଷଶାସ୍ତ୍ର ବହୁଭାଷାଭିଜ୍ଞତାର ପରିଚୟ କାବ୍ୟ-ଗୁଡ଼ିକରେ ସ୍ପଷ୍ଟ । ତାଙ୍କର ଗୁଣ୍ଡିଚା ବିଜେ ହିନ୍ଦୀ ଭାଷାରେ ରଚିତ, ସମର ତରଙ୍ଗରେ ଛନ୍ଦଭଙ୍ଗ ଦେଇଥିବା ମରହଟ୍ଟା ସୈନ୍ୟବାହିନୀର ବିଳାପ ବର୍ଣ୍ଣନାରେ ହିନ୍ଦୀ ଓ ଗୋରଠାଭାଷାର ପ୍ରୟୋଗ ଉଲ୍ଲେଖଯୋଗ୍ୟ । ବିଶେଷତଃ ଅଂବିକା ବିଳାସର ଷଟ୍‌ତ୍ରିଂଶ ଛାନ୍ଦରେ ଋଷି, ଦେବ, ନାଗ, ଅସୁର, ବଂଗ ଓ ଉତ୍କଳ ଦେଶ କର୍ତ୍ତୃକ ଶିବସ୍ତୁତିରେ ସଂସ୍କୃତ, ପ୍ରାକୃତ, ଗୋରଠା, ବଂଗଳା ଓ ପିଙ୍ଗଳ ଭାଷା ସମୂହର ପ୍ରୟୋଗ କରି କବି ନିଜର ବହୁଭାଷା ଜ୍ଞାନର ପରିଚୟ ପ୍ରଦାନ କରିଛନ୍ତି ।

'ଅଂବିକା ବିଳାସ' ଶିବ-ପାର୍ବତୀ ବିବାହ ଓ କୁମାର ଜନ୍ମ-ପ୍ରସଙ୍ଗ ଉପରେ ଆଧାରିତ ଏକ ବିଶିଷ୍ଟ ଶୈବକାବ୍ୟ । ରୀତିଯୁଗୀୟ ବୈଷ୍ଣବ କାବ୍ୟ ଗୁଡ଼ିକରେ ପରକୀୟା ପ୍ରୀତିର ନଗ୍ନ କାମବିଳାସ, କାଳ୍ପନିକ କାବ୍ୟ ଗୁଡ଼ିକର ନିଷ୍ପ୍ରାଣ, ରତିବିଳାସୀ ନାୟକ ନାୟିକା ଚରିତର ବହୁଳ ବର୍ଣ୍ଣନାର ଗତାନୁଗତିକତା ପାଠକକୁ କ୍ଲାନ୍ତକରି ମନେ ହେଉଥିବା ବେଳେ ଅଂବିକା ବିଳାସ ବିଦଗ୍ଧ ପାଠକ ସମାଜକୁ ଅବଶ୍ୟ ନୂତନତାର ଆସ୍ୱାଦ ଦେଇଥିବ । ତେଜ ସହ ପ୍ରେମ, କଠିନ ସାଧନା ସହ ପ୍ରଣୟ ବିଳାସର ଉଜ୍ଜ୍ୱଳ ଚିତ୍ର ଓଡ଼ିଆ ରୀତିକାବ୍ୟ

କ୍ଷେତ୍ରରେ ଅଂବିକା ବିଳାସ ବ୍ୟତୀତ ଅନ୍ୟ କେଉଁଠାରେ ସମ୍ଭବ ହୋଇଛି ବୋଲି ମନେହୁଏ ନାହିଁ । ଜଗତ୍ପିତା ଓ ଜଗଜ୍ଜନନୀ କାବ୍ୟର ନାୟକ ନାୟିକା । ଏମାନଙ୍କର ମିଳନ ବର୍ଣ୍ଣନାରେ କବି ଯଥା ସମ୍ଭବ ସଂଯମ ରକ୍ଷା କରିବାର ଚେଷ୍ଟା କରିଥିଲେ ମଧ୍ୟ ଯୁଗରୁଚିର ତାଡ଼ନାରେ ସ୍ଥଳବିଶେଷରେ ଲେଖନୀ ଉପରେ ନିୟନ୍ତ୍ରଣ ହରେଇଛନ୍ତି । ରତି ବ୍ୟତୀତ ପ୍ରୀତିର ଅନ୍ୟ କୌଣସି ପରିଚୟ ବୋଧ-ହୁଏ ରୀତିକବିମାନଙ୍କ ମନକୁ ସ୍ପର୍ଶ କରୁନଥିଲା । ତେଣୁ 'ଅମ୍ବିକାବିଳାସ'ରେ ପ୍ରେମର ଉଚ୍ଚଭାବ ପ୍ରକଟିତ ହେଲେ ମଧ୍ୟ ରତିବିଳାସର ମୋହ ଶିବ-ପାର୍ବତୀଙ୍କୁ ମଧ୍ୟ ଆଚ୍ଛନ୍ନ କରିଦେଇଛି ।

ଏହି କାବ୍ୟଟିର ପିତୃତ୍ୱ ସମ୍ପର୍କରେ ମତାନୈକ୍ୟ ଦେଖାଯାଏ । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ଏହା ଭୂତପୂର୍ବ କେନ୍ଦୁଝରାଧୀଶ୍ୱର ପ୍ରତାପ ବଳଭଦ୍ର ଦେବଙ୍କ ପ୍ରଣୀତ ବୋଲି ସ୍ୱୀକାର କରି ନିଜ ସମ୍ପାଦନା ସହ ୧୯୩୭ରେ ଏ କାବ୍ୟକୁ ପ୍ରଥମେ ଲୋକଲୋଚନ ସମକ୍ଷରେ ଉପସ୍ଥାପିତ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମଧ୍ୟ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସ ତୃତୀୟଖଣ୍ଡରେ ଉକ୍ତ କାବ୍ୟକୁ ବଳଭଦ୍ରଙ୍କ ରଚନା ଭାବରେ ସ୍ୱୀକୃତି ଦେଇଛନ୍ତି । ଶଶିଭୂଷଣ ରାୟ, ବିନ୍ଦନ-ଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପ୍ରହରାଜ, କୁଳମଣି ଦାସ ପ୍ରମୁଖ 'ଭାଷାକୋଷ' ଗୋଷ୍ଠୀର ସାହିତ୍ୟିକବୃନ୍ଦ ଏବଂ ବାଲକୃଷ୍ଣ କର ଏହି ମତର ପୋଷକତା କରନ୍ତି । କିନ୍ତୁ ସୁଧାକର ପଟ୍ଟନାୟକ, ମାୟାଧର ମାନସିଂହ ଓ ଓଡ଼ିଆ ସାହିତ୍ୟର ଆଧୁନିକ ଗବେଷକମାନେ ସମସ୍ୱରରେ ଏହି କାବ୍ୟର ରଚୟିତା ଭାବରେ ବ୍ରଜନାଥ ବଡ଼ଜେନାଙ୍କୁ ଗ୍ରହଣ କରିଛନ୍ତି ।

**କଥାବସ୍ତୁ :** କାବ୍ୟାରମ୍ଭରେ କବି ଶିବ-ଶିବାଙ୍କୁ ଅଷ୍ଟପଦୀ ଶ୍ଳୋକରେ ସ୍ତୁତି କରିଛନ୍ତି । କଥାବସ୍ତୁ ନିମନ୍ତେ ବ୍ରଜନାଥ କାଳିଦାସଙ୍କର ପ୍ରସିଦ୍ଧ ଶୈବ କାବ୍ୟ 'କୁମାରସମ୍ଭବ ଓ ଶିବ ପୁରାଣ ପ୍ରଭୃତି ଉପରେ ନିର୍ଭର କରିଥିଲେ ମଧ୍ୟ କେତେକ ସ୍ଥଳରେ ନିଜର ମୌଳିକତା ପ୍ରଦର୍ଶନ କରି କାବ୍ୟ ମର୍ଯ୍ୟାଦା କ୍ଷୁର୍ଣ୍ଣ କରିନାହାନ୍ତି; ବରଂ ଏକ ସ୍ୱାଭାବିକ ପରିଣତି ଦିଗରେ ଆଗେଇ ନେଇଛନ୍ତି । 'ଅପାରେ କାବ୍ୟ ସଂସାରେ କବିରେବ ପ୍ରଜାପତିଃ' ଏହି ବାକ୍ୟ ସ୍ମରଣ କଲେ କବିଙ୍କର ପୁରାଣସମ୍ମତ ବିଷୟ ବ୍ୟତିକ୍ରମ ଇଚ୍ଛାଧୀନ ଥିବା ହେତୁ ଦୋଷାବହ ନୁହେଁ । ଆହୁରି ମଧ୍ୟ ବିଷୟ ଅପେକ୍ଷା ଅଳଙ୍କାରବିନ୍ୟାସରେ ପକ୍ଷପାତିତା କାଳୋଚିତ ଥିବାରୁ ଏପରି ବ୍ୟତିକ୍ରମ ଘଟିବା ସ୍ୱାଭାବିକ ।

ପ୍ରଥମ ଛାନ୍ଦରେ ଦକ୍ଷକନ୍ୟା ସତୀଙ୍କର ଶୈଶବ ଓ ଯୌବନର ସଂକ୍ଷେପ ସୂଚନା ଦିଆଯାଇଛି । ସତୀଙ୍କ ଲାଗି ଶିବ ଉପଯୁକ୍ତ ବରପାତ୍ର ବୋଲି ବ୍ରହ୍ମା କହିବାବେଳେ ଦକ୍ଷ ତାହାର ଦୃଢ଼ ପ୍ରତିବାଦ କରି ଶିବଙ୍କ କୁଳହୀନତା, ଶ୍ମଶାନ ବିହାର, ଅସ୍ଥି, ଫଣିମାଳ ଓ ନଗ୍ନତା ପ୍ରତି ଆକ୍ଷେପ କରିଛନ୍ତି । କିନ୍ତୁ ବ୍ରହ୍ମାଙ୍କ ନିର୍ଦ୍ଦେଶକୁ ଅମାନ୍ୟ କରି ନ ପାରି ଶିବଙ୍କ ସହିତ ନିଜ କନ୍ୟା ସତୀଙ୍କର ବିବାହ ଦେବାକୁ ବାଧ୍ୟ ହୋଇଛନ୍ତି । ଦ୍ୱିତୀୟ ଛାନ୍ଦରେ ବିବାହ ପରେ କାଶୀପୁରକୁ ଫେରି ଆସିଥିବା ଶିବ ଓ ସତୀଙ୍କର ଦାମ୍ପତ୍ୟ ମିଳନର ଚିତ୍ର ଅଙ୍କିତ । ତୃତୀୟ ଛାନ୍ଦରେ ଦକ୍ଷ ପ୍ରଜାପତି ଆୟୋଜିତ ଯଜ୍ଞକୁ ଅନିମନ୍ତ୍ରିତ ଭାବରେ ସତୀଙ୍କର ଆଗମନ ଓ ଦକ୍ଷଙ୍କର ଉପେକ୍ଷା ଭାବରେ ଅପମାନିତା ଦେବୀ ଯଜ୍ଞପୀଠର ଅନଳକୁଣ୍ଡରେ ଆତ୍ମାହୁତି ପ୍ରଦାନ କରିଛନ୍ତି । ଚତୁର୍ଥ ଛାନ୍ଦରେ ସତୀଙ୍କ ମୃତ୍ୟୁ ସମ୍ବାଦରେ ଶିବ ପ୍ରଚଣ୍ଡ କ୍ରୋଧରେ ବୀରଭଦ୍ରଙ୍କୁ ସୃଷ୍ଟି କରି ଦକ୍ଷଯଜ୍ଞ ଧ୍ୱଂସ କରିବାକୁ ଆଦେଶ ଦେବା ସଙ୍ଗେ ତାହା ତତ୍‌କ୍ଷଣାତ୍ ପାଳିତ ହୋଇଛି । ପଞ୍ଚମରେ ସତୀବିରହରେ ଶିବଙ୍କର ଦୁଃଖ, ଶୋକ ଓ ବିଳାପର ହୃଦୟସ୍ପର୍ଶୀ ବର୍ଣ୍ଣନା ଦେଇଛନ୍ତି କବି । ଷଷ୍ଠରେ ହିମାଳୟର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଅମ୍ବିକାଜନ୍ମର ବିବରଣୀ, ସପ୍ତମରେ ଅଂବିକାଙ୍କର ବାଲ୍ୟଲୀଳା, ଅଷ୍ଟମରେ ବୟଃସନ୍ଧି ଓ ଋତୁକର୍ମବିଧି, ନବମରେ ହିମାଳୟର ଏକ ସ୍ଥାନରେ ଶିବଙ୍କର ତପସ୍ୟା, ଅଂବିକାଙ୍କର ସଖୀମାନଙ୍କ ଗହଣରେ ଶିବସେବା, ଦଶମରେ ଶିବଙ୍କର ତପୋଭଙ୍ଗ, ମଦନ ଦହନ ଓ ହିମାଚଳ ପରିତ୍ୟାଗ, ଏକାଦଶରେ ରତି ବିଳାପ ଓ ମଦନର ଜୀବନଲାଭ, ଦ୍ୱାଦଶରେ ଅଂବିକାଙ୍କର ସ୍ୱପ୍ନରେ ଶିବ ଦର୍ଶନ ଓ ସାନ୍ନିଧ୍ୟଲାଭ, ସ୍ୱପ୍ନଭଙ୍ଗ ପରେ ବିଳାପ, ତ୍ରୟୋଦଶରେ ପାର୍ବତୀଙ୍କ ବିରହ ବର୍ଣ୍ଣନା, ଚତୁର୍ଦ୍ଦଶରେ ପାର୍ବତୀଙ୍କ ତପସ୍ୟା ଓ ବରପ୍ରାପ୍ତି, ପଞ୍ଚଦଶ ଓ ଷୋଡ଼ଶରେ ଶିବଙ୍କର କାମତାପିତ ବିରହ ବର୍ଣ୍ଣନା, ସପ୍ତଦଶରେ ପାର୍ବତୀଙ୍କ ରୂପ ଶୋଭାର ଚିତ୍ର, ଅଷ୍ଟାଦଶରେ ପାର୍ବତୀଙ୍କ ବିବାହ ନିମନ୍ତେ ବର ଅନ୍ୱେଷଣ, ଊନବିଂଶରେ କାଶୀପୁର ବର୍ଣ୍ଣନା, ବିଂଶରେ ଶିବଙ୍କର ବିବାହ ଯାତ୍ରା, ଏକବିଂଶରେ ବିବାହ ମଣ୍ଡପ ସଜ୍ଜୀକରଣ, ଦ୍ୱାବିଂଶ ଶିବ ପାର୍ବତୀ ବିବାହ, ତ୍ରୟୋବିଂଶରେ ବରଯାତ୍ରୀ ଚର୍ଚ୍ଚା, ଚତୁର୍ବିଂଶରେ ମଧୁଶଯ୍ୟା ବେଶ ବର୍ଣ୍ଣନା, ପଞ୍ଚବିଂଶରେ କେଳି ମନ୍ଦିରରୁ ଅମ୍ବିକାଙ୍କ ପ୍ରତ୍ୟାବର୍ତ୍ତନ, ରତିକ୍ଳାନ୍ତା ଦେବୀଙ୍କର ବେଶ ଓ ଅବସ୍ଥା, ଷଡ଼ବିଂଶରେ ସଖୀ ପରିହାସ, ସପ୍ତବିଂଶରେ ହିମାଳୟଙ୍କର ଯୌତୁକଦାନ, ଅଷ୍ଟାବିଂଶ ଛାନ୍ଦ ଶିବ-ପାର୍ବତୀଙ୍କର ବାହୁଡ଼ା ବିଜେ, ଊନତ୍ରିଂଶରେ ବର୍ଷା ବର୍ଣ୍ଣନା, ନ୍ୟାୟବଳ ଖେଳ ଓ କେଳି, ତ୍ରିଂଶରେ ସପତ୍ନୀ ଈର୍ଷାଜନିତ ପାର୍ବତୀଙ୍କର ଅଭିମାନ, ଶିବଙ୍କର ମାନଭଞ୍ଜନ ଓ ସ୍ତୁତି, ଏକତ୍ରିଂଶ, ଦ୍ୱାତ୍ରିଂଶ, ତ୍ରୟୋତ୍ରିଂଶ

ଓ ଚତୁର୍ଦ୍ଦିଂଶ ସ୍ତବକମାନଙ୍କରେ ଶରତ, ହେମନ୍ତ, ଶିଶିର ଓ ବସନ୍ତ ଋତୁରେ ଶିବପାର୍ବତୀଙ୍କର ଶୃଙ୍ଗାର ବିଳାସର ଚିତ୍ର, ପଞ୍ଚବିଂଶରେ ହିମାଙ୍କର ଗର୍ଭୋଦୟ ଓ କୁମାର ଜନ୍ମ, ଷଡ୍‌ବିଂଶରେ କୁମାର ଜନ୍ମୋତ୍ସବ, ସୁରସୁନ୍ଦରଙ୍କୁ ନିମନ୍ତ୍ରଣ, ତାଣ୍ଡବ ନୃତ୍ୟ ରଚନା, ବ୍ରହ୍ମା, ଇନ୍ଦ୍ର, ଦେବଗଣ, ଋଷି, ବଙ୍ଗ ଓ ଉତ୍କଳ ଦେଶ କର୍ତ୍ତୃକ ଶିବ ବନ୍ଦନା, ନିମନ୍ତ୍ରିତ ସକଳ ଅତିଥିଙ୍କର ଶିବ ନୃତ୍ୟ ଦର୍ଶନ, ସପ୍ତବିଂଶରେ କାର୍ତ୍ତିକଙ୍କ ଦ୍ୱାରା ତାରକାସୁର ବଧ, ଅଷ୍ଟବିଂଶରେ ଦେବୀଙ୍କର ସ୍ତୁତି ଓ ପରବର୍ତ୍ତୀ ତିନୋଟି ସ୍ତବକରେ କାବ୍ୟ ବିସ୍ତୃତ, କବି ପରିଚୟ ଓ ରାଜନୀତି ବର୍ଣ୍ଣନା ପ୍ରଭୃତି ସ୍ଥାନ ପାଇଛି ।

**କଥାବସ୍ତୁର ସ୍ୱାତନ୍ତ୍ର୍ୟ**—ଭାଗବତ, ଶିବପୁରାଣ ଓ ମହାଭାରତ ପ୍ରଭୃତିରେ ଯଜ୍ଞଶାଳାରେ ସତୀଙ୍କୁ ଅନିମନ୍ତ୍ରିତ ଭାବରେ ପ୍ରବେଶ କରିବାର ଦେଖି ପିତା ଦକ୍ଷ ଅତ୍ୟନ୍ତ କଟୁଭାଷାରେ ଭର୍ତ୍ସନା କରିବା ସଙ୍ଗେ ଶିବଙ୍କର ଘୋର ନିନ୍ଦା କରିଛନ୍ତି । ଏଠାରେ କାବ୍ୟର ତୃତୀୟ ସ୍ତବକରେ ଦକ୍ଷ ଯଜ୍ଞପୀଠରେ ସତୀଙ୍କୁ ପ୍ରବେଶ କରିବାର ଦେଖି କୌଣସି କୁଶଳ ଜିଜ୍ଞାସା ନ କରି ତାଙ୍କର ଉପସ୍ଥିତିକୁ ନୀରବରେ ଉପେକ୍ଷା କରିଦେଇଛନ୍ତି । ତୀବ୍ର ଭାଷାରେ ଭର୍ତ୍ସନା କରିବା ଅପେକ୍ଷା ଦକ୍ଷଙ୍କର ସତୀଙ୍କ ଉପସ୍ଥିତିକୁ ସାମାନ୍ୟ ଭ୍ରୂକ୍ଷେପ ନ କରିବା କମ୍ ଯନ୍ତ୍ରଣାଦାୟକ ମନେହୋଇନାହିଁ ।

ନବମ ସ୍ତବକରେ ସତୀଙ୍କ ମୃତ୍ୟୁ ପରେ ଶିବ ନିଜର ମାନସିକ ସ୍ଥିରତା ଆଣିବା ପାଇଁ କଠିନ ତପଶ୍ଚରଣ କରିଛନ୍ତି । ହିମାଳୟର ସାନୁଦେଶରେ ତପସ୍ୟା-ମଗ୍ନ ଶିବଙ୍କର ସେବାରେ ନିୟୋଜିତା ହିମବନ୍ତକନ୍ୟା ଅମ୍ବିକା ଶିବଙ୍କ ଅଲକ୍ଷ୍ୟରେ ଧ୍ୟାନବେଦିର ପରିଚ୍ଛନ୍ନତାଠାରୁ ଆରମ୍ଭ କରି ଯଜ୍ଞର ସମିଧ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦନ କରିଦେଉଥିବାରୁ ଶିବ ଅହର୍ନିଶ କିଏ ତାଙ୍କର ଏପରି ସଯତ୍ନ ସେବା କରିଚାଲିଛି ଜାଣିବା ପାଇଁ କୌତୂହଳୀ ହୋଇ ଉଠିଛନ୍ତି । କୁମାରସମ୍ଭବର ନିବାତନିଷ୍କମ୍ପ ଦୀପଶିଖା ସଦୃଶ ସ୍ଥିର ଅବିଚଳ ଏକକ ବ୍ରହ୍ମଧ୍ୟାନମଗ୍ନ ଶିବଙ୍କ ମନରେ ଲାବଣ୍ୟମୟୀ ଗୌରୀଙ୍କର ଉପସ୍ଥିତି କୌଣସି ସମୟରେ ମଧ୍ୟ ସାମାନ୍ୟତମ ବିଶୃଙ୍ଖଳା ସୃଷ୍ଟି କରିପାରି ନାହିଁ । ଏଠାରେ କିନ୍ତୁ ଶିବ ଅମ୍ବିକାକୁ ଦେଖିବା ସଙ୍ଗେ କାମସିନ୍ଧୁକୁ ଉତ୍ତୀର୍ଣ୍ଣ ହେବାର ଏକ ଦୃଢ଼ ଅବଲମ୍ବନ ପାଇଛନ୍ତି ।

ମଦନ ଦହନ ପରେ ରତିବିଳାପ ଲକ୍ଷ୍ୟ କରି ଦେବଗଣ ତତ୍‌କ୍ଷଣାତ୍ ଅମୃତଦାନରେ ମଦନଙ୍କୁ ଜୀବଦାନ ଦେଇଛନ୍ତି ; ଶିବ ବିବାହ ପର୍ଯ୍ୟନ୍ତ ଅପେକ୍ଷା

କରଯାଇ ନାହିଁ । ଶିଶୁଶଙ୍କରଙ୍କ 'ଊଷାଭିଳାଷ' ଓ ଭଞ୍ଜଙ୍କର 'ଲାବଣ୍ୟବତୀ' କାବ୍ୟରେ ନାୟିକାର ସ୍ୱପ୍ନରେ ନାୟକ ସହ ସାକ୍ଷାତ ଓ ସାମାନ୍ୟ ଅନ୍ତରଙ୍ଗତା ପରେ ସ୍ୱପ୍ନଭଙ୍ଗଜନିତ ପ୍ରଳାପ ବର୍ଣ୍ଣନା ଅନୁରୂପ ପାର୍ବତୀ ଓ ଶିବଙ୍କର ସ୍ୱପ୍ନ ଦର୍ଶନ, ସ୍ୱପ୍ନଭଙ୍ଗ ପରେ ଉଭୟଙ୍କର ବିଳାପ ବର୍ଣ୍ଣିତ ।

ଶିବଙ୍କୁ ପତି ରୂପେ ଲାଭ କରିବା ପାଇଁ ପାର୍ବତୀ କଠିନ ତପସ୍ୟା କରିଥିଲେ । କୁମାରସମ୍ଭବରେ ତପଃତୁଷ୍ଟ ଶିବଙ୍କର ଆବିର୍ଭାବ ଘଟିଥିଲା ଦେବୀଙ୍କର ସାଧନା ସ୍ଥଳୀରେ; ସ୍ୱରୂପରେ ନୁହେଁ, ଛଦ୍ମ ବ୍ରହ୍ମଚାରୀ ବେଶରେ । କାରଣ ଶେଷଥର ପାଇଁ ପାର୍ବତୀଙ୍କ ମନୋବଳ ପରୀକ୍ଷା କରିନେବା ଓ ନିଜ ସମ୍ବନ୍ଧରେ ପ୍ରକୃତ ଅବସ୍ଥା ଜଣାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ବୋଧହୁଏ ଉମାଙ୍କର ତପସ୍ୱିନୀ ରୂପକୁ ଆଖି ପୂରେଇ ଦେଖିନେବା ପାଇଁ ଓ ବ୍ରହ୍ମଚାରିଣୀଙ୍କୁ ରଗେଇ ଦେଇ ତାଙ୍କର ରୋଷଦୀପ୍ତ ମୁଖର ଅପୂର୍ବ ସୁଷମାଟିକକ ଉପଭୋଗ କରିବା ମଧ୍ୟ ଥିଲା ପ୍ରେମିକ ସନ୍ନ୍ୟାସୀଙ୍କର ଅଭିଳାଷ । କୁମାରସମ୍ଭବର ପଞ୍ଚମ ସର୍ଗର ଶେଷଭାଗ ଛଦ୍ମ ବ୍ରହ୍ମଚାରୀ ଓ ତପସ୍ୱିନୀ ଉମାଙ୍କର ଉକ୍ତି ପ୍ରତ୍ୟୁକ୍ତିର ସରସତା ବିଦଗ୍ଧ ପାଠକର ସର୍ବାପେକ୍ଷା ଉପଭୋଗ୍ୟ ଅଂଶ । ଏଠାରେ କିନ୍ତୁ ଶିବ ସ୍ୱରୂପରେ ଆବିର୍ଭୂତ ହୋଇ, ବରପ୍ରଦାନ କରିବାକୁ ଚାହିଁଛନ୍ତି ଓ ପାର୍ବତୀ ତାଙ୍କୁ ସ୍ୱାମୀ ରୂପେ ପାଇବାର ଅଭିଳାଷ ପ୍ରକାଶ କରିବା ସଙ୍ଗେ ସେ 'ଅସ୍ତୁ' କହି ଅନ୍ତର୍ହିତ ହୋଇ ଯାଇଛନ୍ତି । କୁମାରସମ୍ଭବର ଏହି ବିଶେଷ ଅଂଶଟିର କାବ୍ୟ-ସୌନ୍ଦର୍ଯ୍ୟ ସମ୍ପର୍କରେ କବି ଯେ ସଚେତନ ନ ଥିବେ ତା' ନୁହେଁ । ବରଂ ବର୍ଣ୍ଣନାବୈଚିତ୍ର୍ୟରେ କାଳିଦାସଙ୍କୁ ଅତିକ୍ରମ କରିଯିବାର ସାହସ ନଥିବାରୁ କେବଳ ଅନୁସରଣ ମାତ୍ର ସାର ହେବ ମନେକରି ଏହା ପରିତ୍ୟାଗ କରିଛନ୍ତି ବୋଲି ମନେହୁଏ ।

ପଞ୍ଚଦଶ/ଷୋଡ଼ଶ ଛାନ୍ଦ ପ୍ରଭୃତିରେ ଶିବଙ୍କର ବିରହ ଯନ୍ତ୍ରଣା ଓ ସ୍ୱପ୍ନ ବିଭ୍ରମ ଆଦି ବର୍ଣ୍ଣନାରେ କବିଙ୍କର ମୌଳିକ କଳ୍ପନାର ବିମଳ ପ୍ରକାଶ ଘଟିଛି । ଶିବଙ୍କର ବିବାହ ଯାତ୍ରାରେ ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର, ଗନ୍ଧର୍ବ, କିନ୍ନର, ପ୍ରେତ ପିଶାଚଗଣଙ୍କ ସହ ମର୍ତ୍ତ୍ୟର ବିଭିନ୍ନ ରାଜବଂଶୀମାନେ ମଧ୍ୟ ଯୋଗ ଦେଇଛନ୍ତି । ବରଯାତ୍ରୀ ଦଳରେ କଳିଙ୍ଗପାଳ ଓ ଗଙ୍ଗବଂଶୀୟ କ୍ଷତ୍ରୀ ପୁରୁଷମାନେ ଯୋଗଦାନ କରିବା ବର୍ଣ୍ଣନାରୁ କବିଙ୍କର ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ଶିବବିବାହ ସମ୍ପୂର୍ଣ୍ଣ ଓଡ଼ିଶୀ ପଦ୍ଧତିରେ ଅନୁଷ୍ଠିତ ହୋଇଛି । ବରଯାତ୍ରୀ ଚର୍ଚ୍ଚା ପାଇଁ ହିମବାନ୍ତ ଯେଉଁ ଖାଦ୍ୟ ସମ୍ଭାର ଆୟୋଜନ କରିଛନ୍ତି ତାହା ମଧ୍ୟ ଓଡ଼ିଶୀ ପାକପ୍ରଣାଳୀରେ ପ୍ରସ୍ତୁତ ।

ପାର୍ବତୀଙ୍କର ମଧୁଶଯ୍ୟା ବେଶ ବର୍ଣ୍ଣନା କବି ନିପୁଣ ଭାବରେ କରିଛନ୍ତି । ନାୟକ ନାୟିକା ଜଗତ୍‌ପିତା ଓ ଜଗଜ୍ଜନନୀ ହୋଇଥିବାରୁ ସେମାନଙ୍କର ସମ୍ଭୋଗ ବର୍ଣ୍ଣନା ଅସମୀଚୀନ ମନେକରି କବି ପରିହାର କରିଛନ୍ତି । କିନ୍ତୁ କେଳିମନ୍ଦିରରୁ ପ୍ରତ୍ୟାବର୍ତ୍ତନ କରୁଥିବା ଅମ୍ବିକାଙ୍କର ପରିହିତ ବସ୍ତ୍ରର ବିପର୍ଯ୍ୟସ୍ତ ଅବସ୍ଥା ଓ କ୍ଲାନ୍ତ ଶରୀରରେ ସମ୍ଭୋଗ ଚିହ୍ନର ବିସ୍ତୃତ ବ୍ୟାଖ୍ୟା ପ୍ରତ୍ୟକ୍ଷ ଶୃଙ୍ଗାର ବର୍ଣ୍ଣନା ଅପେକ୍ଷା କୌଣସି ପ୍ରକାରେ ନ୍ୟୂନ ନୁହେଁ । ଏହା ମଧ୍ୟ କୁମାରସମ୍ଭବର ଅଷ୍ଟମ ସର୍ଗ ପ୍ରଭାବ ହୋଇପାରେ । ତେଣୁ ଜଗତର ମାତୃ ପିତୃ ମିଳନ ବର୍ଣ୍ଣନାରେ ବ୍ରଜନାଥ ସେହି ଶୃଙ୍ଗାରୀ ପରମ୍ପରାକୁ ନିଃସଙ୍କୋଚରେ ସ୍ୱୀକାର କରିଛନ୍ତି ।

ରୀତିକାବ୍ୟଗୁଡ଼ିକରେ ପ୍ରକୃତି ଏକ ଆନୁଷଙ୍ଗିକ ବିଭାବ ଭାବରେ ଗୃହୀତ ହୋଇଥିଲା । ନାୟକ ନାୟିକାର ବିରହ ଓ ମିଳନର ପୃଷ୍ଠଭୂମି ରୂପେ ପ୍ରକୃତି ବର୍ଣ୍ଣନାକୁ ସ୍ୱୀକୃତି ମିଳିଥିଲା । ପ୍ରାୟ ସମସ୍ତ ଭଞ୍ଜୀୟ କାବ୍ୟମାନଙ୍କରେ ନାୟକ ନାୟିକାଙ୍କ ମିଳନର ଏକବର୍ଷ ପରେ ବିଚ୍ଛେଦର ଆୟୋଜନ କରାଯାଇ ସେହି ସୁଯୋଗରେ ବିରହୀ ବା ବିରହିଣୀର ଅନୁଭବରେ କବି ଷଡ଼ଋତୁର ଆବର୍ତ୍ତନ ଲକ୍ଷ୍ୟ କରୁଥିଲେ । ଏହି କାବ୍ୟଟିରେ ଶରତ, ଶିଶିର, ହେମନ୍ତ ଓ ବସନ୍ତ ପ୍ରଭୃତି ଋତୁକାଳୀନ ପ୍ରକୃତିର ରମଣୀୟ ସୌନ୍ଦର୍ଯ୍ୟ କବି ଲେଖନୀରେ ଯଥାବିଧି ସ୍ଥାନ ଲାଭ କରିଛି । ଏ ସମସ୍ତ ବର୍ଣ୍ଣନା ମିଳନ ରସରେ ରଞ୍ଜିତ । ଶିବ ପାର୍ବତୀଙ୍କର ଅନ୍ତସ୍ଥାନ ଦିବ୍ୟ ମିଳନ ପରେ ବିରହର ପ୍ରଶ୍ନ ନାହିଁ । ସନ୍ତାନ କାମନା ଯେଉଁ ମିଳନର ଲକ୍ଷ୍ୟ ସେଠାରେ ଅନ୍ୟ ପର୍ଯ୍ୟାୟ ଗୌଣ । ତେଣୁ କବିଙ୍କର ଋତୁ ବର୍ଣ୍ଣନା ଶିବ-ଶିବାଙ୍କର ସମ୍ଭୋଗ ଶୃଙ୍ଗାରର ପୃଷ୍ଠପଟ ରୂପେ ହିଁ ଚର୍ଚ୍ଚିତ ହୋଇଛି ।

ରାମାୟଣ, ମହାଭାରତ, ଶିବପୁରାଣ ଓ କୁମାରସଂଭବ ପ୍ରଭୃତିରେ କୁମାର ଶିବପୁତ୍ର, ଅଗ୍ନିପୁତ୍ର, ଗଙ୍ଗା ଓ ଷଟ୍‌କୃତ୍ତିକାଙ୍କ ପୁତ୍ରରୂପେ ବର୍ଣ୍ଣିତ ହୋଇଛନ୍ତି । କବି କାଳିଦାସ ଚନ୍ଦ୍ରଚୂଡ଼ ଶିବଙ୍କ ମୁଖରେ ଏହି କୁମାରଙ୍କ ଜନ୍ମ ବୃତ୍ତାନ୍ତ ଏବଂ ପାର୍ବତୀଙ୍କର କୁମାର ମାତୃତ୍ୱ ବିଷୟରେ ସ୍ପଷ୍ଟ ସମାଧାନ ପ୍ରଦାନ କରିଛନ୍ତି । ସଦ୍ୟଜାତ କୁମାରଙ୍କ ଜନ୍ମଦାତା ରୂପେ ଦାବୀ କରି ଅଗ୍ନି, ସ୍ୱର୍ଗଗଙ୍ଗା ଓ ଷଟ୍‌କୃତ୍ତିକା ପରସ୍ପର ସହ କଳହ କରୁଥିବା ଦୃଶ୍ୟ ଦେବୀ ଶୂନ୍ୟରେ ବିମାନରେ ବସି ଯାଉଥିବା ବେଳେ ଦେଖିବାକୁ ପାଇଲେ ଓ ତାହାର କାରଣ ଜାଣିବାକୁ ଚାହିଁବାରୁ, ଶିବ କହିଲେ—

ଅତଃ ଶୃଣୁଷ୍ୱାବହିତେନ ବୃତ୍ତଂ ବାଳଂ
ଯଦଗ୍ନୌ ନିହିତଂ ମୟା ତତ୍

ସଂକ୍ରାନ୍ତମନ୍ତର୍ଦ୍ଦିଶାପଗ୍ନାସ୍ତାଂ
ତତୋଽବଗାହେ ସତି କୃତ୍ତିକାସୁ ॥
ଗର୍ଭତ୍ୱମାପ୍ତଂ ତଦମୋଘମେତତ୍
ତାଭିଃ ଶରସ୍ତମ୍ବମଧିନ୍ୟଧାୟି
ବଭୂବ ତସ୍ମାଦୟମଦ୍ଭୁତପୂର୍ବୋ
ମହୋତ୍ସବୋଽଶେଷଚରାଚରସ୍ୟ ॥
ଅଶେଷ ବିଶ୍ୱ ପ୍ରିୟଦର୍ଶନେନ ଧୁର୍ଯ୍ୟା
ତ୍ୱମେତେନ ସୁପୁତ୍ରିଣୀନାମ୍
ଅଲଂ ବିଲମ୍ବ୍ୟାଚଳ ରାଜପୁତ୍ରି !
ସ୍ୱ ପୁତ୍ରମୁତ୍ସଙ୍ଗତଲେ ନିଧେହି ॥ ୩ ॥
(କୁମାରସମ୍ଭବମ୍—୧୧/୧୨,୧୩,୧୪)

ଅର୍ଥାତ୍ ତୁମେ ଅବହିତ ଚିତ୍ତରେ ଏହାର ବୃତ୍ତାନ୍ତ ଶ୍ରବଣ କର । "ମୁଁ ଅଗ୍ନିରେ ଯେଉଁ ଅମୋଘ ବୀଜ ନିହିତ କରିଥିଲି, ଅଗ୍ନି କର୍ତ୍ତୃକ ତାହା ସୁରଧୁନୀରେ ସଂକ୍ରମିତ ହୋଇଥିଲା । ପରେ ଷଟ୍‌କୃତ୍ତିକା ଏହି ଭଗୀରଥୀରେ ଅବଗାହନ କରିବାବେଳେ ଏହି ଅମୋଘବୀଜ ସେମାନଙ୍କର ଗର୍ଭରେ ପ୍ରବିଷ୍ଟହୋଇ ଗର୍ଭଭାବ ପ୍ରାପ୍ତ ହେଲା । ତଦନ୍ତରେ ସେମାନେ ସରବଣରେ ଏହି ଗର୍ଭ ନିକ୍ଷେପ କଲେ । ପରେ ସେହି ଗର୍ଭରୁ ଚରାଚର ଜଗତର ମହୋତ୍ସବ ସ୍ୱରୂପ ଏହି ଅଦ୍ଭୁତପୂର୍ବ ସନ୍ତାନ ଉତ୍ପନ୍ନ ହୋଇଛି । ହେ ନଗେନ୍ଦ୍ରନନ୍ଦିନ ! ଅଖିଳ ବିଶ୍ୱର ପ୍ରିୟଦର୍ଶନ ଏହି ପୁତ୍ର ଦ୍ୱାରା ତୁମେ ସୁପୁତ୍ରବତୀଙ୍କ ମଧ୍ୟରେ ଅଗ୍ରଗଣ୍ୟା ହୋଇଅଛ । ଅତଏବ ଆଉ ବିଳମ୍ବ କରନାହିଁ, ଶୀଘ୍ର ପୁତ୍ରକୁ ନିଜର କ୍ରୋଡ଼ଦେଶରେ ଗ୍ରହଣ କର ।"

ଉପରୋକ୍ତ ବର୍ଣ୍ଣନାରୁ ସ୍ପଷ୍ଟ ଯେ କାର୍ତ୍ତିକଙ୍କର ପିତୃତ୍ୱର ଏକକ ଅଧିକାରୀ ଶିବ, ମାତୃତ୍ୱ ପାର୍ବତୀଙ୍କଠାରେ ଆରୋପିତ । ବ୍ରଜନାଥ ପ୍ରଥମଥର ପାଇଁ କୁମାର ଜନ୍ମ ସ୍ୱାଭାବିକ ରୀତିରେ କରିଛନ୍ତି । ପାର୍ବତୀ ଦଶମାସ ଗର୍ଭଧାରଣ କରି ଅଶେଷ ବିଶ୍ୱ ପ୍ରିୟଦର୍ଶନ ଦେବ ବାଞ୍ଛିତ ପୁତ୍ରକୁ ଜନ୍ମ ଦେଇଛନ୍ତି । ପୁତ୍ରଜନ୍ମ ସମ୍ବାଦରେ ଶିବଙ୍କର ଆନନ୍ଦ ପ୍ରକାଶ, ଜନ୍ମୋତ୍ସବ ପାଳନ, ତ୍ରିଭୁବନରୁ ଅତିଥି ବର୍ଗଙ୍କୁ ନିମନ୍ତ୍ରଣ କବି ଲେଖନୀରେ ଚମତ୍କାର ଭାବରେ ବର୍ଣ୍ଣିତ । ସମାଗତ ବ୍ରହ୍ମା, ଇନ୍ଦ୍ର ଓ ନାରଦ, ବ୍ୟାସାଦି ଋଷିବୃନ୍ଦ, ନାଗ ଓ ଅସୁରକୁଳ ଶିବଙ୍କୁ ବିଭିନ୍ନ ଭାଷାରେ ସ୍ତୁତି କରିଛନ୍ତି । ଏ ସନ୍ଦର୍ଭରେ ବିଶେଷ ଉଲ୍ଲେଖଯୋଗ୍ୟ ବିଷୟ ହେଲା ନିମନ୍ତ୍ରିତ

ଅତିଥିମାନଙ୍କ ଗହଣରେ ଉପସ୍ଥିତ ଥିବା ବଂଗଦେଶ ଓ ଉତ୍କଳଦେଶ ଶିବଙ୍କୁ ବଂଗଳା ଓ ଉତ୍କଳୀ ଭାଷାରେ ସ୍ତୁତି କରିଛନ୍ତି ।

ପୁତ୍ରଜନ୍ମୋତ୍ସବ ପାଳନ କରିବାକୁ ଯାଇ ଦେବଗଣଙ୍କ ବାଦ୍ୟସଂଗୀତ ସହଯୋଗିତାରେ ଶିବ ପ୍ରଦର୍ଶନ କରିଛନ୍ତି ଆନନ୍ଦ ତାଣ୍ଡବ । ପରବର୍ତ୍ତୀ ଗ୍ରନ୍ଥ ଗୁଡ଼ିକରେ କୁମାରଙ୍କ ନେତୃତ୍ୱରେ ଦେବଗଣ ଅସୁର ବାହିନୀ ବିରୋଧରେ ଯୁଦ୍ଧ କରିବା ଓ ଜୟଲାଭ କରିବାର ବର୍ଣ୍ଣନା ପାରମ୍ପରିକ ରୀତିରେ କରାଯାଇଛି ।

**ଶିବ ଚରିତ୍ର**—ଦିବ୍ୟସ୍ୱରୂପ ଓ ଦିବ୍ୟନାରୀ କାବ୍ୟ ସାହିତ୍ୟରେ ଅବତରଣ କରିବାବେଳେ ଅନେକଶଃ ପାର୍ଥିବ ରୂପ ଗ୍ରହଣ କରିଥାନ୍ତି । ଲୌକିକ ରୀତିରେ ବର୍ଣ୍ଣିତ କାବ୍ୟଗୁଡ଼ିକରେ ଉପଯୁକ୍ତ ନାୟକନାୟିକାଙ୍କଠାରେ ଦିବ୍ୟଭାବ ଅପେକ୍ଷା ମାନବ ଭାବର ଆଧିକ୍ୟ ସର୍ବଦା ପରିଲକ୍ଷିତ ହୁଏ । ଏହି କାବ୍ୟର ନାୟକ ସ୍ୱୟଂ ଦେବାଧିଦେବ ଯୋଗେଶ୍ୱର ଶିବ । ଧର୍ମ, ଦର୍ଶନ ଓ ଆଗମାଦି ତାଙ୍କର ଯୋଗୀରୂପଟି ନେଇ ସନ୍ତୁଷ୍ଟ ହେବାବେଳେ, ତାଙ୍କୁ ସୁଖଦୁଃଖରେ ଜଡ଼ିତ ଏକ ନିଚ୍ଛକ ମଣିଷ ରୂପରେ ପାଇଲେ କାବ୍ୟକାରର ଆତ୍ମତୃପ୍ତି ଘଟେ । ତେଣୁ ଅମ୍ବିକା ବିଳାସର ନାୟକ-ଶିବଙ୍କଠାରେ ଦିବ୍ୟାପେକ୍ଷା ମାନବୀକ ଭାବର ବିପୁଳ ଓ ବିମଳ ପ୍ରକାଶ ଘଟିଛି । ସେ ପତ୍ନୀ ପ୍ରେମରେ ବିହ୍ୱଳ, ପତ୍ନୀର ଆକସ୍ମିକ ମୃତ୍ୟୁର କାରଣରେ କ୍ରୁଦ୍ଧ, ଶୋକାକୁଳ; ଯେ 'ମନାତୀତ' ତାଙ୍କୁ ମଧ୍ୟ ମନର ସ୍ଥିରତା ନିମନ୍ତେ ଧ୍ୟାନରତ ହେବାକୁ ପଡ଼ିଛି । ସେହି ଧ୍ୟାନୀ ପୁଣି ସେବାରତା ଅମ୍ବିକାଙ୍କୁ ଦେଖି ତାଙ୍କୁ ପତ୍ନୀ ଭାବରେ ପାଇବାର ଦୃଢ଼ କାମନା ପୋଷଣ କରିଛନ୍ତି; ବିଚ୍ଛେଦରେ ସାଧାରଣ ପ୍ରେମିକସୁଲଭ ବ୍ୟାକୁଳତା ତାଙ୍କ-ଠାରେ ପ୍ରକାଶ ପାଇଛି, ଯୋଗାରୂଢ଼ ପୁରୁଷଙ୍କର ଘଟିଛି ସ୍ୱପ୍ନ ବିଭ୍ରମ, ସ୍ତ୍ରୀର ମାନଭଞ୍ଜନ ଲାଗି ଏକାନ୍ତ ଅନୁଗତ ସ୍ୱାମୀ କରିଛନ୍ତି ଅକୁଣ୍ଠ ବିନୟବାଦ ଗୃହୀ; ପୁଣି ପିତୃତ୍ୱର ଗୌରବାନନ୍ଦରେ ଉପସ୍ଥିତ ଅତିଥିବର୍ଗଙ୍କ ସମ୍ମୁଖରେ ସ୍ୱୟଂ ନୃତ୍ୟ ପ୍ରଦର୍ଶନ କରି ସେମାନଙ୍କର ଆନନ୍ଦ ବିଧାନ କରିଛନ୍ତି । ଏହି କାବ୍ୟଟିରେ ଶିବ ଚରିତ୍ରର ବିବିଧ ଦିଗ ପରିସ୍ଫୁଟ; ବିଶେଷତଃ ଶିବ ଏଠାରେ ଏକନିଷ୍ଠ ପ୍ରେମିକ, ଅନୁଗତ ସ୍ୱାମୀ ଓ ଆଦର୍ଶ ପିତା ଭାବରେ ପ୍ରତିଷ୍ଠିତ ।

କାବ୍ୟର ପ୍ରଥମ ଗ୍ରନ୍ଥରେ ଦକ୍ଷ, ପିତା ବ୍ରହ୍ମାଙ୍କଠାରୁ ନିଜ କନ୍ୟା ସତୀଙ୍କ ସହିତ ଶିବଙ୍କର ବିବାହ ପ୍ରସ୍ତାବ ଶୁଣି ଆପତ୍ତି କରିଛନ୍ତି । ଶିବଙ୍କର ବେଶଭୂଷା, ଆଚରଣ ଦେଖି ଜଣେ ଜ୍ଞାନହୀନ ଅବିବେକୀ ବ୍ୟକ୍ତି ଯାହା ଧାରଣା କରିବ ଦକ୍ଷ ତାହାଠାରୁ ଅଧିକ କିଛି ଚିନ୍ତା କରିପାରି ନାହାନ୍ତି । ପିତା ବ୍ରହ୍ମାଙ୍କ ନିକଟରେ

ଶିବଙ୍କ ପ୍ରତି ତାଙ୍କର ମନୋଭାବ ପ୍ରକାଶ କରିବା ସୂତ୍ରରେ ଶିବଙ୍କ ଜୀବନ-ଧାରାର ସମ୍ୟକ ପରିଚୟ ଦେଇଛନ୍ତି—

ଅକୁଳୀନ ସେତ ଜାତି କିଛି ଗୁଣ ନାହିଁ
ଅସ୍ଥି ମାଳା ଗୁଡ଼ାଏ ଗଳାରେ ଥାଏ ବାନ୍ଧି ଯେ ।
ଅଂଶୁକ ନ ଥିଲେ ଦେହେ ଲାଜ ନାହିଁ ଯାର
ଅଚଳ ଗୁମ୍ଫାରେ ଥାଇ ନାହିଁ ତାର ଘର ଯେ ।
ଅହିଗଣ ଅଟନ୍ତି ତାହାର ଅଳଙ୍କାର
ଅର୍ଦ୍ଧରାତ୍ରେ ଶ୍ମଶାନରେ କରଇ ବିହାର ଯେ । (୧/୩୭-୩୯)

ଏଥିପାଇଁ ଏପରି ସ୍ୱଭାବ ଚରିତ୍ରର ବ୍ୟକ୍ତିକୁ କନ୍ୟା ଦେବା ଅପେକ୍ଷା ସମୁଦ୍ରରେ ପକାଇ ଦେବା ଭଲ ବୋଲି ଦକ୍ଷ ମନେ କରିଛନ୍ତି । କିନ୍ତୁ ବ୍ରହ୍ମାଙ୍କ ନିର୍ଦ୍ଦେଶକୁ ଅବଜ୍ଞା କରିନପାରି ଶିବଙ୍କୁ କନ୍ୟାଦାନ କରିଥିଲେ ମଧ୍ୟ ତାଙ୍କ ପ୍ରତି ଦକ୍ଷଙ୍କର ଅସୂୟା ବହ୍ନିର କୌଣସି ସମୟରେ ଊଣା ହୋଇନାହିଁ ।

ସତୀଙ୍କ ସହ ବିବାହ ପରେ ଶିବଙ୍କର ପ୍ରଣୟବିଳସିତ ଜୀବନଧାରା ଲକ୍ଷ୍ୟ କଲେ ତାଙ୍କୁ ଧ୍ୟାନୀ, ପୁରାଣପୁରୁଷ ବୋଲି ବିଶ୍ୱାସ କରିହୁଏ ନାହିଁ । ପତ୍ନୀର ରୂପମୁଗ୍ଧ ଶିବ ବହୁବିଧ ପ୍ରକାରେ ସ୍ତ୍ରୀର ସୌନ୍ଦର୍ଯ୍ୟ ପରିଚର୍ଯ୍ୟାରେ ସମୟ ଅତିବାହିତ କରିଚନ୍ତି । ଏପରିକି ପ୍ରୀତିମୁଗ୍ଧ ଶିବ ନିଜେ କହିଛନ୍ତି—

ଅଙ୍ଗନା ତୋ ବାଜଣା ବୀଣା ହୁଅନ୍ତି
ଅବା ଅତନୁ-ଶାସ୍ତ୍ର-ପଠନ ପୋଥି ଯେ । (୨ୟ ଛାନ୍ଦ, ୨୫ ପଦ)

ସେଇ ପ୍ରିୟତମା ପତ୍ନୀର ଦକ୍ଷ ଯାଗଶାଳରେ ମୃତ୍ୟୁ ଘଟିଥିବା ସମ୍ବାଦ ଶୁଣିବା ପରେ ଶିବଙ୍କର କ୍ରୋଧ ସହଜରେ ଅନୁମେୟ । ଜ୍ୱଳନ୍ତ ଅନଳରେ ଘୃତସେକ ପରି ପ୍ରଚଣ୍ଡ କୋପରେ ଜଳିଉଠିଲେ କାଳାନ୍ତକ, ନାସାରୁ ନିର୍ଗତ ହେଲା ଅଣିରୁଣ ବାୟୁ, ଆଖିରୁ ସୃଷ୍ଟି ହେଲା ଅଗ୍ନି କଣିକା—ତାଙ୍କର ଏପ୍ରକାର ସଂହାର ମୂର୍ତ୍ତି ଦେଖି ଭୟରେ ଅନୁଚରଗଣ ସେ ସ୍ଥାନ ପରିତ୍ୟାଗ କରି ପଳାୟନ କଲେ । ରୁଦ୍ରଙ୍କର ପ୍ରଳୟଙ୍କର କ୍ରୋଧରୁ ସୃଷ୍ଟି ହେଲେ ବୀରଭଦ୍ର ଓ ବିନ୍ଧୁ ଆୟୋଜିତ ଦକ୍ଷଯାଗ ଧ୍ୱଂସବିଧ୍ୱଂସ କରିଦେଲେ ଓ ସତୀମୃତ୍ୟୁର କାରଣ ସ୍ୱରୂପ ଦକ୍ଷଙ୍କୁ ମଧ୍ୟ ନିଧନ କଲେ । ପରେ ଦୟାର୍ଦ୍ର ଶିବ ଦକ୍ଷଙ୍କୁ ଜୀବଦାନ ଦେବାର ପ୍ରସଙ୍ଗ କବି ଉଲ୍ଲେଖ କରି ନାହାନ୍ତି । ବରଂ ଛାନ୍ଦ ବ୍ୟାପି ଶିବଙ୍କର ଅନୁଚିନ୍ତା, ବ୍ୟାକୁଳତା ଓ ବିଳାପର ଦୀର୍ଘ ବର୍ଣ୍ଣନା ପ୍ରଦାନ କରିଚନ୍ତି ।

ବୈଦେହୀଶ ବିଳାସ କାବ୍ୟରେ ସୀତା ରାବଣ ଦ୍ୱାରା ଅପହୃତା ହେବା-ପରେ ରାମଚନ୍ଦ୍ର ତାଙ୍କୁ ବ୍ୟଥିତ ହୃଦୟରେ ଅନୁସନ୍ଧାନ କରୁ କରୁ ବାରମ୍ବାର କାମପୀଡ଼ା ଅନୁଭବ କରିଛନ୍ତି । ସମ୍ଭୋଗର ଅଭାବ ଜନିତ ବ୍ୟଥା ରାମଙ୍କୁ ଅନ୍ୟ କାରଣ ଅପେକ୍ଷା ଅଧିକ ବିବ୍ରତ କରିଥିବା ପରି ମନେହୁଏ । ଭଞ୍ଜାନୁସାରୀ କବି ବ୍ରଜନାଥ ମଧ୍ୟ ପତ୍ନୀଶୋକରେ ଶିବଙ୍କୁ କାମତାପିତ କରାଇଛନ୍ତି । ପୁଷ୍ପଧନୁର ପ୍ରହାର ତାଙ୍କୁ ବିଚଳିତ କରୁଥିବାରୁ ଜାଣି ଅଶାନ୍ତମନକୁ ଶାନ୍ତ ଓ ସ୍ଥିର କରିବା ଉଦ୍ଦେଶ୍ୟରେ ସ୍ୱୟଂ ଈଶ୍ୱର ହିମାଳୟର ତୁଷାରାବୃତ ଗିରିଶୃଙ୍ଗକୁ ଯାଇ ଯୋଗାସନରେ ଧ୍ୟାନମଗ୍ନ ହୋଇଛନ୍ତି ।

ଇତ୍ୟବସରରେ ସତୀ ହିମବନ୍ତଙ୍କର କନ୍ୟା ଅମ୍ବିକା ରୂପରେ ଜନ୍ମଗ୍ରହଣ କଲେ । ବାଲ୍ୟ, କୈଶୋର ଅତିକ୍ରମ କରି ନବଯୌବନରେ ପାଦଦେଇ ଅମ୍ବିକା ହିମାଳୟର ସ୍ଥାନ ବିଶେଷରେ ଧ୍ୟାନରତ ଶିବଙ୍କୁ ସ୍ୱପିତାଙ୍କ ଆଜ୍ଞାନରେ ପରିଚର୍ଯ୍ୟା କରିବାକୁ ଲାଗିଲେ । ବ୍ରହ୍ମାନନ୍ଦରେ ନିର୍ଜିତ ସ୍ଥାଣୁ ଧ୍ୟାନସ୍ଥ ଥିବାବେଳେ ଅମ୍ବିକା ସଯତ୍ନରେ କୁଶ, ସମିଧ, ଜଳ, ପୁଷ୍ପ ଓ ଚନ୍ଦନାଦି ପୂଜାର ଉପକରଣମାନ ଆୟୋଜନ କରି ଫେରି ଯାଉଥିଲେ । ସେହି ସେବାକାରିଣୀଟି 'ଅନଳ ଅବା ସେ କିବା ତଡ଼ିତ' ଏପରି ଭ୍ରମରେ ପଡ଼ି ଶିବ ସାବଧାନତା ପୂର୍ବକ ଲକ୍ଷ୍ୟ ରଖି ଦିନେ ଅମ୍ବିକାଙ୍କୁ ଦେଖିବାର ସୁଯୋଗ ପାଇଲେ । ସେଇ ପ୍ରଥମ ଦୃଷ୍ଟିରେ ଶିବ ସମ୍ମୋହିତ ହୋଇଗଲେ; ସତୀଙ୍କ ସ୍ମୃତି ତାଙ୍କୁ ଆଉ ବ୍ୟଥିତ କଲାନାହିଁ ବା ଦୀର୍ଘତପଶ୍ଚରଣ ତାଙ୍କୁ କନ୍ଦର୍ପର ପ୍ରଭାବରୁ ରକ୍ଷା କରିପାରିଲା ନାହିଁ—

> ଅନ୍ତଃକରଣେ କଲେ ଏ ବାଲା
> ଅନଙ୍ଗ ସିନ୍ଧୁକୁ ହେବ ମୋ ଭେଳା ଯେ
> ଅଚଳପତି କୁମାରୀ ଏହି
> ଅବହେଲେ ସୃଷ୍ଟି ପାରଇ ମୋହି ଯେ । ୮ । (ଛାନ୍ଦ ୧/୯୩)

ଅଥଚ ମଦନର ସମ୍ମୋହନ ବାଣରେ ଧ୍ୟାନ ଭଗ୍ନ ହୋଇ କ୍ରୋଧରେ କାମକୁ ଭସ୍ମ କରିଦେଇ ସମ୍ମୁଖରେ ଦଣ୍ଡାୟମାନ ତାଙ୍କର ପରମକାମ୍ୟା ଲାବଣ୍ୟବତୀ ଅମ୍ବିକାଙ୍କ ପ୍ରତି ତିଳେମାତ୍ର ଭ୍ରୂକ୍ଷେପ ନ କରି ସେ ସ୍ଥାନ ପରିତ୍ୟାଗ ପୂର୍ବକ ଗ୍ଲାନିସିବାରେ ଶିବଙ୍କର ରହସ୍ୟମୟ ଆଚରଣ ବୁଝିହୁଏ ନାହିଁ । ଏଣେ ଉପେକ୍ଷିତା ଅମ୍ବିକାଙ୍କ ମନକୁ ଜାଗରଣ ଓ ସ୍ୱପ୍ନରେ ଆଚ୍ଛନ୍ନ କରି ରହିଲେ ଶିବ । ତପସ୍ୟା ଦ୍ୱାରା ଶିବଙ୍କୁ ପତି ରୂପେ ପାଇବାର ସଂକଳ୍ପ ନେଇ ଦେବୀ କଠିନ ସାଧନା ଆରମ୍ଭ କଲେ । ବହୁକାଳ ତପଶ୍ଚରଣ ପରେ ଇଷ୍ଟଫଳ ପ୍ରାପ୍ତ

ନ ହେବାରୁ ଦେବୀ ସ୍ୱ ଶିର ଛେଦନ କରି ଅଗ୍ନିରେ ଆହୁତି ଦେବା କଥା ବିଚାର କରିବାବେଳେ ଶିବ ଆବିର୍ଭୂତ ହେଲେ । କାଳିଦାସଙ୍କ ଶିବ ଛଦ୍ମ ବ୍ରହ୍ମଚାରୀ ବେଶରେ ଆସି ଉମାଙ୍କ ସହ ଚଟୁଳ ରସିକତା କରିନାହାନ୍ତି; ସ୍ୱରୂପରେ ପ୍ରକାଶ ହୋଇ ବର ଯାଚି ଦେଇଛନ୍ତି । କି ବର ବା ଚାହିଁବେ ଅମ୍ବିକା । ଏତେ ଦିନର ବୁକ୍ କାମନା ଲଜ୍ଜା ସଙ୍କୋଚର ବାଧା ମାନି ନାହିଁ, ସେ ସ୍ପଷ୍ଟରୂପେ ନିଜର ଇଚ୍ଛା ବ୍ୟକ୍ତ କରିଛନ୍ତି ।

କାଳିଦାସଙ୍କର ଶିବ ତପସ୍ୱିନୀ ଉମାଙ୍କ ଏକନିଷ୍ଠ ପ୍ରେମର ପରିଚୟ ପାଇ ସ୍ୱରୂପରେ ନିବେଦନ କରିଥିଲେ—

> ଅଦ୍ୟ ପ୍ରଭୃତ୍ୟବ ନ ତାଙ୍ଗି ତବାସ୍ମି ଦାସଃ
>
> କ୍ରୀତସ୍ତପୋଭିରିତିବାଦିନି ଚନ୍ଦ୍ରମୌଳୌ
>
> ଅହ୍ନାୟ ସା ନିୟମଜଂ କ୍ଲମମୁତ୍ସସର୍ଜ କ୍ଲେଶଃ
>
> ଫଳେନ ହି ପୁନର୍ନବତାଂ ବିଧତ୍ତେ ।
>
> ( କୁମାରସମ୍ଭବମ୍ ୫ମ ସର୍ଗ/୩ ପଦ)

ଆଜିଠାରୁ ମୁଁ ତୁମର ଗୁଣମୁଗ୍ଧ ଦାସ ହେଲି ବୋଲି କହିବାରେ ପ୍ରଣୟୀ ଶିବଙ୍କର କୁଣ୍ଠା ନାହିଁ । କିନ୍ତୁ ବ୍ରଜନାଥ ଶିବଙ୍କୁ ପ୍ରେମିକଙ୍କର କରିନାହାନ୍ତି, ବରଂ—

> ଅଖିଳ ସଂସାର ଲୋକମାତା
>
> ଅନୁସରି ଗୃହିଁଛନ୍ତି ଦାସୀ ଯଥା ସେ ।     (୧୪ଛାନ୍ଦ, ୧୨ ପଦ)

ଦେବୀଙ୍କର ଅଭିଳାଷ ପୂରଣ ହେବାର ଆଶୀର୍ବାଦ କରି ବରଦାତା ଅନ୍ତର୍ହିତ ହୋଇଯାଇଛନ୍ତି; କିନ୍ତୁ ଅମ୍ବିକାଙ୍କ ମୁଖଶୋଭା ଆଉ ମୁହୂର୍ତ୍ତିଟିଏ ପାଇଁ ମଧ୍ୟ ଭୁଲି ପାରିନାହାନ୍ତି । ନିଦ୍ରାରେ ଶାୟିତ ଇଶାନ ମଧ୍ୟରାତ୍ରରେ ସ୍ୱପ୍ନରେ ରୋଷ କରିଥିବା ଅଚଳଜାଙ୍କୁ ଦେଖି ତାଙ୍କର ଅଭିମାନ ଦୂର କରିବା ପାଇଁ ନାନା ଚାଟୁବାକ୍ୟ କହି ନିଜର ବିରହକାତର ଅବସ୍ଥାର ବର୍ଣ୍ଣନା କରି ଦେବୀଙ୍କର ଅନୁରାଗ ଟିକେ ଲାଭ କରିବା ପାଇଁ ବ୍ୟାକୁଳ ହୋଇ ଉଠିଛନ୍ତି । ଦେବୀଙ୍କର ସମ୍ମତି ଜାଣି ତାଙ୍କୁ ଆଲିଙ୍ଗନ କରିବା ପାଇଁ ଆଗେଇ ଆସୁଥିବାବେଳେ ନିଦ୍ରାଭଙ୍ଗ ଘଟିଛି—

> ଅନ୍ଧକାର ଦିଶିଲା ଦଶଦିଗ
>
> ଅନ୍ଧକାର କାମେ ହେଲେ ଆବେଶ ।     (୧୭ ଛାନ୍ଦ, ୧୭ ପଦ)

ନିଜ ମୌଳିକ ଚମତ୍କାର ଭାବ ତନ୍ତିକୁ ଅନୁସରଣ ନକରି ପ୍ରକାରାନ୍ତରେ ଅନୁସରଣ କରିଛନ୍ତି ।

ବିଧିବଦ୍ଧ ଭାବରେ ବିବାହ କରିବା ପାଇଁ ବରବେଶରେ ଯାଉଥିବା ଶିବଙ୍କ ସହିତ ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ର, ସୁରଗଣ, ଗନ୍ଧର୍ବ, କିନ୍ନର, ରୁଦ୍ରଗଣ, ପ୍ରେତ ଓ ପିଶାଚ ପ୍ରଭୃତି ମହା ଆଡ଼ମ୍ବରରେ ବରଯାତ୍ରୀ ହୋଇ ହିମବନ୍ତ ପୁରକୁ ଯାତ୍ରା କଲେ । ଓଡ଼ିଶୀ ସାମାଜିକ ରୀତିରେ ଶିବ ପାର୍ବତୀଙ୍କର ବିବାହୋତ୍ସବ ଅନୁଷ୍ଠିତ ହୋଇଛି । ମଧୁଶଯ୍ୟା ଗୃହରୁ ପ୍ରତ୍ୟାବର୍ତ୍ତନ କରୁଥିବା ପାର୍ବତୀଙ୍କ କ୍ଲାନ୍ତ ଶରୀର, ଶ୍ଳଥ ବସନ ଓ ସଖୀମାନଙ୍କର ହାସ ପରିହାସ ମଧ୍ୟରେ ଶିବଙ୍କର କାମଯୋଗୀ ସ୍ୱରୂପଟିର ଯଥାଯଥ ଅବତାରଣା ଘଟିଛି । କୈଳାସ ପୁରକୁ ବାହୁଡ଼ା ବିଜୟ କରିବା ପରେ ଦୀର୍ଘତପଶ୍ଚରଣରତ ଯୋଗୀ ଦାମ୍ପତ୍ୟ ଜୀବନର ମଧୁ ଆସ୍ୱାଦନ କରି ଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ । ବର୍ଷାପ୍ରକୃତିର ଶୃଙ୍ଗାରୋଦ୍ଦୀପକ ପରିବେଶରେ ପତ୍ନୀଠାରୁ କ୍ଷଣେମାତ୍ର ଅନ୍ତର ନ ହୋଇ ଶିବ ନ୍ୟାୟବଳ ଖେଳ ଓ ଆନନ୍ଦରେ ବର୍ଷା ଉପଭୋଗ କରିଛନ୍ତି । ଦିନେ ଅନଙ୍ଗ ବିଳାସରେ ମଜ୍ଜିଥିବା କାଳରେ ଦେବୀଙ୍କର ଦୃଷ୍ଟି ସ୍ୱାମୀଙ୍କର ଜଟାକଳାପରେ ଥିବା ସୁରନଦୀଙ୍କ ଉପରେ ପଡ଼ିବାରୁ ସେ ସାପତ୍ନ୍ୟାଭିମାନରେ କ୍ରନ୍ଦନ କରିବାକୁ ଲାଗିଲେ । ଶିବଙ୍କର ସ୍ତୁତିବାକ୍ୟର ଅନ୍ତ ନାହିଁ । ନିଜକୁ ଅମ୍ବିକାଙ୍କର ଦାସ, କିଙ୍କର ବୋଲି ବାରମ୍ବାର କହି ତାଙ୍କୁ ମାନ ତ୍ୟାଗ କରିବା ପାଇଁ ଅନୁରୋଧ କରିଛନ୍ତି । ଯେଉଁ ମହେଶ୍ୱରଙ୍କୁ ପତିରୂପେ ପାଇବାଲାଗି ଦେବୀ ଅମ୍ବିକା ଅନେକ ବର୍ଷ କଠିନ ତପସ୍ୟା କରିଥିଲେ ସେହି ପୁଣି ଦେବୀଙ୍କ ପ୍ରେମରେ ଦାସତ୍ୱ ସ୍ୱୀକାର କରି ମାନଭଞ୍ଜନ ଲାଗି ଆକୁଳ ମିନତି ଜଣାଇଛନ୍ତି ।

କ୍ରମେ ନବଦମ୍ପତି ପରସ୍ପରର ନିବିଡ଼ ସାନ୍ନିଧ୍ୟରେ ଶରତ, ହେମନ୍ତ, ଶିଶିର ଓ ବସନ୍ତଋତୁ ଅତିବାହିତ କରିଛନ୍ତି । ସେମାନଙ୍କ ମିଳନ ବୈଷ୍ଣବ ବା କାଳ୍ପନିକ କାବ୍ୟର ନାୟକ ନାୟିକାଙ୍କ ଦୈହିକ ସୁଖଲାଳସାର ପରିତୃପ୍ତି ପାଇଁ ନୁହେଁ । ଜଗତ୍ପିତା ଓ ଜଗଜ୍ଜନନୀଙ୍କ ମିଳନ ଜଗତର ଶାଶ୍ୱତ କଲ୍ୟାଣ ବିଧାନ ନିମନ୍ତେ ଅଭିପ୍ରେତ । ଦେବବାଞ୍ଛିତ ଦିବ୍ୟ ମୁହୂର୍ତ୍ତ ଉପଗତ ହୋଇଛି । ଅମ୍ବିକା ଦଶମାସ ଗର୍ଭଧାରଣ କରି ଶିବପୁତ୍ର କୁମାରଙ୍କୁ ଜନ୍ମ ଦେଇଛନ୍ତି । ତାରକାସୁରର ଅତ୍ୟାଚାରରୁ ଦେବଲୋକକୁ ରକ୍ଷା କରିବାର ସାମର୍ଥ୍ୟ ରହିଛି କେବଳ ତ୍ରିପୁରାରିଙ୍କ ପୁତ୍ର ବାହୁରେ । ପୁତ୍ର ଜନ୍ମ ସମ୍ବାଦରେ ସାଧାରଣ ପିତା ପରି ଆନନ୍ଦୋଲ୍ଲାସରେ ମାତି ଉଠିଛନ୍ତି ସଦାଶିବ ।

ମୁକ୍ତହସ୍ତରେ ଅଶ୍ୱ, ଗଜ, ଧନ, ରତ୍ନ ଓ ଅନ୍ନ ବିତରଣ କରିଛନ୍ତି । ପ୍ରଥମ ପିତୃତ୍ୱର ଗୌରବରେ ଗୌରବାନ୍ୱିତ ଶଙ୍କର । ଏତିକରେ ସନ୍ତୋଷ ହୋଇ-ପାରିନାହାନ୍ତି । ତିନିଭୁବନରୁ ଦେବ, ଋଷି, ଅସୁର, ଗନ୍ଧର୍ବ, ନାଗ ଓ ନର ପ୍ରଭୃତିଙ୍କୁ ସାଦର ନିମନ୍ତ୍ରଣ ପଠାଇଛନ୍ତି ପୁତ୍ର ଜନ୍ମୋତ୍ସବରେ ଯୋଗଦେବା ନିମନ୍ତେ । ତା' ସହିତ ରହିଛି ଏକ ବିଶେଷ ନିର୍ଦ୍ଦେଶ । ଅତିଥିମାନେ ଆସିବା ସମୟରେ ନିଜ ନିଜର ବାଦ୍ୟଯନ୍ତ୍ର ସମୂହ ନେଇ ଆସିବାକୁ ଯେପରି ନ ଭୁଲନ୍ତି । ଶିବଙ୍କର ଉଦ୍ଦେଶ୍ୟ ଏକ ବିଶେଷ ରୀତିରେ ସେ ପାଳନ କରିବେ ପୁତ୍ରଜନ୍ମୋତ୍ସବ । ସ୍ୱୟଂ ନଟରାଜ ଦେବ ଦୁର୍ଲଭ ତାଣ୍ଡବ ନୃତ୍ୟ ନିମନ୍ତ୍ରିତ ସର୍ବସମ୍ମୁଖରେ ପ୍ରଦର୍ଶନ କରିବେ । ପୁରାଣ ଶାସ୍ତ୍ରମାନଙ୍କରେ ଶିବତାଣ୍ଡବର ବହୁ ଘଟଣା ବର୍ଣ୍ଣିତ ହୋଇଥିଲେ ମଧ୍ୟ କୁମାର ଜନ୍ମରେ ଆନନ୍ଦିତ ପିତାର ନୃତ୍ୟ ପରିବେଷଣ କଥା କୌଣସି ସ୍ଥାନରେ ଉଲ୍ଲେଖ ନାହିଁ । ତେଣୁ ବ୍ରଜନାଥଙ୍କ ରଚନାରେ ଶିବ ଚରିତ୍ରର ଏହି ଲୋକାତୀତ୍ରାନ୍ତ ପିତୃସ୍ୱରୂପଟି ଅତ୍ୟନ୍ତ ଅଭିନବ ଓ ହୃଦୟଗ୍ରାହୀ ରୀତିରେ ଉଦ୍‌ଘାଟିତ ହୋଇଛି ।

କାଳିଦାସଙ୍କର କୁମାରସମ୍ଭବ, ଅମ୍ବିକା ବିଳାସ ରଚନାରେ ସ୍ଥୂଳ ଆଦର୍ଶ ହୋଇଥିବା ନିଃସନ୍ଦେହ, ମାତ୍ର କବି ବ୍ରଜନାଥ ନିଜ କାବ୍ୟରେ ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । କୁମାରସମ୍ଭବରେ ପରିବେଶ ମୁଖ୍ୟତଃ ଲୋକୋତ୍ତର ଏବଂ ଦେବ-ସମାଜନିଷ୍ଠ, ମାତ୍ର ଅମ୍ବିକାବିଳାସରେ ପରିବେଶ ଲୋକନିଷ୍ଠ ବା ଲୋକସମାଜ-ନିଷ୍ଠ । ପାର୍ବତୀଙ୍କ ତପସ୍ୟାର ସିଦ୍ଧି ସ୍ୱରୂପ ଶିବାବିର୍ଭାବ ଏବଂ ଉଭୟଙ୍କ ସଂକ୍ଷିପ୍ତ ସଂଳାପ, ବିବାହ ଚିତ୍ର ଏବଂ ମିଳନ ବିଷୟ ଇତ୍ୟାଦି ଦୃଷ୍ଟାନ୍ତରୁ ବ୍ରଜନାଥଙ୍କ ସ୍ୱକୀୟ ବିଶ୍ୱର ପ୍ରତିପନ୍ନ ହୁଏ । ବରଂ କାବ୍ୟର ନାମକରଣ ତଥା କ୍ଷେତ୍ର ବିଶେଷରେ ବୈଦେହୀଶ ବିଳାସ ଏବଂ ଭଞ୍ଜୀୟ ଗୂଢ଼ଯୌବନ ବିଳାସର ଛାୟା ଅନୁଭବ କରିହୁଏ ।



# ମଧୁସୂଦନଙ୍କ କବିତାରେ ଜାତୀୟତାବାଦୀ ଚେତନା

ଭାରତବର୍ଷର ପ୍ରାଚୀନ ରଚନା ଋଗ୍‌ବେଦରେ ଓ ଅଥର୍ବବେଦର ପୃଥ୍ୱୀ ସୂକ୍ତରେ ବୈଦିକ ଋଷିମାନେ ଜନ୍ମଭୂମିକୁ ଚିନ୍ମୟ ସ୍ୱରୂପିଣୀ ଭାବରେ ବର୍ଣ୍ଣନା କରିଛନ୍ତି । ମାତୃଭୂମିର ସ୍ୱରୂପ ନିର୍ଣ୍ଣୟ କରି ସେମାନେ ପ୍ରକାଶ କରିଥିଲେ ଯେ ଏହା ଜଡ଼ ନୁହେଁ, ମାତୃଭୂମି ସ୍ୱୟଂ ଶ୍ରୀ ବା ଲକ୍ଷ୍ମୀ । ସେ କାମଦୁଘା, ପୟଃସ୍ୱତା, ଗନ୍ଧଯୁକ୍ତା; ପୋଷଣକାରିଣୀ ଓ ଜନନୀ । ସମ୍ମିଳିତ ଭାବରେ ଜନ୍ମଭୂମିର ସେବାରେ ଆତ୍ମନିୟୋଗ କରିବା ନିମନ୍ତେ ଏଥିରେ ପ୍ରାର୍ଥନା କରାଯାଇଛି । ଏଥିରେ ଆହୁରି ମଧ୍ୟ କୁହାଯାଇଛି, ଦେଶର ନାଗରିକମାନଙ୍କର ପରମ କର୍ତ୍ତବ୍ୟ ହେଉଛି ଜାତୀୟ ସଂହତି । ଭ୍ରାତୃତ୍ୱ ଓ ମୈତ୍ରୀ ଭାବ ମାତୃଭୂମି ଆରାଧନାର ଶ୍ରେଷ୍ଠ ଅଙ୍ଗ । ଏଣୁ ସମସ୍ତ ଭେଦ, ବୈଷମ୍ୟ ଓ ମତବାଦ ଭୁଲି ଦେଶର ଗୌରବ ରକ୍ଷା ଓ ସମୁନ୍ନତି ସାଧନାରେ ଆପଣାକୁ ସର୍ବଦା ନିୟୋଜିତ କରିବା ସମୀଚୀନ ।

ଜନ୍ମଭୂମିର ମହିମାଗାନ କରିବାର ରୀତି ପୃଥିବୀର ସବୁ ଦେଶରେ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସିଛି । ଗ୍ରୀସ୍ ଦେଶରେ ସେମାନଙ୍କର ଜାତୀୟ ବୀରମାନଙ୍କର ଜୀବନୀକୁ କେନ୍ଦ୍ର କରି ଗାଥାକବିତାମାନ ରଚିତ ହୋଇ-ଥିଲି । ତାହା ଗ୍ରୀସ୍‌ର ଜନସାଧାରଣଙ୍କ ମନରେ ଯୁଗେ ଯୁଗେ ସ୍ୱଦେଶ ପ୍ରୀତିର ଧାରା ଅବ୍ୟାହତ ରଖିଥିଲା ।

ମୁଖ୍ୟତଃ ଭାରତବର୍ଷରେ ହିଁ ମାତୃଭୂମିକୁ ସ୍ୱର୍ଗଠାରୁ ଅଧିକ ମହତ୍ତ୍ୱ ପ୍ରଦାନ କରାଯାଇଛି । ପ୍ରାଚୀନ ଋଷିଗଣ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ବ୍ୟାପ୍ତ ଭୂଖଣ୍ଡକୁ ଭାରତବର୍ଷ ନାମରେ ଅଭିହିତ କରି ଏହାକୁ ଏକ ଏକକ ସତ୍ତାରୂପେ ବିବେଚନା କରିଥିଲେ । ଏହି ବିଶାଳ ଭୂଖଣ୍ଡର ନଦନଦୀ, ବନପର୍ବତ ଓ ବିଭିନ୍ନ ସ୍ଥାନ-ମାନଙ୍କରେ ଧର୍ମୀୟ ଭାବନାକୁ ସଂଯୁକ୍ତ କରି ଦେଇଥିଲେ । ଭାରତବର୍ଷର ଉତ୍ତର ଦିଗରେ ଆକାଶକୁ ସ୍ପର୍ଶ କରି ଦଣ୍ଡାୟମାନ ହିମାଚଳକୁ ଦେବାତ୍ମା ବୋଲି

ସସମ୍ମାନ ସମ୍ବୋଧନ ଯେପରି ଜଣାଯାଇଛି ସେହିପରି ଜଗତପାବନୀ ଗଙ୍ଗା ନଦୀରେ ଦେବୀତ୍ୱର ପରିକଳ୍ପନା କରାଯାଇଛି । ଏହି ଭାରତ ଭୂଖଣ୍ଡର ବିଭିନ୍ନ ସ୍ଥାନ ପବିତ୍ର ତୀର୍ଥଭୂମି ରୂପେ ପରିଗଣିତ ହୋଇଥାଏ । ଭାରତବର୍ଷରେ ବାସ କରୁଥିବା ମଣିଷମାନଙ୍କ ଭିତରେ ବେଶପୋଷାକ, ଆଚାର ବ୍ୟବହାର, ଭାଷା, ଜାତିବର୍ଣ୍ଣ, ରୀତିନୀତି ଓ ସାମାଜିକ ବିଧି ବ୍ୟବସ୍ଥାରେ ବହୁବିଧ ପାର୍ଥକ୍ୟ ଥିଲେ ମଧ୍ୟ ଅନ୍ତର୍ଚେତନାରେ ଏମାନେ ସର୍ବଦା ଏକ । ଏକଇ ଆଧ୍ୟାତ୍ମିକ ଆତ୍ମଶ୍ରଦ୍ଧା ଏମାନଙ୍କ ହୃଦୟରେ ନିରବଚ୍ଛିନ୍ନ ଭାବରେ ପ୍ରଜ୍ୱଳିତ ଥିଲା । ମହାଭାରତ ଓ ରାମାୟଣରେ ପ୍ରତିଷ୍ଠିତ ମୂଲ୍ୟବୋଧ ପ୍ରତି ସମଗ୍ର ଭାରତବାସୀଙ୍କର ଥିଲା ଆତ୍ମିକ ଅନୁଗତ୍ୟ । ତେଣୁ ବୈଦିକ ଯୁଗ ପରବର୍ତ୍ତୀ ପୁରାଣ ସାହିତ୍ୟରେ ମଧ୍ୟ ସ୍ୱଦେଶ-ପ୍ରୀତିର ବହୁ ନିଦର୍ଶନ ମିଳିଥାଏ ।

ଇଂରେଜମାନେ ଏ ଦେଶକୁ ଆସିବା ପୂର୍ବରୁ ଅନ୍ୟ ବିଦେଶୀମାନେ ଏ ଦେଶକୁ ଶାସନ କରୁଥିଲେ । ଦୀର୍ଘ ଶତ ଶତ ବର୍ଷ ଧରି ଏ ଭୂଖଣ୍ଡ ପରାଧୀନତାର ଯନ୍ତ୍ରଣା ଭୋଗ କରିଛି । ଅଥଚ ବିଦେଶୀମାନଙ୍କ ଶାସନ ବିରୋଧରେ ଭାରତୀୟ-ମାନେ ସୁସଙ୍ଗଠିତ ହୋଇପାରି ନାହାନ୍ତି ଓ ଏହି ସମୟରେ ରଚିତ ଭାରତୀୟ ସାହିତ୍ୟରେ ସ୍ୱାଧୀନ ଭାବନା ସ୍ୱଦେଶପ୍ରାଣତା ବା ମାତୃଭୂମିର ମୁକ୍ତି ସମ୍ପର୍କିତ ରଚନାର ଘୋର ଅଭାବ ଲକ୍ଷ୍ୟ କରାଯାଏ ।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ହିଁ ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାର ଦୀର୍ଘକାଳ ସଂସ୍ପର୍ଶରେ ଆସିଥିବା ଭାରତୀୟମାନଙ୍କ ଭିତରେ ଜାତୀୟତାବାଦୀ ଚେତନାର ଉନ୍ମେଷ ଓ ବିକାଶ ସମ୍ଭବ ହୋଇଥିଲା । ଜନ୍ମଭୂମିର ମାତୃରୂପକୁ ଜନମାନସରେ ପୁନଃ ଜାଗରଣ କରିଥିଲେ ଭାରତବର୍ଷର ମନୀଷୀ ଓ କବି-ମାନେ । ଅନ୍ୟ ଏକ ଶିଖରରୁ ସ୍ୱାମୀ ବିବେକାନନ୍ଦ ଦେଶବାସୀଙ୍କ ମନରେ ଆତ୍ମ-ଶକ୍ତି ସଞ୍ଚାର କରିବା ପାଇଁ ଦୃପ୍ତ ଆହ୍ୱାନ ଦେଇ କହିଥିଲେ, "ଦୁର୍ବଳତା ପୃଥିବୀର ଏକମାତ୍ର ପାପ ଅଟେ, ତାକୁ ଦୂରକୁ ଫିଙ୍ଗିଦିଅ । ଦୁର୍ବଳତା ହିଁ ପାପ, ଦୁର୍ବଳତା ହିଁ ମୃତ୍ୟୁ । × × ସତ୍ୟର ପରୀକ୍ଷା ପାଇଁ ଏଇ ହେଉଛି ଉପାୟ । × × ଯାହା ତୁମର ଶରୀରକୁ, ବୁଦ୍ଧିକୁ ଏବଂ ଆଧ୍ୟାତ୍ମିକତାକୁ ଦୁର୍ବଳ କରେ ତାହା ସତ୍ୟ ନୁହେଁ, ତହିଁରେ ଜୀବନ ନାହିଁ; ତାକୁ ବିଷ ମନେକରି ପରିତ୍ୟାଗ କର ।"

ଶ୍ରୀ ଅରବିନ୍ଦଙ୍କର ମାତୃଭୂମି ପାଇଁ ମମତା ସଙ୍କୀର୍ଣ୍ଣ ଜାତୀୟତାବାଦ ଦ୍ୱାରା ଅନୁପ୍ରେରିତ ନ ଥିଲା । ତାଙ୍କ ପାଇଁ ଭାରତବର୍ଷ ଏକ ଭୌଗୋଳିକ ପରିଚୟ

ମାତ୍ର ନ ଥିଲା । ତାହା ଥିଲା ଏକ ଆଧ୍ୟାତ୍ମିକ ଐକ୍ୟ । ତେଣୁ ଜାତୀୟତାବାଦ ଥିଲା ତାଙ୍କ ପାଇଁ ଅଧ୍ୟାତ୍ମ ସାଧନା । ସେ କହିଥିଲେ, "Nationalism is not a mere political programme, nationalism is a religion that has come from God." ସେ ମନେ କରୁଥିଲେ ଭାରତବର୍ଷର ଭବିଷ୍ୟତ ସହ ସମଗ୍ର ମାନବ ଜାତିର ଭବିଷ୍ୟତ ଗ୍ରଥିତ ହୋଇଛି । ତେଣୁ ତାଙ୍କର ଜାତୀୟତାବାଦରେ ଏକ ଆନ୍ତର୍ଜାତିକ ଉଦ୍ଦେଶ୍ୟ ନିହିତ ଥିଲା । ସେ ବିଚାର କରୁଥିଲେ ଏ ଦେଶ କିପରି ପୃଥିବୀର ନେତୃତ୍ୱ ନେଇପାରିବ, ଯେତେବେଳେ ଏ ଦେଶରୂପିଣୀ ଭାରତ ଜନନୀ ନିଜେ ବନ୍ଦିନୀ ଅବସ୍ଥାରେ ଅଛି ।

ଜାତୀୟତାବୋଧର ଏହି ଉଦ୍‌ବୋଧନ ସାହିତ୍ୟିକ ଓ କବିମାନଙ୍କୁ ବହୁ ଭାବରେ ଅନୁପ୍ରାଣିତ କରିଥିଲା । ସମଗ୍ର ଦେଶର ବିଭିନ୍ନ ଭାଷାରେ ରଚିତ ହେଲା ସ୍ୱଦେଶପ୍ରୀତିର ଅନବଦ୍ୟ ଗଦ୍ୟ ଓ ପଦ୍ୟ ରଚନାମାନ । ବଙ୍ଗଳାର ବିଶିଷ୍ଟ କ୍ରାନ୍ତିକାରୀ ସାହିତ୍ୟଶିଳ୍ପୀ ବଙ୍କିମଚନ୍ଦ୍ରଙ୍କ ଦୀପ୍ତ ଚେତନାରେ ଉଦ୍ଭାସିତ ଜନ୍ମଭୂମିର ମାତୃରୂପକୁ ସେ କାବ୍ୟରୂପ ଦେଇ ଉଦାତ୍ତ କଣ୍ଠରେ ଗାଇଥିଲେ—

"ବନ୍ଦେ ମାତରଂ<br>
ସୁଜଳାଂ ସୁଫଳାଂ ମଳୟଜ ଶୀତଳାଂ<br>
ଶସ୍ୟ ଶ୍ୟାମଳାଂ ମାତରଂ<br>
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀ,<br>
ସୁହାସିନୀଂ, ସୁମଧୁରଭାଷିଣୀଂ<br>
ସୁଖଦାଂ, ବରଦାଂ ମାତରଂ ।"

ତାମିଲ ସାହିତ୍ୟରେ ରାମଲିଙ୍ଗ ସ୍ୱାମୀଗଲ, ସୁବ୍ରମଣ୍ୟମ୍ ଭାରତୀ, ମରାଠୀ ସାହିତ୍ୟରେ କିଷନ୍‌ଜୀ, କେଶବ ଦାମ୍‌ଲେ, ମାଲୟାଲମ୍ ସାହିତ୍ୟରେ କୁମାରନ୍ ଆଶାନ ଓ ଆସାମୀ ସାହିତ୍ୟରେ ଲକ୍ଷ୍ମୀକାନ୍ତ ବେଦବରୁଆ ପ୍ରମୁଖ ଦେଶାତ୍ମବୋଧକ କବିତା ରଚନା କରି ଦେଶବାସୀଙ୍କ ପ୍ରାଣରେ ନବଉନ୍ମାଦନା ସୃଷ୍ଟି କରିଥିଲେ ।

ଓଡ଼ିଶାରେ ମଧ୍ୟ ଏହି ନବଚେତନାର ପ୍ରକାଶ ବିଭିନ୍ନ କବିମାନଙ୍କ ସୃଷ୍ଟିରେ ପ୍ରକାଶ ପାଇଥିଲା । କବି ମଧୁସୂଦନ ରାଓଙ୍କ 'ଭାରତ ଭାବନା' ଜାତୀୟ ଭାବ ପ୍ରଖ୍ୟାପନର ଏକ ଅନବଦ୍ୟ କବିତା । କବି ଅନ୍ତର ପରାଧୀନ ଭାରତବର୍ଷର ସାଂସ୍କୃତିକ ଅବକ୍ଷୟକୁ ଲକ୍ଷ୍ୟ କରି ବ୍ୟାକୁଳ ହୋଇଉଠିଛି ।

ଏହି କି ସେ ପୁଣ୍ୟଭୂମି ଭୁବନ ବିଦିତ<br>
ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ ଗୌରବର

ଏହିକି ଭାରତ, ଯା'ର ମହିମା ସଙ୍ଗୀତ
ଗମ୍ଭୀର ଝଙ୍କାର ପୂର୍ଣ୍ଣ ଦିଗ ଦିଗନ୍ତର ?

କବି ମନେକରିଛନ୍ତି ବସୁଧାର ସମୁଜ୍ଜ୍ୱଳ ମଣି ଏ ଦେଶ । ଏହାର ଜ୍ଞାନାମୃତ ପାନକରି ଧରଣୀ କୃତାର୍ଥ ହେଉଥିଲା । ଏହି ବିଶ୍ୱବନ୍ଦନୀୟ ଭୂମିରେ କେତେ ତେଜବୀର୍ଯ୍ୟ ଓ ଗୌରବର କାହାଣୀ ଲିପିବଦ୍ଧ ହୋଇ ରହିଛି; ଯାହା ସ୍ମରଣ କଲେ ହୃଦୟ ପୁଲକିତ ହୋଇଉଠେ । ଜଗତପାବନୀ ସରସ୍ୱତୀ ନଦୀ ତଟରେ ଋଷି କଣ୍ଠରୁ ସ୍ଫୁରିଥିଲା ଈଶସ୍ତୁତି ଓ ଯେଉଁମାନଙ୍କର ଦିବ୍ୟଦୃଷ୍ଟି ମଣିଷ ଓ ଈଶ୍ୱରଙ୍କ ସମ୍ପର୍କର ରହସ୍ୟକୁ ପ୍ରଥମେ ବୁଝିଥିଲା ।

ଆର୍ଯ୍ୟକବି ଆତ୍ମାପଦ୍ମ ଯହିଁ ବିକଶିତ
ଶିଖିଲା ସମ୍ବନ୍ଧ ତା'ର ପରମାତ୍ମା ମିହିର ସହିତ ।

ସେହି ବ୍ରହ୍ମବାଦୀ ଋଷିଗଣଙ୍କର ତପସ୍ୟା, ଧ୍ୟାନ ଓ ସାଧନା ଭାରତ ଭୂମିକୁ ପୂତ ପବିତ୍ର କରିଥିଲା । ମହିୟସୀ ନାରୀମାନଙ୍କର ଆର୍ଯ୍ୟ ସଂସ୍କୃତିର ବିକାଶ ସାଧନ ଦିଗରେ ରହିଥିଲା ମହତ୍ତ୍ୱ ଅବଦାନ ।

ରାମଚନ୍ଦ୍ରଙ୍କର ସତ୍ୟନିଷ୍ଠା, ପିତୃସତ୍ୟ ପାଳନ ଓ ପ୍ରଜାନୁରଞ୍ଜନର ଆନ୍ତରିକତା, ସୀତାଙ୍କର ଏକନିଷ୍ଠ ସତୀତ୍ୱ ଓ ରାମାୟଣରେ ବାଲ୍ମୀକିଙ୍କର ଏକ ଉଚ୍ଚତର ମୂଲ୍ୟବୋଧର ପ୍ରତିଷ୍ଠା ଭାରତୀୟ ଜୀବନଧାରାକୁ ସମୃଦ୍ଧ କରିଥିଲା ।

ମହାଭାରତକାଳର ବିଶିଷ୍ଟ ବୀରପୁରୁଷମାନଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ମହନୀୟତା, କ୍ଷମାଶୀଳତା ପ୍ରଭୃତିର ବର୍ଣ୍ଣନା କରିଛନ୍ତି କବି ଓ ଏଥିରେ ଶ୍ରୀକୃଷ୍ଣଙ୍କ ମୁଖନିଃସୃତ ଭଗବତ୍‌ ଗୀତାର ବାଣୀ କିପରି ଯୁଗେ ଯୁଗେ ଭାରତୀୟ-ମାନଙ୍କର ଦିଗ୍‌ଦର୍ଶକ ହୋଇପାରିଛି, ତା'ର ସୂଚନା ପ୍ରଦାନ କରିଛନ୍ତି । ଦୁଇହଜାର ଛ'ଶହ ବର୍ଷ ପୂର୍ବେ ଶାକ୍ୟସିଂହ ବୁଦ୍ଧ କୁସଂସ୍କାରଗ୍ରସ୍ତ ସାମାଜିକ ଜୀବନରେ ବହୁବିଧ ସଂସ୍କାର ଆଣିଥିଲେ । ଧର୍ମ ଯେ କେବଳ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ନୁହେଁ ତାହାହିଁ ପ୍ରତିପାଦନ କରି ସେ ସମସ୍ତ ନିର୍ବାଣକାମୀ ମଣିଷକୁ ବୌଦ୍ଧଧର୍ମାଚରଣର ସୁଯୋଗ ଦେଇଥିଲେ । ଧର୍ମକ୍ଷେତ୍ରରେ ସମାନତା ହିଁ ଦେଶବାସୀ ଓ ଦେଶର ଭୌଗୋଳିକ ସୀମା ଡେଇଁ ଅନ୍ୟାନ୍ୟ ଦେଶମାନଙ୍କରେ ବିଶେଷ ଭାବରେ ପ୍ରସାରିତ ହୋଇଥିଲା । ସେ ପ୍ରସଙ୍ଗ ଉଲ୍ଲେଖ କରି କବି କହିଛନ୍ତି—

"ପ୍ରଗ୍ଭିରଲେ ମହାଦୀକ୍ଷା 'ସମାନ ସକଳେ'
ବ୍ୟାପିଲା ଦାବାଗ୍ନି ପ୍ରାୟେ ମହାଦୀକ୍ଷା ଅବନୀମଣ୍ଡଳେ ।"

ସର୍ବଭାରତୀୟ ଚେତନା ଜାଗ୍ରତରେ କବି ରାଧାନାଥଙ୍କର 'ସର୍ବେଷାଂ ନୋ ଜନନୀ ଭାରତ' ସଦୃଶ ମଧୁସୂଦନଙ୍କର ''ଭାରତ ଭାବନା''ର ରହିଛି ସମାନ ଭୂମିକା ।

କବିଙ୍କର ଗ୍ରନ୍ଥମାଳର ଅନ୍ୟତମ କବିତା ପୃଥିବୀ । ଉପନିଷଦୀୟ ଭାବଧାରା ଦ୍ଵାରା ଅନୁପ୍ରାଣିତ କବିହୃଦୟ ଅଥର୍ବବେଦରେ ଥିବା ପୃଥ୍ଵୀସୂକ୍ତ ଅନୁରୂପ ପୃଥିବୀକୁ ମାତୃରୂପରେ ପରିକଳ୍ପନା କରିଛନ୍ତି । ପୃଥିବୀମାତାର ପର୍ବତ ଦେହରୁ ଝରୁଥିବା ନିର୍ଝର ମାତୃସ୍ତନ ସଦୃଶ ମଣିଷ, ପଶୁପକ୍ଷୀ, କୀଟପତଙ୍ଗ ସମସ୍ତଙ୍କୁ ପୋଷଣ କରୁଛି । ଏ ପୃଥିବୀ କାମଧେନୁ, ଯାହା ନିକଟରୁ ଜୀବସକଳ ନିଜର କାମନା ଅନୁରୂପ ଫଳ ଲାଭ କରିଥା'ନ୍ତି । ପୃଥିବୀଠାରେ ମାତୃତ୍ଵ ଆରୋପ କରିବା ଫଳରେ କବି ବିଶ୍ଵମାନବ ମଧ୍ୟରେ ଏକତ୍ଵ ଉପଲବ୍ଧି କରିପାରିଛନ୍ତି । କିନ୍ତୁ ଗ୍ରନ୍ଥମାଳାର ଅନ୍ୟଏକ କବିତା ଜନ୍ମଭୂମିରେ ସେ ସ୍ପଷ୍ଟଭାବରେ ଭାରତବର୍ଷକୁ ଜନନୀ ରୂପେ ସ୍ୱୀକାର କରି ସମସ୍ତ ଭାରତବାସୀଙ୍କ ମଧ୍ୟରେ ଭ୍ରାତୃତ୍ଵର ସମ୍ପର୍କକୁ ଦୃଢ଼ କରିବାପାଇଁ ଆହ୍ଵାନ ଦେଇଛନ୍ତି । କବି ଲେଖିଛନ୍ତି—

''ତୁହି ମା' ଜନମଭୂମି ପବିତ୍ର ଭାରତଭୂମି,
ତୋହର ସନ୍ତାନ ଆମ୍ଭେ ଅଛୁ ସରବେ ।
ତୋ'ର ଶ୍ରୀଚରଣ ସେବା ପାଇଁ ମନପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦରବେ ।
ତୋ' ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋ'ର ହୋଇଣ ଦୁଖୀ ।।'' (ଜନ୍ମଭୂମି)

ଭାରତବର୍ଷର ପ୍ରତିଟି ନଦନଦୀ ଭିତରେ କବି ଦେଖିଛନ୍ତି ଏକ ଦିବ୍ୟ ପ୍ରକାଶ । ତେଣୁ ଭାରତବାସୀଙ୍କ ହୃଦୟରେ ନିଜର ଜନ୍ମଭୂମିକୁ କେନ୍ଦ୍ରକରି ଶ୍ରଦ୍ଧା ଭକ୍ତି ଉଦ୍ରେକ କରାଇବା ମାନସରେ ସେ ଅତୀତ ଐତିହ୍ୟ, ଗୌରବ ଓ ମହାନତାର ଯଶୋଗାନ କରିଛନ୍ତି ।

ତାଙ୍କର 'ନବଯୁଗ' କବିତାରେ କବି ଅଖଣ୍ଡ ଭାରତବର୍ଷର ପରିକଳ୍ପନା ଯେ ସ୍ୱପ୍ନ ନୁହେଁ ବାସ୍ତବ ତାହା ପ୍ରକାଶ କରିଛନ୍ତି । ସମସ୍ତ ପ୍ରକାର ବିଚ୍ଛିନ୍ନତା, ଭିନ୍ନତା ସତ୍ତ୍ୱେ ବହୁ ଧର୍ମଧାରଣାର ପ୍ରତିଷ୍ଠା ରହିଥିଲେ ଏବଂ ଏଠାରେ ବହୁ ଆଞ୍ଚଳିକ ବିଭେଦ ଥିଲେ ମଧ୍ୟ ଭାରତର ଆତ୍ମା ଏକ । ସେହି ଆତ୍ମଶକ୍ତି ହିଁ ଏହି ବିଶାଳ ଭୂଖଣ୍ଡର ଅଧିବାସୀଙ୍କୁ ଏକତାର ସୂତ୍ରରେ ବାନ୍ଧିରଖିଛି ।

ଦୀର୍ଘକାଳ ଧରି ପରାଧୀନତା ଓ ଦାସତ୍ୱ ଭାରତୀୟମାନଙ୍କର ପ୍ରାଣ ଶକ୍ତିକୁ କ୍ଷୀଣ କରି ଦେଇଥିଲା । ବିଦେଶୀ ଶାସକର ଅତ୍ୟାଚାର ତା'ର ମନୋବଳକୁ ଭାଙ୍ଗି ଦେଇଥିଲା, ତା'ର ସାଂସ୍କୃତିକ ଚେତନାକୁ ବିପର୍ଯ୍ୟସ୍ତ କରି ଦେଇଥିଲା ଓ ଆଞ୍ଚଳିକ ବିଭେଦ ସୃଷ୍ଟି କରାଇ ଭାରତୀୟମାନଙ୍କର ଏକତା ଉପରେ ପ୍ରଚଣ୍ଡ ଆଘାତ ମଧ୍ୟ କରାଯାଇଥିଲା । କିନ୍ତୁ ତା'ର ଆତ୍ମଶକ୍ତି କୌଣସି ବାହ୍ୟ ଘଟଣା ଦ୍ୱାରା ନିପୀଡ଼ିତ ହୋଇ ନଥିଲା । ତଥାପି ଏକ ଜଡ଼ତା ଦ୍ୱାରା ଆକ୍ରାନ୍ତ ହୋଇ ଆତ୍ମଶକ୍ତିର ଔଜ୍ଜ୍ୱଲ୍ୟ କ୍ଷୀଣ ହୋଇଯାଇଥିବା ଅନୁଭବକରି ଦେଶର ମନୀଷୀମାନେ ତାହାକୁ ପ୍ରଥମେ ଜାଗ୍ରତ କରାଇବାକୁ ଚେଷ୍ଟା କଲେ । ଫଳରେ ଆକୁମାରୀ ହିମାଚଳ ଯାଏ ପ୍ରସରିଗଲା ମହାଭାରତୀୟ ଚେତନା । ସେଇ ଚେତନାର ସ୍ପର୍ଶରେ କବି ଅନ୍ତର ପ୍ରଥମେ ଉନ୍ମିଳିତ ହୋଇଯାଇଛି ଓ ସେ ସ୍ପଷ୍ଟଭାବରେ ଦେଖିପାରିଛି—

"ହରିଣ୍ଟୁସ୍ୱ ପ୍ରେମ କିରଣ
　　　　ଦେଖ ଭାରତ ଶିରେ
ବିଚ୍ଛିନ୍ନ ବିଭିନ୍ନ ଭାରତ
　　　　ଏକ ହେଉଛି ଧୀରେ ।
ବର୍ଣ୍ଣଭେଦ ଧର୍ମଭେଦର
　　　　ଦିନ ହେଉଛି ଶେଷ
ମହାଯୋଗେ ହେବ ଭାରତ
　　　　ମହାଭାରତ ଦେଶ ।
ପଞ୍ଜାବ, ଅଯୋଧ୍ୟା, ବଙ୍ଗଳା
　　　　ରାଜବାଡ଼ା ଗୁର୍ଜ୍ଜର
ତୈଲଙ୍ଗ କର୍ଣ୍ଣାଟ ଉତ୍କଳ
　　　　ମହାରାଷ୍ଟ୍ର ସଙ୍ଗର ।
ଗାଉଛନ୍ତି ମହା ସଙ୍ଗୀତ
　　　　ଜୟ ଭାରତ ଜୟ
ଏକ ଜାତି ଆମ୍ଭେ ସରବେ
　　　　ତେବେ ଆଉ କି ଭୟ ।"

ମଧୁସୂଦନଙ୍କର 'ଉତ୍କଳଗାଥା'ରେ ସ୍ଥାନିତ କବିତାଗୁଡ଼ିକ ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ଜଣାଯାଏ ଯେ ସେ ଉତ୍କଳୀୟ ଭାବରେ ଗୌରବ ଅନୁଭବ

କରୁଥିଲେ ଓ ଏହି ମାଟି ଯେ ଉତ୍କଳୀୟମାନଙ୍କର ସାଧନାପୀଠ ତାହା ସେ ଉଦ୍‌ଘୋଷଣ କରିଥିଲେ ଓ ଆହ୍ୱାନ ଦେଇଥିଲେ—

ଜ୍ଞାନକର୍ମ—ତପସ୍ୟାର ବଳେ
ଏ ଭାରତ ମଧ୍ୟମଣ୍ଡଳେ
ଜିଣି ସିଦ୍ଧି ଉର୍ବରଙ୍ଗ ତଳେ
ଉଜ୍ଜ୍ୱଳ କରନ୍ତେ ଉତ୍କଳେ । [ଉତ୍କଳ ଗାଥା]

'ଉତ୍କଳ ବନ୍ଦନା' କବିତାରେ କବି ଉତ୍କଳର ପୌରାଣିକ ଓ ସାଂସ୍କୃତିକ ମହତ୍ତ୍ୱର ବର୍ଣ୍ଣନା କରିଛନ୍ତି । ଏ ମାଟି ମା'ର ପଦଧୌତ କରେ ମହୋଦଧି । ଏହାର ଶୋଭାବର୍ଦ୍ଧନ କରେ ନଦନଦୀ ଗିରିବନ । କେତେ ତପୋଧନଙ୍କର ତପସ୍ୟାରେ ଓ କେତେ ପୁଣ୍ୟଶ୍ଳୋକ ନରପତି ମାନଙ୍କର ସାଧନାରେ ପୂତପବିତ୍ର ହୋଇଛି ଏ ଦେଶ । କେତେ ସନ୍ନ୍ୟାସୀ ଏଠାରେ ଜନ୍ମଗ୍ରହଣ କରିଛନ୍ତି ଓ ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ପରି କେତେ ସାଧକ କବି ଏହାର ଭାଷା ସାହିତ୍ୟରେ ପ୍ରାଣସଞ୍ଚାର କରି ଲେଖିଯାଇଛନ୍ତି ଓଡ଼ିଆ ଜାତିର ମହାକାବ୍ୟ । କବି ମଧୁସୂଦନ ବାରମ୍ବାର ଜଡ଼ତାଗ୍ରସ୍ତ ଉତ୍କଳୀୟଙ୍କ ମନରେ ପୁନଃ ଜାଗ୍ରତ କରାଇବାକୁ ଚେଷ୍ଟା କରିଛନ୍ତି ନିଜର ଜନ୍ମଭୂମି ପ୍ରତି ଶ୍ରଦ୍ଧା, ସମ୍ମାନ ଓ କୃତଜ୍ଞତାବୋଧ ।

ମଧୁସୂଦନଙ୍କର ଏହି ବିମଳ ଭାବନା ଓ ଶୁଦ୍ଧ ସ୍ୱଦେଶ ପ୍ରୀତିର ପରିଚୟ ପାଇ କବି ପଦ୍ମଚରଣ ପଟ୍ଟନାୟକ ଯଥାର୍ଥରେ ଲେଖିଥିଲେ, "ଆଦିରସ ପ୍ରପୀଡ଼ିତ ଉତ୍କଳ ସାହିତ୍ୟ ସଂସାରରେ ଗୋଟିଏ ପବିତ୍ର ନିର୍ମଳ ସାହିତ୍ୟ ପ୍ରବାହ ବୁହାଇ ଆମ୍ଭମାନଙ୍କ ରୁଚି ଓ ଚିନ୍ତାର ମାର୍ଗକୁ ମଧୁସୂଦନ ପରିବର୍ତ୍ତନ କରିଦେଲେ ।

ସେ ବାସ୍ତବିକ ଜନ-ସମାଜର ମଙ୍ଗଳକାରୀ ଓ ଆପଣାର ଦେଶବାସୀଙ୍କର ପରମ ବନ୍ଧୁ, କାରଣ ସେ ସମାଜର ଚିନ୍ତାକୁ ନରକ ଦିଗରୁ ସ୍ୱର୍ଗ ମାର୍ଗକୁ ଟାଣିନଅନ୍ତି ।"

ମଧୁସୂଦନଙ୍କର ଜାତୀୟ ଭାବନା ଥିଲା ଆଧ୍ୟାତ୍ମିକ ଚେତନା ପ୍ରଣୋଦିତ । ଏକ ବିଶ୍ୱବିଧାତାର ପରିକଳ୍ପନା ସହିତ ଏକ ମାନବ ଜାତିର ଅସ୍ତିତ୍ୱକୁ ସେ ସ୍ୱୀକାର କରୁଥିଲେ—

ପୁଣି ଶୁଣ ନବ ସମ୍ବାଦ
ସର୍ବେ ଭଲ୍ଲାସେ ମାତି
ଏକମାତ୍ର ବିଶ୍ୱବିଧାତା
ଏକ ମାନବ ଜାତି । ( ନବଯୁଗ ସମ୍ବାଦ )



# ସୀତା ବନବାସ : ଏକ ଅନୁଶୀଳନ

ସୀତା ବନବାସ କାବ୍ୟଟି କବି ନନ୍ଦକିଶୋର ବଳଙ୍କର କବିଜୀବନର ଆଦ୍ୟ ଭାଗରେ ରଚିତ । ରାମ ଓ ସୀତାଙ୍କୁ ନେଇ ଭାରତୀୟ କାବ୍ୟ ସାହିତ୍ୟ ବହୁଭାବରେ ସମୃଦ୍ଧ ହୋଇଛି । ବାଲ୍ମୀକିଙ୍କଠାରୁ ଆରମ୍ଭ କରି କବି କାଳିଦାସ, ଭବଭୂତି ଓ ବହୁ କାବ୍ୟକାର ଏବଂ ନାଟ୍ୟକାରମାନେ ରାମସୀତାଙ୍କ ଜୀବନର ପୂର୍ଣ୍ଣାଙ୍ଗ ଚିତ୍ର ଯେପରି ଭାବରେ ଅଙ୍କନ କରିଛନ୍ତି ସେହିପରି ନିର୍ଦ୍ଦିଷ୍ଟ କୌଣସି ଏକ ପ୍ରସଙ୍ଗକୁ ନେଇ ମଧ୍ୟ କାବ୍ୟ କବିତା ନାଟକ ପ୍ରଣୟନ କରିଛନ୍ତି । କବି ନନ୍ଦକିଶୋର ମଧ୍ୟ ଭାରତୀୟ ମାନସରେ ଶ୍ରଦ୍ଧା ଓ ସମ୍ମାନରସହ ପ୍ରତିଷ୍ଠିତ ଅତ୍ୟନ୍ତ ଜନପ୍ରିୟ ଚରିତ୍ର ରାମସୀତାଙ୍କର ଉତ୍ତରବନବାସ ଜୀବନକୁ ନେଇ ତାଙ୍କର ଏହି କାବ୍ୟ ପରିକଳ୍ପନା କରିଛନ୍ତି ।

'ସୀତା ବନବାସ'ର ପ୍ରଥମ ସଂସ୍କରଣ ପ୍ରକାଶ ପାଇବା ପରେ ତାହାର ସଂକ୍ଷିପ୍ତ ରୂପ ସମାଲୋଚନାର କାରଣ ହୋଇଥିବାରୁ କବି ପରବର୍ତ୍ତୀ କାଳରେ କାବ୍ୟରେ ସ୍ଥାନିତ ହୋଇଥିବା ପ୍ରତିଟି ସର୍ଗରେ ନୂତନ ପଦ ସଂଯୋଜନା କରି କାବ୍ୟକୁ ଅପେକ୍ଷାକୃତ ଦୀର୍ଘ କରିଥିଲେ ଓ ସମ୍ପୂର୍ଣ୍ଣ ନୂତନ ସର୍ଗ ମଧ୍ୟ ସେଥିରେ ଯୋଗ କରିଥିଲେ । ତେଣୁ ପ୍ରଥମ ସଂସ୍କରଣରେ ଥିବା ଏକାଦଶଟି ସର୍ଗ ପରେ ଚତୁର୍ଦ୍ଦଶ ସର୍ଗକୁ ବୃଦ୍ଧି ପାଇଥିଲା । ରାମଚନ୍ଦ୍ରଙ୍କର ସିଂହାସନ ଆରୋହଣଠାରୁ ଅନ୍ତିମଜୀବନ ପର୍ଯ୍ୟନ୍ତ ଘଟଣାବଳୀ ହିଁ କାବ୍ୟର ବର୍ଣ୍ଣିତ ବିଷୟବସ୍ତୁ ।

କାବ୍ୟକଳା ଦୃଷ୍ଟିରୁ ବିଚାର କଲେ ଉକ୍ତ କାବ୍ୟର ସର୍ବତ୍ର ରାଧାନାଥୀୟ ଶୈଳୀ ଓ ପ୍ରକାଶ ବୈଚିତ୍ର୍ୟ ସ୍ପଷ୍ଟ ହେଲେ ମଧ୍ୟ ନନ୍ଦକିଶୋରଙ୍କର ସହଜ ସରଳ ଶବ୍ଦ ସଂଯୋଜନା ଭାରତୀୟ ସାହିତ୍ୟର ସର୍ବଶ୍ରେଷ୍ଠ ଆଦର୍ଶମୟ ଚରିତ୍ରସମୂହକୁ ନେଇ କବିର କଳ୍ପନାବିଳାସ 'ସୀତା ବନବାସ'କୁ ଏକ ଅନନ୍ୟସାଧାରଣ କାବ୍ୟମର୍ଯ୍ୟାଦା ପ୍ରଦାନ କରିଛି ।

ପ୍ରାଚ୍ୟ କାବ୍ୟତତ୍ତ୍ୱର ପରମ୍ପରାକ୍ରମେ କବି ପ୍ରଥମ ସର୍ଗର ଆରମ୍ଭ କରିଛନ୍ତି ଦେବୀ ସରସ୍ୱତୀଙ୍କର ବନ୍ଦନାରେ—

"ବନ୍ଦେ ବାଣୀ ବରଦେ ଗୋ ଭୁବନମୋହିନୀ
ଜଗତପାବନ ମୃତ୍ୟୁଭୟ ବିନାଶିନୀ ।"

ବାଣୀ ବନ୍ଦନା ପରେ କବି କାବ୍ୟର ବିଷୟବସ୍ତୁ ଉପସ୍ଥାପନା କରିଛନ୍ତି । ଚଉଦ ବର୍ଷର ବନବାସ ଦୁଃଖ ପରେ ରାମଚନ୍ଦ୍ର ପତ୍ନୀ ସୀତା ଓ ଭ୍ରାତା ଲକ୍ଷ୍ମଣଙ୍କ ସହିତ ପ୍ରତ୍ୟାବର୍ତ୍ତନ କରିଛନ୍ତି ଅଯୋଧ୍ୟା ନଗରୀକୁ । ବିପୁଳ ସମ୍ବର୍ଦ୍ଧନା ଜଣାଇଛନ୍ତି ନଗରବାସୀ । ରାଜପୁରରେ ଖେଳିଯାଇଛି ଆନନ୍ଦୋଲ୍ଲାସ । କେବଳ ଏଥିରେ ଅଂଶଗ୍ରହଣ କରି ନାହାନ୍ତି ରାଜ୍ୟର ପ୍ରଜାଗଣ । ପ୍ରାସାଦର ଆତ୍ମୀୟସ୍ୱଜନଗଣ ବା ରାଜକର୍ମଚାରୀମାନେ ବରଂ ଏ ମହୋତ୍ସବରେ ଏକାକାର ହୋଇଯାଇଛନ୍ତି ଅଯୋଧ୍ୟାର ପଶୁପକ୍ଷୀ ଓ ଉଦ୍ଭିଦ ସକଳ । ଧେନୁମାନେ ହୋଇଉଠିଛନ୍ତି ଅଧିକ ଦୁଗ୍ଧବତୀ, ତରୁଲତା ପୂର୍ଣ୍ଣ ହୋଇଯାଇଛନ୍ତି ନବୀନ କିଶଳୟରେ, ବୃକ୍ଷ ଅବନତ ହୋଇଯାଉଛନ୍ତି ପୁଷ୍ପ ଓ ଫଳର ଭାରରେ । ଜୀବ ଓ ଜଡ଼ ସର୍ବତ୍ର ଆନନ୍ଦ ଉଲ୍ଲାସର ଚିହ୍ନ । କବି କଳ୍ପନାରେ ରାମରାଜ୍ୟରେ ସେନାଗଣ କେବଳ ଅଳଙ୍କାର ଭଳି ଶୋଭାବର୍ଦ୍ଧନ କରନ୍ତି । ଗିରିଗୁହା ପ୍ରତିଧ୍ୱନି ଛଳରେ ରାମଯଶ ଗାନ କରୁଥାଏ । ବସୁନ୍ଧରାର ସର୍ବତ୍ର ରାମ ଜୟଗାନ—

"ଗାଏ ରାମନାମ ଗୀତ ସୁନ୍ଦର ମୋହନ
ସ୍ଥାବର ଜଙ୍ଗମ ପ୍ରିୟ ପ୍ରଶାନ୍ତ ପାବନ ।"

ତୃତୀୟ ସର୍ଗରେ ରାମସୀତାଙ୍କର ପବିତ୍ର ଓ ପ୍ରଗାଢ଼ ପ୍ରଣୟସୁଖର ଆଭାସ ପ୍ରଦାନ କରାଯାଇଥିଲେ ବି କବି ବିଶୁଦ୍ଧ ପ୍ରେମର ସ୍ୱରୂପ ସୁନ୍ଦର ଓ ଚିତ୍ତାକର୍ଷକ ଉପମା ମାଧ୍ୟମରେ ଚମତ୍କାର ଭାବରେ ପ୍ରକାଶ କରିପାରିଛନ୍ତି । ରାମ ଓ ସୀତାଙ୍କ ମଧ୍ୟରେ ହୋଇଥିବା କଥୋପକଥନକୁ 'ଭାନୁକରେ ନବନଳିନୀ ଯେସନେ ଉଠଇ ହସି ବା ନବଘନ ପାଶେ ଯେସନ ଶୋହେ ତୋରା ଯାମିନୀ'ର ଉପମା ପ୍ରୟୋଗ ଦ୍ୱାରା ସରଳ ଭାବରେ ହିଁ ଭଲପାଇବାର ସୁନ୍ଦର ଦିଗଟିକୁ ଉଦ୍‌ଘାଟିତ କରି ପାରିଛନ୍ତି । ଆସନ୍ନପ୍ରସବା ସୀତାଙ୍କର ମାନସିକ ପୂରଣ ପାଇଁ ଆଗ୍ରହୀ ରାମଚନ୍ଦ୍ରଙ୍କର ଜିଜ୍ଞାସାର ଉତ୍ତର ଦେଇ ସୀତା ଋଷି ଆଶ୍ରମ ଦର୍ଶନର ଅଭିଳାଷ ବ୍ୟକ୍ତ କରି କୁହନ୍ତି—

"ବୁଲି ବନେ ତୁମ୍ଭ ସଙ୍ଗତେ କରନ୍ତି ତା' ଦର୍ଶନ
କାନନ ସିକତା ପୀଠରେ କରି ଉପବେଶନ ।"

ଚତୁର୍ଥ ସର୍ଗ ରାଜା ରାମ ଓ ରାଜଦୂତର ଆଳାପକୁ ନେଇ ବର୍ଣ୍ଣିତ । ରାମରାଜ୍ୟର ବିଚାରଧାରାରେ ସମସ୍ତେ ସମାନ ନ୍ୟାୟ ପାଇବାକୁ ଯୋଗ୍ୟ । ଆବଶ୍ୟକ ସ୍ଥଳରେ କୌଣସି ଅପରାଧର ବିବେଚନାରେ ରାଜା ଓ ପ୍ରଜା ଉଭୟ ସମାନଭାବରେ ଦଣ୍ଡର ଅଧିକାରୀ । ତେଣୁ ଦୂତର ପ୍ରଭୁଭକ୍ତି ମଧ୍ୟରେ ପ୍ରଭୁଙ୍କର

ଦୋଷ ଦୁର୍ବଳତାକୁ ଗୋପନ କରିବା ସମ୍ଭବ ନୁହେଁ । ତେଣୁ କୌଣସି ଏକ କଥା ରାଜାଙ୍କ ନିକଟରେ ବ୍ୟକ୍ତ କରିବାକୁ କୁଣ୍ଠିତଭାବ ପ୍ରକାଶ କରୁଥିବା ଦୂତ ଉଦ୍ଦେଶ୍ୟରେ ରାଜା ସତର୍କବାଣୀ ଶୁଣାଇ କୁହନ୍ତି—

"ନ କହିଲେ ସତ୍ୟ, ରାଷ୍ଟ୍ର ବିଧି ଅନୁସାରେ
ଆବଦ୍ଧ ହୋଇବ ଦୂତ ରାଜ କାରାଗାରେ ।"

ରାଜାଙ୍କ ନିକଟରୁ ଏହି ନିର୍ଦ୍ଦେଶ ପାଇବା ପରେ ଦୂତ ଯୋଡ଼ହସ୍ତ ହୋଇ ପ୍ରଜାମାନଙ୍କର ରାଜରାଣୀ ସୀତାଙ୍କୁ ନେଇ ଆଲୋଚନା କରୁଥିବା ଏକ ଅପବାଦର ବିବରଣୀ ପ୍ରଦାନ କରିବାକୁ ଯାଇ କହନ୍ତି—

"ଯେ ନାରୀ ହୋଇଲେ ପରପୁରୁଷେ ସେବିତା
ସେହି ହେଲେ ଆମ୍ଭ ରାଣୀ ରୂପେ ଅଭିଷିକ୍ତା ।"

ଦୂତ ବିଦାୟ ନେଇ ଫେରିଯାଇଛି । କିନ୍ତୁ ସୀତାଙ୍କ ଉଦ୍ଦେଶ୍ୟରେ ଯେଉଁ ଜନାପବାଦର ସୂଚନା ଦେଇଗଲା, ତାହା ରାଜା ରାମଙ୍କ ହୃଦୟକୁ ଶୋକରେ ବିଦୀର୍ଣ୍ଣ କରି ଦେଇଛି । ରାବଣପୁରରେ ଥିବା ସୀତା ଲଙ୍କାରେ ଅଗ୍ନି ପରୀକ୍ଷା ଦେଇ ନିଜର ଶୁଦ୍ଧଚରିତ୍ର ଓ ସତୀତ୍ୱର ପରୀକ୍ଷା ଦେଇ ସାରିଛନ୍ତି । ରାମଚନ୍ଦ୍ର ଜାଣନ୍ତି ସୀତା ଅଗ୍ନିତୁଲ୍ୟ ନିଷ୍କଳଙ୍କ, ଗଙ୍ଗାଜଳ ପରି ପବିତ୍ର; କିନ୍ତୁ ଜନାପବାଦକୁ ଖଣ୍ଡନ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଏଣେ ନିରପରାଧ ସତୀ ପତ୍ନୀଙ୍କୁ ଆସନ୍ନପ୍ରସବା ଅବସ୍ଥାରେ ନିର୍ବାସନ ଦେବା କ'ଣ ସମ୍ଭବ ! ମାନସିକ ଯନ୍ତ୍ରଣା ଭିତରେ ଅହରହ ଦହନୀଭୂତ ହେଉଥିବା ରାମଚନ୍ଦ୍ର ନିଜର ଭ୍ରାତାମାନଙ୍କ ଆଗରେ ଆଉ ଘଟଣା ଗୋପନ ରଖିପାରି ନାହାନ୍ତି ଏବଂ ସୀତାଙ୍କୁ ତ୍ୟାଗ କରିବାର ନିଷ୍ପତ୍ତି ମଧ୍ୟ ଶୁଣାଇ ଦେଇଛନ୍ତି । ରାଜାଙ୍କର ନିଷ୍ପତ୍ତିର ପୁନର୍ବିଚାର ପାଇଁ ବ୍ୟଥିତ ଲକ୍ଷ୍ମଣ ବାରମ୍ବାର ନିବେଦନ ଜଣାଇବାରୁ ଶୋକବିହ୍ୱଳ ଅଥଚ ଦୃଢ଼ ରାମଚନ୍ଦ୍ର କହିଛନ୍ତି ଯେ—

"ରାଜାର କର୍ତ୍ତବ୍ୟ ଭାଇ ପ୍ରକୃତି ରଞ୍ଜନ
କର୍ତ୍ତବ୍ୟ ବିନଷ୍ଟ ହେଲେ ବିଫଳ ଜୀବନ ।"

ତେଣୁ ପ୍ରଜାମାନଙ୍କର ସୁଖଦୁଃଖ ଓ ଭଲମନ୍ଦ ନିମିତ୍ତ ରାଜାଙ୍କୁ ମଧ୍ୟ ଆବଶ୍ୟକ ହେଲେ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରିବାକୁ ହେବ । ବିଭ୍ରଷ୍ଟ କର୍ତ୍ତବ୍ୟ ମହାନ୍ ଜୀବନକୁ ବିଫଳ କରେ । ରାମଚନ୍ଦ୍ରଙ୍କ ମତରେ ଯେଉଁ କର୍ତ୍ତବ୍ୟର ଅନୁରୋଧରେ ଭରତର ବ୍ୟାକୁଳ କ୍ରନ୍ଦନକୁ ଏଡ଼ି ସେ ଅରଣ୍ୟରେ କ୍ଲେଶ ସହିଲେ । ସେହି କର୍ତ୍ତବ୍ୟ 'ପ୍ରେର-ସୀତା ବନେ' ବୋଲି ନିର୍ଦ୍ଦେଶ ଦେଉଥିବାରୁ

ତାଙ୍କୁ ଅସ୍ୱୀକାର କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ସେ ତାଙ୍କର ସୀତା ନିର୍ବାସନର ଶେଷ ଆଦେଶ ଲକ୍ଷ୍ମଣଙ୍କୁ ଶୁଣାଇ ଦେଇଛନ୍ତି ।

ଲକ୍ଷ୍ମଣ ସୀତାଙ୍କୁ ରଥରେ ନେଇ ଅରଣ୍ୟ ପଥରେ ଅଗ୍ରସର ହେବାବେଳେ ସୀତା ଯେ ନିର୍ବାସିତା ହୋଇଛନ୍ତି ଏ ଧାରଣା ତିଳେମାତ୍ର ତାଙ୍କ ମନକୁ ସ୍ପର୍ଶ କରିନାହିଁ । ତେଣୁ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ ପାଇଁ ସେ ଯେତେବେଳେ ଇଚ୍ଛା-ପ୍ରକାଶ କରିଛନ୍ତି ଲକ୍ଷ୍ମଣ ଅଧୋମୁଖ ହୋଇ ରାମଚନ୍ଦ୍ରଙ୍କର ଆଦେଶ ଜଣାଇ ଦେଇଛନ୍ତି । ଆଦେଶର ପରିଣତି ହୃଦୟଙ୍ଗମ କରି ସୀତା ଦାରୁଣ ମାନସିକ ଆଘାତରେ ସଂଜ୍ଞା ହରାଇ ଭୂତଳଶାୟୀ ହୋଇପଡ଼ିଲେ ଓ ପୁଣି ସଂଜ୍ଞାଲାଭ ପରେ ନିଜ ଅସାର ଜୀବନକୁ ନିନ୍ଦା କରି ସେ ରୋଦନ କରୁଥିବାବେଳେ ଶୋକାକୁଳ ଲକ୍ଷ୍ମଣ ମଧ୍ୟ ରାମଚନ୍ଦ୍ରଙ୍କର ଅତ୍ୟଧିକ ପ୍ରଜାବତ୍ସଳତାକୁ ନିନ୍ଦା କରିଛନ୍ତି । ଅସହାୟ ସୀତା ଏକାକିନୀ ଅରଣ୍ୟରେ ନିର୍ବାସିତା ହୋଇଥିଲେ ହିଁ ପତି ରାମଚନ୍ଦ୍ରଙ୍କର ନିନ୍ଦା କରିବା ପରିବର୍ତ୍ତେ ଲକ୍ଷ୍ମଣଙ୍କୁ ଶେଷ ଅନୁରୋଧ ଜଣାଇଛନ୍ତି—

ଭାର୍ଯ୍ୟା ପଣେ ଦାସୀ ସିନା ହେଲି ବହିର୍ଭୂତ
ପ୍ରଜା ପଣେ ନ କରିବେ ହୃଦ ରାଜ୍ୟ ଚ୍ୟୁତ ।

ଏହି ଗୋଟିଏ ପଂକ୍ତିରେ ସୀତାଙ୍କ ଚରିତ୍ରର ମହନୀୟ, ଉଦାର, କ୍ଷମାଶୀଳ ଓ ପତିଅନୁରକ୍ତ ଭାବ ସୁନ୍ଦର ଭାବରେ ପ୍ରକାଶିତ ହୋଇପାରିଛି । ଲକ୍ଷ୍ମଣ ସୀତାଙ୍କୁ ପ୍ରଣାମ କରି ବିଦାୟ ନେଇ ଯାଇଛନ୍ତି ।

ଶ୍ରୀରାମଙ୍କ ଅନୁଶୋଚନା ଆରମ୍ଭ ହୁଏ ଷଷ୍ଠ ସର୍ଗରେ । ଅତୀତର ଘଟଣାବଳୀକୁ ସ୍ମରଣ କରି ରାମଚନ୍ଦ୍ର ବାରମ୍ବାର ନିଜକୁ ଧିକ୍କାର କରିଛନ୍ତି । ଚଉଦବର୍ଷର ବନବାସ ଦୁଃଖ, ରାବଣପୁରୀରେ କାରାରୁଦ୍ଧର ଯନ୍ତ୍ରଣା ସହିଥିବା ତାଙ୍କର ପ୍ରାଣପ୍ରିୟା, ଅଗ୍ନି ପରୀକ୍ଷାରେ ନିଜର ସତୀତ୍ୱ ପରୀକ୍ଷା ଦେଇ ମଧ୍ୟ ଆଜି ତାଙ୍କରି ଦ୍ୱାରା ନିର୍ବାସିତା । ଜନାପବାଦ ଭୟରେ ନିଜ ବିବେକ ବିରୋଧରେ ନେଇଥିବା ନିର୍ମମ ନିଷ୍ପତ୍ତି ପାଇଁ ରାଜା ରାମଙ୍କର ମନ ବେଳକୁବେଳ ଏପରି ଅସ୍ଥିର ହୋଇଛି, ଯାହା ଫଳରେ ସେ ନିଜେ ରାଜସିଂହାସନ ପରିତ୍ୟାଗ କରି ବାନପ୍ରସ୍ଥ ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଯାଇଛନ୍ତି ଓ ଭରତଙ୍କୁ ଅନୁରୋଧ କରିଛନ୍ତି—

ଅଯୋଧ୍ୟାର ସିଂହାସନେ ବସ ହେ ଭରତ
ବନେ ଯାଇ ଆଚରେ ମୁଁ ବାନପ୍ରସ୍ଥ ବ୍ରତ ।

କିନ୍ତୁ ଭରତ ରାମଚନ୍ଦ୍ରଙ୍କୁ ଧୈର୍ଯ୍ୟ ରକ୍ଷାକରିବା ପାଇଁ ଅନୁରୋଧ କରିବା ସଙ୍ଗେ ସଙ୍ଗେ ସଚେତନ କରାଇ ଦେଇଛନ୍ତି ଯେ, ଉପଯୁକ୍ତ ସମୟ ପୂର୍ବରୁ

ରାଜ୍ୟଶାସନ ତ୍ୟାଗକରି ବାନପ୍ରସ୍ଥ ଅବଲମ୍ବନ କଲେ ଜନସାଧାରଣ ତାଙ୍କୁ ଆହୁରି ସମାଲୋଚନା କରିବେ, ଅପବାଦ ଦେବେ । ରାମଚନ୍ଦ୍ର ଭରତଙ୍କ ଉକ୍ତିର ଯଥାର୍ଥତା ହୃଦୟଙ୍ଗମ କରିଛନ୍ତି; କିନ୍ତୁ ତାଙ୍କର ମନେ ହୋଇଛି ଜଳବିନା ମାଛର ଜୀବନ କପରି ! ତେଣୁ ସୀତାଙ୍କୁ ପରିତ୍ୟାଗ କରିଥିବା ରାମଙ୍କର ବଞ୍ଚିବା ଭିତରେ ଜୀବନ୍ତ ମରଣର ଅନୁଭବ ହିଁ ସାର । ସପ୍ତମ ସର୍ଗର 'ବନବାସ' ଦୁଃଖକୁ କେବଳ ନିମ୍ନୋକ୍ତ ଦୁଇଧାଡ଼ିରେ କବି ଯଥାର୍ଥଭାବରେ ପ୍ରକାଶ କରିବାକୁ ସମର୍ଥ ହୋଇଛନ୍ତି ବୋଲି ମନେହୁଏ—

କେମନ୍ତ ବୁଡ଼ିବ ବେଳ ସରିବ ମୋ' ଦିନ,
ନୀର ବିନା କେମନ୍ତ ବା ବଞ୍ଚିବ ଏ ମୀନ !

ନିର୍ବାସିତା ସୀତା ଅନୁଭବ କରି ପାରୁଛନ୍ତି ରାମଚନ୍ଦ୍ରଙ୍କ ବିନା ତାଙ୍କର ଜୀବନଧାରଣ ମୃଣାଳ ବିନା ପଦ୍ମ, ଘନ ବିନା ବିଜୁଳି ଓ କାୟା ଛାୟାର ସ୍ଥିତିଭଳି ଅସମ୍ଭବ । କିନ୍ତୁ ଏହି ପରିପ୍ରେକ୍ଷୀରେ କାବ୍ୟର ବିଷୟବସ୍ତୁକୁ ଅଧିକ ଗତିଶୀଳ କରିବା ପାଇଁ କବିଙ୍କର ତତ୍ପରତା ଲକ୍ଷ୍ୟ କରିହୁଏ । ଋଷି ବାଲ୍ମୀକିଙ୍କର ପ୍ରବେଶ, ସୀତାଙ୍କୁ ଆଶ୍ୱାସନା ଏବଂ ଆଶ୍ରମରେ ସୀତାଙ୍କର ଅବସ୍ଥାନ ପ୍ରସଙ୍ଗର ସୂଚନା ଦିଆଯାଇଛି ଓ ସୀତାଙ୍କର ଯମଜପୁତ୍ର ଲାଭର ବିବରଣୀ ମଧ୍ୟ ପ୍ରଦାନ କରା-ଯାଇଛି । ବୟୋବୃଦ୍ଧି ସହିତ ସେ ଦୁଇପୁତ୍ର ଲବ ଓ କୁଶ ଋଷି ବାଲ୍ମୀକିଙ୍କର ରଚିତ ରାମାୟଣ ଗାନ ଶିକ୍ଷାଲାଭ କରିବାକୁ ଆରମ୍ଭ କରିଛନ୍ତି ।

ଏହାପରେ କବି ଅତି ମାର୍ମିକଭାବରେ ସୀତାଙ୍କର ବିଚ୍ଛେଦ ଯନ୍ତ୍ରଣାର ବର୍ଣ୍ଣନା ପ୍ରଦାନ କରିବାକୁ ଯାଇ ବିଭିନ୍ନ ଋତୁ ପ୍ରସଙ୍ଗର ଉତ୍ଥାପନ ପୂର୍ବକ ସୀତାଙ୍କର ମାନସିକ ସ୍ଥିତିକୁ ଉପସ୍ଥାପନ କରିଛନ୍ତି । ବର୍ଷାଋତୁର ଗଭୀର ରାତି । ତରୁଲତା ଓ ବନସ୍ପତିର ପଲ୍ଲବ ଉପରେ ଝରିପଡୁଛି ବାରିଧାରା, ପବନର ଆଘାତରେ ବନପ୍ରକୃତି ଆନ୍ଦୋଳିତ ହୋଇଉଠୁଛି । ଆଶ୍ରମରେ ସମସ୍ତେ ନିଦ୍ରାମଗ୍ନ । ଅଥଚ ସୀତାଙ୍କର ଆଖିରେ ତନ୍ଦ୍ରା ନାହିଁ । କୁଶଶଯ୍ୟାରେ ଲୋଟି ପଡ଼ିଛି ତାଙ୍କର ଶୀର୍ଣ୍ଣ ତନୁବଲ୍ଲରୀ; କିନ୍ତୁ ଆଖି ଆଗରେ ସ୍ଥିର ରୂପରେ ଭାସିଉଠୁଛି ପତି ରାମଚନ୍ଦ୍ରଙ୍କର ସୌମ୍ୟକାନ୍ତ ରୂପ । ଶରତର କାଶତଣ୍ଡୀ ଫୁଲ, ଚକ୍ରବାକର କଳସ୍ୱନ, କୋକିଳର କୁହୁରାବ, ପଲ୍ଲବିତ ତରୁଲତା ଓ ଚନ୍ଦ୍ରମାଘେରା ଆକାଶ ତାଙ୍କ ମନରେ କେବଳ ରାମଙ୍କର ସ୍ମୃତି ଜାଗ୍ରତ କରୁଛି । ମୁହୂର୍ତ୍ତିକ ପାଇଁ ମଧ୍ୟ ସୀତା ରାମଙ୍କ ଭାବନାରୁ ନିଜକୁ ବିଚ୍ଛିନ୍ନ କରିପାରୁନାହାନ୍ତି । ଦିନ ଆଗକୁ ଗଡ଼ିଯାଉଛି ଯେତେ, ସେତେ ବିଷାଦ ତାଙ୍କ ଚିତ୍ତବୃତ୍ତିକୁ ଆଚ୍ଛନ୍ନ କରିପକାଉଛି । ସେ ହତାଶ ହୋଇ ଭାବୁଛନ୍ତି—

ମୋ' ଦୁଃଖ-ମେଘର ଆଉ ନୋହିବ ମୋଚନ;
ମୋ' ସୁଖ-ଚନ୍ଦ୍ରମା ଚିରକାଳ ମେଘାଚ୍ଛନ୍ନ ।

ବିରହ ଦୁଃଖରେ ଅଭିଭୂତା ସୀତା ସଙ୍କାଶିନ ଅବସ୍ଥାରେ ରାମଚନ୍ଦ୍ରଙ୍କୁ ଏକ ବିଶେଷ ଅବସ୍ଥାରେ ଦର୍ଶନ କରିଛନ୍ତି । ସୀତାଙ୍କ ଲାଗି ଦୁଃଖରେ ବିଳାପ କରୁଥିବା ରାମଚନ୍ଦ୍ରଙ୍କୁ ଆଶ୍ୱାସନା ଦେଉଛନ୍ତି କୁଳପୁରୋହିତ ବଶିଷ୍ଠ । ତାଙ୍କ ମତରେ ଅରଣ୍ୟରେ ନିର୍ବାସିତା ସୀତା ତପସ୍ୱିନୀ ଭାବରେ ସାଧନାରତା । ତାଙ୍କର ତ୍ୟାଗ ଓ ସାଧନା ଧରଣୀରେ ଏକ ଅନନ୍ୟ ସାଧାରଣ ଘଟଣା ଭାବରେ ବିଦିତ ହୋଇ ରହିବ । ତେଣୁ ଶରୀର ସମ୍ପର୍କକୁ ପ୍ରାଧାନ୍ୟ ନ ଦେଇ ମହତ୍ତ୍ୱକୀର୍ତ୍ତି ସ୍ଥାପନରେ ରାମଚନ୍ଦ୍ର ବ୍ରତୀ ହେବା ସମୀଚୀନ ।

ଅଷ୍ଟମ ସର୍ଗରୁ ଆରମ୍ଭ ହୁଏ ଅଶ୍ୱମେଧ ଯଜ୍ଞର ବର୍ଣ୍ଣନା । ଏଣେ ବାଲ୍ମୀକି ଆଶ୍ରମରେ ପରିପାଳିତ ଲବ ଓ କୁଶ ମହର୍ଷିଙ୍କ ତତ୍ତ୍ୱାବଧାନରେ ଅସ୍ତ୍ରଶସ୍ତ୍ର ଓ ସମସ୍ତ ଶାସ୍ତ୍ରରେ ପାରଙ୍ଗମ ହୋଇଉଠିଛନ୍ତି । ବାଲ୍ମୀକି ମନେ ମନେ ଚିନ୍ତା କରୁଛନ୍ତି ଦୁଇ ସୁଯୋଗ୍ୟ ପୁତ୍ରସହ ପତ୍ନୀ ଜାନକୀଙ୍କୁ କ'ଣ ରାମଚନ୍ଦ୍ର ଗ୍ରହଣ କରିବେ ନାହିଁ ? ଗୋମତୀ ନଦୀ ତୀରରେ ରାମଚନ୍ଦ୍ରଙ୍କର ଅଶ୍ୱମେଧ ଯଜ୍ଞ' ଅନୁଷ୍ଠାନରେ ଯୋଗଦେବା ପାଇଁ ଋଷି ବାଲ୍ମୀକି ସୀତାଙ୍କର ସମ୍ମତିରେ ଲବକୁଶଙ୍କୁ ସାଥିରେ ନେଇ ଯଜ୍ଞସ୍ଥଳରେ ଉପସ୍ଥିତ ହୋଇଛନ୍ତି । ଯଜ୍ଞସ୍ଥଳରେ ଲବକୁଶଙ୍କର ବୀଣାଜିଣା ସ୍ୱରରେ ରାମାୟଣ ଗାୟନ ଉପସ୍ଥିତ ସକଳଜନଙ୍କୁ ମୋହିତ କରିଦେଇଛି । ସେମାନଙ୍କର ପରିଚୟକୁ ନେଇ ରାମଙ୍କ ମନରେ ଆଲୋଡ଼ନ ସୃଷ୍ଟିହେବା, ରାଜଦତ୍ତ ସୁବର୍ଣ୍ଣ ଲବକୁଶ ଗ୍ରହଣ ନ କରିବା ଓ ସୀତାଙ୍କ ସ୍ମୃତିରେ ଶୋକାକୁଳ ରାମଚନ୍ଦ୍ରଙ୍କର ଅବସ୍ଥାକୁ ନେଇ ହିଁ ନବମ ସର୍ଗ ପରିକଳ୍ପିତ ହୋଇଛି ।

ଦଶମ ସର୍ଗରେ ସମ୍ପୂର୍ଣ୍ଣ ରାମାୟଣର ସଂକ୍ଷିପ୍ତ ବର୍ଣ୍ଣନା ସ୍ଥାନ ପାଇଛି ଓ ରାମାୟଣ ଶୁଣିବା ପାଇଁ ଅପୂର୍ବ ଜନସମାବେଶକୁ ଲକ୍ଷ୍ୟ କରି କୁହାଯାଇଛି—

କଳ କଳ ନାଦେ ପୂର୍ଣ୍ଣ ଗୋମତୀର ତୀର,
ମଧୁଚକ୍ରେ ଲୋଷ୍ଟ୍ରପାତ ସମାନ ଅସ୍ଥିର ।

ଏହି ବିପୁଳ ଜନସମାବେଶ ଓ ଅଯୋଧ୍ୟା ରାଜପ୍ରାସାଦର ଉପସ୍ଥିତ ସର୍ବଜନ ସମ୍ମୁଖରେ ଲବକୁଶ ସୁଲଳିତ କଣ୍ଠରେ ରାମଙ୍କର ବାଲ୍ୟକାଳ, ବନଯାତ୍ରା, ଅସୁରବଧ, ସୀତାବିବାହ, ପିତୃସତ୍ୟ ରକ୍ଷା, ବନବାସ, ସୀତାହରଣ, ସୁଗ୍ରୀବ

ସହ ମିଳନ, ରାବଣବଧ, ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ, ରାଜ୍ୟାଭିଷେକ ଓ ସୀତା ନିର୍ବାସନର କରୁଣ ସଙ୍ଗୀତ ଗାନ କଲେ । ଏହି ସମୟରେ—

ବଧୂ ଦୁଃଖେ ସନ୍ତାପିତ ଶ୍ରୀରାମ ଜନନୀ,
ଅଧୀର ହୋଇଣ ଶୋକେ ପଡ଼ିଲେ ଅବନୀ ।

ବଧୂର ଦୁଃଖ ଯନ୍ତ୍ରଣାରେ ସମଦୁଃଖୀ ରାମଜନନୀ କୌଶଲ୍ୟାଙ୍କର ମାନସିକ ସ୍ଥିତି ଉପର୍ଯ୍ୟୁକ୍ତ ପଂକ୍ତିରେ ଅଭିବ୍ୟକ୍ତ ହୋଇପାରିଛି । ଏକାଦଶ ସର୍ଗରେ ଲବକୁଶଙ୍କର ପରିଚୟ ସ୍ପଷ୍ଟ ହୋଇଯିବାରୁ କୌଶଲ୍ୟା ଅତି ବ୍ୟାକୁଳ ଭାବରେ ସୀତାଙ୍କୁ ପୁନଃଗ୍ରହଣ କରିବା ପାଇଁ ରାମଚନ୍ଦ୍ରଙ୍କୁ ଅନୁରୋଧ କରିଛନ୍ତି । କିନ୍ତୁ ପ୍ରଜାଙ୍କର ସମ୍ମତି ବିନା ସୀତାଙ୍କୁ ଗ୍ରହଣ କରିବା ଯେ ତାଙ୍କ ପକ୍ଷରେ ସମ୍ଭବ ନୁହେଁ ଏହା ରାମଚନ୍ଦ୍ର ବିଷଣ୍ଣ ଚିତ୍ତରେ ପ୍ରକାଶ କରିଛନ୍ତି । ଦ୍ୱାଦଶ ସର୍ଗରେ ସୀତାଙ୍କର ଯଜ୍ଞସ୍ଥଳକୁ ଆଗମନର କଥା ବର୍ଣ୍ଣନା କରାଯାଇଛି ।

ସମଗ୍ର କାବ୍ୟଟିରେ ତ୍ରୟୋଦଶ ସର୍ଗର ବର୍ଣ୍ଣନା ସବୁଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଯଜ୍ଞସ୍ଥଳରେ ସମଗ୍ର ଅଯୋଧ୍ୟାନଗରୀ ଯେପରି ଉପସ୍ଥିତ ରହିଛି । ମହାରାଜା ରାମଚନ୍ଦ୍ର ସ୍ୱ ଆସନରେ ଉପବେଶନ କରିଛନ୍ତି । ମୁନିଋଷି, ବ୍ରାହ୍ମଣଗଣ, ରାଜକର୍ମଚାରୀ ସମୂହ ସ୍ୱ ସ୍ଥାନରେ ଉପସ୍ଥିତ ରହିଛନ୍ତି ଓ ରହିଛନ୍ତି ରାମଚନ୍ଦ୍ରଙ୍କର ମାତାଗଣ, ଭ୍ରାତାଗଣ ଓ ପ୍ରଜାସକଳ । ଋଷି ବାଲ୍ମୀକି ଲବ-କୁଶଙ୍କର ପରିଚୟ ସର୍ବଜନ ସମ୍ମୁଖରେ ପ୍ରଦାନ କରି ସାଧ୍ୱୀ ସୀତାଙ୍କୁ ଗ୍ରହଣ କରିବାପାଇଁ ରାମଚନ୍ଦ୍ରଙ୍କୁ ଅନୁରୋଧ ଜଣାଇଛନ୍ତି—

"ଏକ କଣ୍ଠେ ଋଷି ରାଜମଣ୍ଡଳ
ଉଠି ହୋଇକରି ବଦ୍ଧ ଅଞ୍ଜଳି
ସମ୍ମତି ଜଣାଇଁ ରଘୁନନ୍ଦନ
ଜନତାରେ ନିବେଶିଲେ ନୟନ
ନିଷ୍କମ୍ପ ନୀରବ ପ୍ରାୟେ
ମଉନ ରହିଲା ବିଶାଳ ଜନତା
ଆକୁଳ ଅଯୋଧ୍ୟା ରାୟେ ।"

ପ୍ରଜାଙ୍କର ନୀରବତା ଲକ୍ଷ୍ୟ କରି ବ୍ୟାକୁଳ ମୁନି ସୀତାଙ୍କୁ ପୁଣିଥରେ ଅଗ୍ନିପରୀକ୍ଷା ଦେବାକୁ ନିବେଦନ କରିଛନ୍ତି । କିନ୍ତୁ ଏ ଅପମାନ ଥିଲା ସୀତାଙ୍କର ସହ୍ୟଶକ୍ତିର ବାହାରେ । ଅଗ୍ନିଶିଖା ତୁଲ୍ୟ ଶୁଦ୍ଧ ପବିତ୍ର ସୀତା ନିଜର ସତୀତ୍ୱର ପରୀକ୍ଷା ଦେବା ଅପେକ୍ଷା ପୃଥିବୀକୁ ତ୍ୟାଗ କରିଯିବା ଅଧିକ ସମୀଚୀନ ମନେକଲେ ।

ତାଙ୍କର ବ୍ୟାକୁଳ ପ୍ରାର୍ଥନାରେ ଦ୍ୱିଧାବିଭକ୍ତ ଧରଣୀ ଭିତରୁ ଦିବ୍ୟବିମାନରେ ବାହାରି ଆସିଲେ ପୃଥ୍ୱୀମାତା; ସୀତାଙ୍କୁ କୋଳାଗତ କରି ପୁନଃ ପ୍ରବେଶ କରିଗଲେ ପାତାଳ ଦେଶରେ । ଏହି ଅଭାବିତ ଘଟଣାରେ ବିମୂଢ଼ ହୋଇଗଲା ଜନତା, ସଂଜ୍ଞା ହରାଇ ଭୂମି ଉପରେ ପଡ଼ିଗଲେ ଅଯୋଧ୍ୟାର ନରପତି ସୀତାପ୍ରାଣବଲ୍ଲଭ ରାମଚନ୍ଦ୍ର ।

ଚତୁର୍ଦ୍ଦଶ ବା ଶେଷ ସର୍ଗରେ ବର୍ଣ୍ଣିତ ହୋଇଛି ରାମଚନ୍ଦ୍ରଙ୍କର ଅନ୍ତିମ ଜୀବନର ବିବରଣୀ । ସୀତାଙ୍କର ଅବର୍ତ୍ତମାନରେ ତାଙ୍କର ମନେହୋଇଛି ଅଯୋଧ୍ୟା ନଗରୀ ଯେପରି ଏକ ବିଷମ ଅରଣ୍ୟରେ ପରିଣତ ହୋଇଛି । ଏକ ବିରହତାପିତ ଦୁଃସହ ଜୀବନ ଅତିବାହିତ କରୁଥିବା ରାମଚନ୍ଦ୍ରଙ୍କର ଦୁଃଖ ଲାଘବ କରିବାପାଇଁ ସୀତା ତାଙ୍କୁ ନିଦ୍ରାରେ ଦର୍ଶନ ଦେଇ କହୁଛନ୍ତି—

ନୁହେଁ ମୁଁ ସାମାନ୍ୟ ନାରୀ ଅବା ବିଳାସିନୀ
ଯୁଗେ ଯୁଗେ ତୁମ୍ଭେ ତପୀ ମୁଁ ସହଧର୍ମିଣୀ ।

ସୀତାଙ୍କୁ ସ୍ୱପ୍ନରେ ଦର୍ଶନ କରିପାରିଥିଲେ ବି ରାମଙ୍କର ମନ କୌଣସି ଆଶ୍ୱାସନା ପାଇ ନାହିଁ । ତାଙ୍କର ଜାଗ୍ରତ ଓ ତନ୍ଦ୍ରା ଉଭୟ ଅବସ୍ଥାରେ ସୀତା-ଭାବନା ଏକମାତ୍ର ଧ୍ୟେୟ ହୋଇଛି । ଏହିପରି ଅବସ୍ଥାରେ ରାତ୍ରିର ସମାପନ ଓ ବନ୍ଦୀର ବନ୍ଦନାରେ ରାଜପୁରୀ ପୁନଃ କର୍ମଚଞ୍ଚଳ ହୋଇ ଉଠିଥିବାର ବର୍ଣ୍ଣନାରେ କାବ୍ୟସମାପ୍ତି ଘଟିଛି ।

ନନ୍ଦକିଶୋରଙ୍କର କବିଜୀବନର ଆଦ୍ୟ ଉନ୍ମେଷ କାଳରେ ରଚିତ ତିନୋଟି କାବ୍ୟ କୃଷ୍ଣକୁମାରୀ, ଶର୍ମିଷ୍ଠା ଓ ସୀତା ବନବାସ । ପ୍ରଥମ ଦୁଇଟି କାବ୍ୟର ବିଷୟବସ୍ତୁ ସେ ଇତିହାସ ଓ ମହାଭାରତରୁ ଗ୍ରହଣ କରିଥିବାବେଳେ ସୀତାବନବାସର କଥା ଉପାଦାନ ପାଇଁ ସେ ସମ୍ପୂର୍ଣ୍ଣ ନିର୍ଭର କରିଛନ୍ତି ରାମାୟଣ, ରଘୁବଂଶ ଓ ଉତ୍ତର ରାମଚରିତ ଉପରେ । ବିଷୟ ପରିକଳ୍ପନାରେ କବିଙ୍କର କୌଣସି ସ୍ୱକୀୟତା ନାହିଁ ବା ଚରିତ୍ରଚିତ୍ରଣ ଓ ଘଟଣା ପରିବେଷଣରେ କବିଙ୍କର କୌଣସି ଉଲ୍ଲେଖଯୋଗ୍ୟ ଅନ୍ତର୍ଦୃଷ୍ଟିର ପରିଚୟ ମଧ୍ୟ ମିଳେନାହିଁ । କାବ୍ୟର ଗଠନ ଶିଳ୍ପରେ ରାଧାନାଥୀୟ ପ୍ରଭାବ ସ୍ପଷ୍ଟ ଜଣାଯାଏ । ତଥାପି ନନ୍ଦକିଶୋରଙ୍କର ସ୍ୱଭାବସହଜ ରୀତି, ସରଳ ଶବ୍ଦ ସଂଯୋଜନା ଓ ସ୍ୱାଭାବିକ ପ୍ରକାଶଭଙ୍ଗୀ କାବ୍ୟଟିକୁ ସୁଖପାଠ୍ୟ କରିପାରିବା ସହିତ ଏହାର କାବ୍ୟମର୍ଯ୍ୟାଦାକୁ ମଧ୍ୟ ଅକ୍ଷୁଣ୍ଣ ରଖିପାରିଛି ।

❀

# ସିଦ୍ଧ କବି ଗୋପବନ୍ଧୁ

ବସ୍ତୁତଃ ଗୋପବନ୍ଧୁ ଥିଲେ ଜଣେ ଦରଦୀ କବି । ତାଙ୍କ କବି ପ୍ରତିଭାର ଆଦ୍ୟ ପରିଚୟପତ୍ର ଲିପିବଦ୍ଧ ହୋଇଥିଲା 'ଅବକାଶ' ନାମକ କବିତା ସଂକଳନରେ । କିନ୍ତୁ କର୍ମମୟ ଜୀବନ ଭିତରେ କବିତା ଲେଖିବାର ଅବସର ତାଙ୍କୁ ମିଳିବା ସହଜ ନ ଥିଲା । କବିତାଦେବୀଙ୍କର କରୁଣା ହୁଏତ ତାଙ୍କ ମନରେ ବାରମ୍ବାର କିଛି ଦିବ୍ୟ ଆଲୋଡ଼ନ ସୃଷ୍ଟି କରିଥିବ; କିନ୍ତୁ ସେ ଆଲୋଡ଼ନକୁ କବିତାରେ ରୂପ ଦେବା ପାଇଁ ସେ ସମୟ ପାଇ ନ ଥିଲେ । ତେଣୁ ହଜାରିବାଗ ଜେଲରେ କାଟିଥିବା ତାଙ୍କର କାରାଜୀବନ ବୀଣାପାଣିଙ୍କର ଆଶୀର୍ବାଦରେ ବାଣୀ ସାଧନାର ମହତ୍ତ୍ୱ କାଳରେ ପରିଣତ ହୋଇଗଲା ।

ବାହ୍ୟ ଜଗତରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ ଗୋପବନ୍ଧୁ ନିଜର ଅନୁଭବର ଜଗତରେ ବିଚରଣ କରିବାର ପ୍ରଥମ ସୁଯୋଗ ପାଇଲେ । କର୍ମ ଜଗତରୁ ଅପସରି ଯାଇ ସେ ଭାବ ଜଗତ ସହିତ ସଂବନ୍ଧିତ ହୋଇଗଲେ । ପ୍ରତ୍ୟେକ କବି ତାର ଜୀବନର ଅନୁଭୂତି ଓ ତା'ର ପାରିପାର୍ଶ୍ୱିକ ଅବସ୍ଥାକୁ କେନ୍ଦ୍ର କରି ତା'ର କାବ୍ୟ ଜଗତ ଗଢ଼ିଥାଏ । ଯେଉଁ କବିଜୀବନର ଅନୁଭୂତି ଯେତେ ଗଭୀର, ଯାହାର ଅଭିଜ୍ଞତା ଯେତେ ଅଧିକ ଓ ଉପଲବ୍ଧିର ସ୍ତରମାନ ଯାହାର ଯେତେ ବ୍ୟାପକ ସେମାନଙ୍କର ସୃଷ୍ଟି ସମ୍ପଦ ସେତିକି ମହାନ୍ ହୁଏ, ସେତିକି ହୃଦୟସ୍ପର୍ଶୀ ହୁଏ ।

ଗୋପବନ୍ଧୁଙ୍କ ଜୀବନରେ ଥିଲା ବହୁବିଧ ଅଭିଜ୍ଞତା । ମାତୃସ୍ନେହରୁ ବଂଚିତ ତାଙ୍କର ଶୈଶବ, ଯୌବନ କାଳରେ ପତ୍ନୀର ମୃତ୍ୟୁ ଜନିତ ନିଃସଙ୍ଗତା ଓ ପୁତ୍ରମାନଙ୍କର ଅକାଳ ମୃତ୍ୟୁ ତାଙ୍କ ହୃଦୟକୁ ବହୁ କରୁଣ ଅନୁଭବରେ ମଥିତ କରୁଥିଲା । ଏଣେ କର୍ମକ୍ଷେତ୍ରରେ ବନ ବିଦ୍ୟାଳୟ ସ୍ଥାପନ ଜନିତ ଉଦ୍ୟମ ଓ ତହିଁରେ ନାନା ପ୍ରକାର ବାଧାବିଘ୍ନ, ନିଜର ଓକିଲାତି ଓ ଜନସେବା ଜନିତ ଅଗଣିତ ଘଟଣା, ବନ୍ୟା ପ୍ରପୀଡ଼ିତ ଓ ଦୁର୍ଭିକ୍ଷଗ୍ରସ୍ତ ମଣିଷର ଅସହାୟ ଅବସ୍ଥା, ଉତ୍କଳ ସମ୍ମିଳନୀର ସଭାପତିତ୍ୱର ଦାୟିତ୍ୱ ଓ ସର୍ବୋପରି ଓଡ଼ିଶାରେ ଅସହ-ଯୋଗ ଆନ୍ଦୋଳନର ପ୍ରବକ୍ତା ଭାବରେ ଓ ସମସ୍ତ କର୍ମଧାରାର ନାୟକ ଭାବରେ

ତାଙ୍କର ଥିଲା ବହୁ ଅନୁଭୂତି । ସେ ସବୁ ତାଙ୍କ ହୃଦୟରେ ସଞ୍ଚିତ ହୋଇ ରହିଥିଲା । କାରାଗାରର ନିଃସଙ୍ଗ ନୀରବ ପରିବେଶରେ ଗୋପବନ୍ଧୁଙ୍କର ସମସ୍ତ ଅନୁଭବମାନ ତାଙ୍କର ହୃଦୟସ୍ଥ ସଂଜୀବ ରସରେ ସିକ୍ତ ହୋଇ କବିତା ଆକାରରେ ପ୍ରକାଶିତ ହୋଇଗଲା । ଏହି କବିତାଗୁଡ଼ିକ ପରେ 'କାରାକବିତା' ଓ 'ବନ୍ଦୀର ଆତ୍ମକଥା' ନାମରେ କବିତା ସଂକଳନ ରୂପରେ ପ୍ରକାଶ ପାଇଲା ।

ବନ୍ଦୀ ଜୀବନର ପ୍ରଥମ ଅବସ୍ଥାରେ ଗୋପବନ୍ଧୁଙ୍କ ମନରେ ଜାଗିଥିଲା କେତେକ ପ୍ରତିକ୍ରିୟା । ସେ ମନେ କରିଥିଲେ ଯେ ସେ ସର୍ବଦା ପବିତ୍ର ଭାବରେ ଜୀବନଯାପନ କରିଛନ୍ତି, ପରଧନ ହରଣ କରିନାହାନ୍ତି, କାହାରି ମନରେ ଆଘାତ ଦେବା ପରି କାର୍ଯ୍ୟ କରି ନାହାନ୍ତି, ପରର ନିନ୍ଦା କରି ନାହାନ୍ତି, କାହାରିକୁ ଈର୍ଷା କରି ନାହାନ୍ତି ଓ କୌଣସି ଜାତି ବା ଧର୍ମ ପ୍ରତି ବିଦ୍ୱେଷ ପ୍ରକାଶ କରି ନାହାନ୍ତି । ତଥାପି କେଉଁଥିପାଇଁ ସେ ହାତରେ ଲୁହାର ବେଡ଼ି ପିନ୍ଧି ବନ୍ଦୀ ଶାଳାରେ ରହିଲେ ?

ଏ ସମସ୍ତ ପ୍ରଶ୍ନର ଉତ୍ତର ସେ ପାଇଛନ୍ତି ନିଜ ଅନ୍ତର ଭିତରେ । ବନ୍ଦୀଶାଳାରେ ଥିବା ସତ୍ୟାଗ୍ରହୀମାନଙ୍କର ଚିନ୍ତା ଓ ମହାତ୍ମା ଗାନ୍ଧିଙ୍କର କାରାବାସର କଥା ସ୍ମରଣ କରି କବି ଲେଖିଥିଲେ—

ମୁଁ କି ଏକା ? ଶତ ଶତ ଭାରତ ସନ୍ତାନ
ଭୋଗୁଛନ୍ତି ଅକାତରେ କାରା ଅପମାନ ।
ଭୋଗିଛନ୍ତି ଅଦ୍ୟାପି କେତେ ଦାରୁଣ ଯାତନା ।
ତେଜି ଜୀବନର ସୁଖ ସମ୍ଭୋଗ ବାସନା ।
ଶୋଣିତ ପିପାସୁ ଘୋର ପାଶବ ସଭ୍ୟତା
ନାଶିବାକୁ ପ୍ରଚାରେ ଯେ ଅହିଂସା ବାରତା ।
ଜିଘାଂସା ବିଷାକ୍ତ ଜଗେ ଶାନ୍ତି ସୁଧା ପଥ
ଦେଖାଇବା ଜୀବନରେ ଯାର ମୁଖ୍ୟ ବ୍ରତ ;
ଶମ ଦମ ସତ୍ୟ ଶୁଦ୍ଧ ତ୍ୟାଗପୂତ ପ୍ରାଣ
ମାନବ-ଗୌରବ ଗାନ୍ଧି ଭାରତ ସନ୍ତାନ ।
ଦୀର୍ଘକାଳ ଲାଗି ଏବେ ବନ୍ଦୀ କାରାଗାରେ
କାହା ଦୋଷ ଏଥି ? କହ ଉଚିତ ବିଚାରେ ।

ପୁଣି କବି ସ୍ମରଣ କରିଛନ୍ତି ଗ୍ରୀସ୍‌ର ବିଶିଷ୍ଟ ଦାର୍ଶନିକ ସକ୍ରେଟିସ୍‌ଙ୍କୁ । ଯିଏ ସତ୍ୟଧର୍ମୀ ଥିବାରୁ ରାଜଦଣ୍ଡରେ ପୀଡ଼ିତ ହୋଇ କାରାବାସରେ ବିଷପାନ କରି

ମୃତ୍ୟୁବରଣ କରିଥିଲେ । ତାଙ୍କର ଶରୀରର ମୃତ୍ୟୁ ହୋଇଥିଲା ସତ୍ୟ କିନ୍ତୁ ତାଂକର ସତ୍ୟନିଷ୍ଠା ପୃଥିବୀବାସୀଙ୍କୁ ଅଭିଭୂତ କରିଥିଲା । ତେଣୁ କବି ସତ୍ୟର ଜୟ ସଂପର୍କରେ ଦୃଢ଼ ପ୍ରତ୍ୟୟ ପ୍ରକାଶ କରିଥିଲେ—

ଉଡ଼ୁଅଛି ଅବଶେଷେ ସତ୍ୟର ନିଶାଣ
ବାଜୁଅଛି ସ୍ୱାଧୀନତା ବିଜୟ ବିଷାଣ ।
ହୋଇଅଛି ରାଜଶକ୍ତି ମ୍ଳାନ କାଳଗ୍ରାସେ
ପାଉଅଛି ଅପ ଯଶ ଖାଲି ନିନ୍ଦାହାସେ ।

କାରାଜୀବନରେ ସ୍ଥାନ ପାଇଥିବା ତାଙ୍କର ସ୍ୱଦେଶପ୍ରୀତିର ପରମ ନିଦର୍ଶନ 'ବନ୍ଦୀର ସ୍ୱଦେଶ ଚିନ୍ତା' କବିତାଟି ଓଡ଼ିଆ ସାହିତ୍ୟର ସମ୍ପଦ । ନିଜ ମାଟିରୁ ବହୁ ଦୂରରେ ଥିବା କବିଙ୍କର ପ୍ରାଣ କଳ୍ପନାରେ ପରିକ୍ରମା କରି ଆସିଛି ବିଚ୍ଛିନ୍ନାଞ୍ଚଳ ମଞ୍ଜୁଷାରୁ ଚିଲିକା, ନୀଳାଚଳ, ସାକ୍ଷୀଗୋପାଳ, ଭୁବନେଶ୍ୱର, ଖଣ୍ଡଗିରି, ମହାନଦୀ, ବାରବାଟି, ଗଡ଼ଜାତ ଅଂଚଳ ଓ ସମ୍ବଲପୁର ଦେଇ ବିହାରର ହଜାରିବାଗ ଜେଲ୍ ଭିତରକୁ । କାରାକକ୍ଷର ବାହାରେ କିଛି ସମୟ ପାଇଁ ପଦଚାରଣା କରିବା ବେଳେ କବି ଅନୁଭବ କରିଥିଲେ ଦକ୍ଷିଣା ପବନର ମଧୁର ସ୍ପର୍ଶ । ଓଡ଼ିଶା ବାଟେ ଦେଇ ଆସିଥିବା ଏ ମଳୟ ପବନ ହୁଏତ ତାଙ୍କ ପାଇଁ ଆଣିଥିବ ଅନେକ ସମ୍ବାଦ । ସେ ତାକୁ ବ୍ୟାକୁଳ ହୋଇ ପଚାରିଛନ୍ତି—

ହେ ବସନ୍ତ ବାତ                ମୋ ଦ୍ୱାରେ ଆଘାତ
କରି ଭଲା ଆହା ଥରେ ସଦୟେ
ଦକ୍ଷିଣ ନଗର                କହ ସମାଚାର
ସିଞ୍ଚ ଶାନ୍ତି ସୁଧା କ୍ଷଣେ ହୃଦୟେ ।
ମୋର ପ୍ରିୟସ୍ଥଳୀ                କେତେ ନିଚ୍ଛାଳି
କରିଥିବେ ତବ ଆସିବା ବାଟେ
ଦେଇଥିବେ ପତ୍ର                କେତେକ ବରତା
ଶୁଣାଅ ମନ ମୋ ଅଛି ଉଚାଟେ ।

ନୀଳାଚଳ ନାଥ ଜଗନ୍ନାଥଙ୍କର କରୁଣା ବହନ କରି ଆସିଛି ମଳୟ । ତେଣୁ ତା'ର ସ୍ପର୍ଶରେ ପ୍ରଭୁଙ୍କର ଆଶୀର୍ବାଦର ଅନୁଭବ କରିଛନ୍ତି କବି । ପୁରୀରୁ ସାକ୍ଷୀଗୋପାଳ ଦେଇ ଆସିଥିବ ମଳୟ । ସାକ୍ଷୀଗୋପାଳଙ୍କର ବଂଶୀ ରନ୍ଧ୍ରରେ ଅସ୍ଫୁଟ ସ୍ୱନ ସୃଷ୍ଟି କରି, ରାଧିକାଙ୍କର ଅଂଚଳକୁ ଟିକେ ଚଂଚଳ କରି ଦୋହଲାଇ ଦେଇଥିବ ଶ୍ରୀକୃଷ୍ଣଙ୍କର ମଥାର ମୟୂର ଚୂଳ । କବି କଳ୍ପନାରେ ଦେଖି ପାରୁଛନ୍ତି

ସେହି ମନୋରମ ଦୃଶ୍ୟ । ତା'ପରେ କବିଙ୍କ ମନରେ ଆସିଛି ତାଙ୍କ ପ୍ରିୟ ତପଃ ଭୂମି ସତ୍ୟବାଦୀର କଥା । ବନ ବିଦ୍ୟାଳୟ, ତା'ର ଗୁରୁ ଓ ଶିକ୍ଷକ ଓ ତାଙ୍କର ସହକର୍ମୀମାନେ ତାଙ୍କ ପାଇଁ କୌଣସି ସମ୍ବାଦ ପଠାଇଛନ୍ତି କି ନାହିଁ ଜାଣିବା ପାଇଁ ସେ ଉତ୍କଣ୍ଠିତ ହୋଇ ପଚାରିଛନ୍ତି—

ମୋ ସଖା ସୋଦର ପ୍ରିୟ ପରିକର

ଅନ୍ତେବାସୀ ବନ୍ଧୁ ପଡ଼ୋଶୀ ଗଣ

ନିମ୍ନିତ କୁଶଳେ ବିରହ ବିକଳେ

ବିବଶ ବିଷଣ୍ଣ ନୁହେଁ ବଦନ ?

ସତ୍ୟବାଦୀ କୁଞ୍ଜ ସୁରଅନା ପୁଞ୍ଜ

ଜାଣିଥିଲେ ଏଥି ତବ ସଞ୍ଚର

ଅବଶ୍ୟ ମୋ ପାଇଁ ଥିବେ ପଠିଆଇ

ମୃଦୁ ମଧୁମୟ ଗନ୍ଧ ସମ୍ଭାର ।

ମଳୟର ସଂଚାର ଘଟିଥିବ ସତ୍ୟବାଦୀରୁ ଭୁବନେଶ୍ୱରକୁ । ଭୁବନେଶ୍ୱରର ଧ୍ୱଂସପ୍ରାପ୍ତ ଉତ୍କଳର ଶିଳ୍ପକଳା, ଖଣ୍ଡଗିରିରେ ବୀର ଖାରବେଳଙ୍କର କୀର୍ତ୍ତିରାଜି ଓ କଟକର ଐତିହାସିକ ଦୁର୍ଗ ବାରବାଟୀର ସ୍ମୃତି ହେମନ୍ତନ କରିଆରେ କବି ଅତୀତ ଉତ୍କଳର ଗୌରବଦୀପ୍ତ ଐତିହ୍ୟର ବର୍ଣ୍ଣନା କରିଛନ୍ତି । ଦେଶ ଓ ଜାତିର ସ୍ୱାଧୀନତା ରକ୍ଷା ଲାଗି ଅସଂଖ୍ୟ ସୈନିକର ଆତ୍ମଦାନରେ ବାରବାଟୀର ଧୂଳିକଣିକା ପୂତ ପବିତ୍ର ହୋଇଥିବାର କବି ବର୍ଣ୍ଣନା କରିଛନ୍ତି । ପୁଣି ଗଡ଼ଜାତ ଅଞ୍ଚଳର ଅତ୍ୟାଚାର ଶାସନରେ ପୀଡ଼ିତ ପ୍ରଜାକୁଳର ନିର୍ଯ୍ୟାତନାର କାହାଣୀର ସ୍ମୃତି ତାଙ୍କ ହୃଦୟକୁ ଦୁଃଖରେ ବିଗଳିତ କରି ପକାଇଛି । କାରଣ ଗୋପବନ୍ଧୁ ଗଡ଼ଜାତ ଅଞ୍ଚଳର ଲୋକଙ୍କର ଦୁଃଖଦୁର୍ଦ୍ଦଶା ଓ ରାଜାମାନଙ୍କର ଅତ୍ୟାଚାରର କାହାଣୀ ସମାଜରେ ବହୁବାର ପ୍ରକାଶ କରି ଜନସଚେତନତା ସୃଷ୍ଟିର ପ୍ରୟାସ କରିଥିଲେ । ସେଇ ଦୁଃଖୀ ମଣିଷମାନଙ୍କର କଥା ମନେପକାଇ କବି ବ୍ୟାକୁଳ ଭାବରେ ମଳୟକୁ ପଚାରିଛନ୍ତି—

ଅତ୍ୟାଚାର ମୁଲକ ପ୍ରଜା ସୁଖ ଦୁଃଖ

କି ଦେଖି ଆସିଛ କହ ପବନ

ସହି ନାନା ଦଣ୍ଡ ଉଦଣ୍ଡ କି ଚଣ୍ଡ

ଆସିଅଛି କିବା ନବ ଚେତନ ?

ସହି ଖରବର୍ଷା ଦୁଃଖେ ପଡ଼ି ଚଷା

ଆପଣା କ୍ଷେତରେ କରେ କି ଚାଷ ?

ନୋହି ଭୟଭୀତ                    ହେଲ ଦାଗସୂତ
ଖାଏ କି ସ୍ୱଚ୍ଛନ୍ଦେ ଅନ୍ନ ଗରାସ ?

ସମ୍ବଲପୁରର ନରନାରୀ ଗ୍ରୀଷ୍ମର ତାପରେ କଷ୍ଟ ପାଉଥିବା ବେଳେ ମଳୟର ସ୍ପର୍ଶ ସେମାନଙ୍କ ଦେହ ମନକୁ ଶୀତଳ କରିଥିବ । ଗୋପବନ୍ଧୁଙ୍କର ବିଶ୍ୱାସ ଥିଲା ତାଙ୍କର ପ୍ରିୟ ସମ୍ବଲପୁରର ନାରୀ ପୁରୁଷମାନେ ସ୍ୱାଧୀନଚେତା । ନିଜର ପରମ୍ପରା ରକ୍ଷା କରିବା ଦିଗରେ ଏମାନେ ସର୍ବଦା ସଚେତନ । ତେଣୁ ସ୍ୱାଧୀନତା ସଂଗ୍ରାମରେ ଏହିମାନେ ହିଁ ନିର୍ଭୀକ ସୈନିକ ଭାବରେ ଅଗେଇ ଆସିବେ । ସମଗ୍ର ଉତ୍କଳ ମାଟିର ସ୍ମୃତିଚାରଣରେ କବି ପାଇଛନ୍ତି ଆତ୍ମତୃପ୍ତି ।

ଗୋପବନ୍ଧୁ ବନ୍ଦୀଶାଳାରେ ଗୋଟିଏ ଚିନ୍ତାରେ ଆଚ୍ଛନ୍ନ ଥିଲେ । ତାହା ଥିଲା ସ୍ୱଦେଶ ଚିନ୍ତା । ତାଙ୍କର ଅନୁପସ୍ଥିତିରେ ସ୍ୱରାଜ୍ୟ ଆନ୍ଦୋଳନକୁ ତାଙ୍କର ସମଧର୍ମୀ ସହକର୍ମୀମାନେ ଓ ଜନସାଧାରଣ ସଜୀବ ରଖିପାରିଛନ୍ତି ତ ! ସେ ଜାଣନ୍ତି, ସେ ଥିଲେ ଜାତୀୟ ସଂଗ୍ରାମର ଅଗ୍ରଗ ସେନାପତି । ତାଙ୍କର ନେତୃତ୍ୱରେ ଜନସାଧାରଣ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ଜାତୀୟସ୍ରୋତରେ ନିଜକୁ ମିଶେଇ ଦେଇଥିଲେ । ତାଙ୍କର ଆହ୍ୱାନରେ ସ୍କୁଲ କଲେଜ ଛାଡ଼ି ସ୍ୱେଚ୍ଛାସେବୀ ଭାବରେ କାର୍ଯ୍ୟ କରିବା ପାଇଁ ଆଗେଇ ଆସିଥିଲେ ଦେଶର ଅଗଣିତ ଛାତ୍ର ଓ ଯୁବକ । ତେଣୁ ତାଙ୍କର କାରାବାସ ସେମାନଙ୍କୁ ମର୍ମାନ୍ତକ ଦୁଃଖ ଦେଉଥିବ ଭାବି ସେ ବନ୍ଦୀର ଆତ୍ମକଥା କବିତାରେ ସେମାନଙ୍କୁ ସାନ୍ତ୍ୱନା ଦେଇଛନ୍ତି ଓ ସାହସ ଦେବାକୁ ଯାଇ ଦୃପ୍ତ କଣ୍ଠରେ ଉଦ୍‌ବୋଧିତ କରିଛନ୍ତି—

କାତରତା ବିନା କାପୁରୁଷ ପଣ
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜୀବନେ
ନ ମରେ ସେ କେବେ ମରଣ ଆତଙ୍କେ ।

ଗୋପବନ୍ଧୁ ବିଶ୍ୱାସ କରୁଥିଲେ ଆଧ୍ୟାତ୍ମିକ ଶକ୍ତି ହିଁ ଶ୍ରେଷ୍ଠଶକ୍ତି । ଅସ୍ତ୍ର, ଶସ୍ତ୍ର, ତୋପ, ରଥ ଓ ହାତୀ ଘୋଡ଼ା ସାହାଯ୍ୟରେ ନିଜକୁ ଶକ୍ତିମାନ ମନେକରୁଥିବା ଅହଂକାରୀ ମଣିଷର ପଶୁଶକ୍ତିକୁ ଆତ୍ମବଳରେ ଜୟ କରାଯାଇ ପାରିବ । ତେଣୁ ଏହି ଅହିଂସା ସଂଗ୍ରାମରେ କାରାଦଣ୍ଡ ଓ ମୃତ୍ୟୁଦଣ୍ଡ ଭୋଗିବାକୁ ହୋଇଥାଏ । ସେଥିପାଇଁ ଭୟ ପାଇ ସଂଗ୍ରାମରୁ ଓହରିଯିବା ପ୍ରକୃତ ଦେଶପ୍ରେମି ପକ୍ଷରେ ସମ୍ଭବ ନୁହେଁ । ତେଣୁ ଋଷିର ଉଦାର ହୃଦୟରେ କବି ଏକ ଦିବ୍ୟ ଘୋଷଣା କରିଛନ୍ତି—

ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ ।
ସ୍ୱାଧୀନତା ପଥେ ଉଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ନିଜର ପୁଣ୍ୟ ଜନ୍ମମାଟି, ପୁଣ୍ୟ ଦେବାଳୟର ଉଦ୍ଧାର ପାଇଁ ମଣିଷ ନିଜର ଶରୀର ଦାନ କଲେ ତା'ର ଜନ୍ମ ସଫଳ ହୁଏ । ତେଣୁ ଉତ୍କଳବାସୀମାନେ ଏ ଦିଗରେ କୁଣ୍ଠା ପ୍ରକାଶ ନ କରି ବିଶ୍ୱଜନ ପାଇଁ ହୃଦୟରେ ମମତା ରଖି ଜାତୀୟ କାର୍ଯ୍ୟ ନିଷ୍ଠାପର ଭାବରେ କରିଚାଲନ୍ତୁ । କବି ଉତ୍କଳୀୟଙ୍କୁ ମନେପକାଇ ଦେଇଛନ୍ତି—

"ମୋ' ଭାଇ ଭଉଣୀଏ ଉତ୍କଳବାସି,
ସ୍ୱରାଜ୍ୟ ସାଧନେ ନ ହୁଅ ଉଦାସୀ ।
ସେ ଦୀକ୍ଷାରେ ଥରେ କରିଛ ବିଶ୍ୱାସ,
ନ ଛାଡ଼ ତା' ଥିବା ଯାଏଁକି ନିଃଶ୍ୱାସ ।
ସ୍ୱରାଜ୍ୟ ମାନବ ଜନ୍ମ ଅଧିକାର,
ଏହା ବିନେ ଦେଶ ହୁଏ ଛାରଖାର ।

ଭାରତୀୟ ଜୀବନଧାରାରେ ରାଜା ଓ ପ୍ରଜାର ସଂପର୍କ ଥିଲା ପିତା ଓ ପୁତ୍ରର ସମ୍ପର୍କ । ରାଜା ଓ ପ୍ରଜାମାନଙ୍କର ସୁଖସମୃଦ୍ଧି ଲାଗି ନିଜର ସକଳ ସୁଖସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାର ବହୁ ଦୃଷ୍ଟାନ୍ତ ରହିଛି । ପ୍ରଜାରଞ୍ଜନ ଲାଗି ରାଜାମାନେ ସର୍ବଦା ସଚେତନ ରହୁଥିଲେ । ଭୟ ଦେଖାଇ ଶାସନ କରିବାର ନୀତି ଏ ଦେଶରେ ପ୍ରଚଳିତ ନ ଥିଲା । କିନ୍ତୁ ଇଂରେଜମାନେ ଏ ଦେଶକୁ ଅଧିକାର କରି ଶାସନ କରିବା ନ୍ୟାୟରେ ବହୁପ୍ରକାର ଅନୀତି କରିଚାଲିଛନ୍ତି । ପ୍ରଜାରଞ୍ଜନ ପରିବର୍ତ୍ତେ ପ୍ରଜାଶୋଷଣ ସେମାନଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରୁଛନ୍ତି । ତେଣୁ ସେମାନଙ୍କୁ ଏ ମାଟିରୁ ବିତାଡ଼ିତ କରି ସ୍ୱରାଜ୍ୟ ପ୍ରତିଷ୍ଠା ପାଇଁ ଗାନ୍ଧିଜୀଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନରେ ଦେଶବାସୀ ମିଳିତ ହୋଇଛନ୍ତି । ଇଂରେଜ ସରକାର ଆନ୍ଦୋଳନକୁ ଦବାଇ ଦେବାପାଇଁ ଭାରତର ପ୍ରତି ଅଞ୍ଚଳର ଜନପ୍ରିୟ ନେତାମାନଙ୍କୁ କାରାଗାରରେ ଆବଦ୍ଧ କରିଛି । କିନ୍ତୁ ନେତାଙ୍କୁ ଅପେକ୍ଷା କରିବାର ସମୟ ଏ ନୁହେଁ । ଗାନ୍ଧିଜୀଙ୍କର ଆଦର୍ଶ ଓ ତାଙ୍କର ପ୍ରଦର୍ଶିତ ନୀତିକୁ ଅନୁସରଣ କରିବା ହିଁ ଏକମାତ୍ର ଲକ୍ଷ୍ୟ ହେବା ଉଚିତ ।

ବିଶେଷ କରି ଉତ୍କଳବାସୀଙ୍କ ପାଇଁ କୌଣସି ମଣିଷ ନେତାର ପ୍ରୟୋଜନ ନାହିଁ ବୋଲି ଗୋପବନ୍ଧୁ ବିଶ୍ୱାସ କରୁଥିଲେ । ଏ ରାଜ୍ୟର ଗଜପତି ରାଜା ସେବକ ଭାବରେ ପରିଚିତ ହୁଅନ୍ତି କାରଣ ଉତ୍କଳର ପ୍ରକୃତ ରାଜା ହେଉଛନ୍ତି ସ୍ୱୟଂ ଜଗନ୍ନାଥ । ତେଣୁ ଉତ୍କଳବାସୀଙ୍କର ମନୋବଳ ଦୃଢ଼ ରଖିବାପାଇଁ କବି କହିଥିଲେ—

କର କି ଭାବନା କାଣ୍ଡାରି ବିହୁନେ
ଚଳିବ ସ୍ୱରାଜ୍ୟ-ବୋଇତ କେସନେ ?
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।
ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

× × ×

ମାତ୍ର ବୁଝ ଭାଇ, ହେଲେ ଧର୍ମବଳ
ନବ ତେଜେ ପୁଣି ଜାଗିବ ଉତ୍କଳ ।
କ୍ଷୀଣ ହେଲେ କେବେ ଧାର୍ମିକ ଶକତି
ଆସନ୍ତି ଓହ୍ଲାଇ ପ୍ରଭୁ ବିଶ୍ୱପତି,
ନିତ୍ୟ ଧାମୁ ଛାଡ଼ି ରତ୍ନ ସିଂହାସନ
କରିବାକୁ ଧର୍ମ ପକ୍ଷ ସମର୍ଥନ ।
ଏ ବିଶ୍ୱାସେ ମନ ଦୃଢ଼କର ଭାଇ
ନେତାର ଅଭାବ ଲାଗି ଭାବନାହିଁ ।
କର୍ମଭୂମେ ଜଏ ନେତା କେବା ମିତ
ସରବେ ନିମିତ୍ତ ବିଧି ନିୟୋଜିତ ।

ଭାରତୀୟ ମହାପ୍ରାଣତା ନେଇ କବି ଭାରତବର୍ଷର ମହିମା ଗାନ କରିଛନ୍ତି । ଭାରତବର୍ଷର ଯେକୌଣସି ଶିଳାଖଣ୍ଡ ତାଙ୍କ ପାଇଁ ପବିତ୍ର ଶାଳ-ଗ୍ରାମ, ସକଳ ପ୍ରକାର ଆହାର କୈବଲ୍ୟତୁଲ୍ୟ, ସବୁ ଜଳ ପଞ୍ଚତୀର୍ଥର ପବିତ୍ର ଜଳ । ଏଠି ଶ୍ମଶାନ ସ୍ୱର୍ଗର ଦ୍ୱାର ସଦୃଶ ଓ ପ୍ରତି ବୃକ୍ଷ ଅଭୀଷ୍ଟପୂରଣକାରୀ କଳ୍ପ-ବଟତୁଲ୍ୟ । ତେଣୁ ଏହି ପୁଣ୍ୟ ଧାମକୁ ବିଦେଶୀ କବଳରୁ ମୁକ୍ତ କରିବା ହିଁ ପ୍ରତ୍ୟେକ ଦେଶବାସୀର ଏକମାତ୍ର ଧ୍ୟେୟ ହେବା ଉଚିତ ।

ଗୋପବନ୍ଧୁ କାରାଗାରରେ ରହି ମଧ୍ୟ ଉତ୍କଳର ସମାଚାର ପାଉଥିଲେ । ଉତ୍କଳବାସୀଙ୍କର ଅସହଯୋଗ ଆନ୍ଦୋଳନକୁ ଭାଙ୍ଗିଦେବା ପାଇଁ ଇଂରେଜ ସରକାର ସବୁ ପ୍ରକାର କୂଟନୀତିର ପ୍ରୟୋଗ କରୁଥିଲେ । ଦରିଦ୍ର ଲୋକଙ୍କର ଆର୍ଥିକ ସ୍ଥିତିକୁ ଆହୁରି ବିପନ୍ନ କରିଦେଇ ସେମାନଙ୍କର ମନୋବଳ ଭାଙ୍ଗିଦେବାକୁ ସରକାର ଷଡ଼ଯନ୍ତ୍ର କରୁଥିଲେ । ଗାଁ ଗଣ୍ଡାରେ ଲୋକଙ୍କ ଅଜ୍ଞାତରେ ସେମାନଙ୍କ ଗୃହରେ ନିଆଁ ଲଗାଇ ପୋଡ଼ି ଦିଆ ଯାଉଥିଲା । କୃଷି କ୍ଷେତକୁ ନଷ୍ଟ କରି କୃଷକର ମାସ ମାସର ପରିଶ୍ରମକୁ ବିଫଳ କରିଦିଆଯାଉଥିଲା । ବିନା କାରଣରେ ଲୋକମାନଙ୍କୁ ଧରିନେଇ ପ୍ରହାର କରିବା, ଅର୍ଥ ଦଣ୍ଡ ଦେବା ଓ ବିନା ବିଚାରରେ ହାଜତରେ ନେଇ ରଖିବା ରାଜ୍ୟରେ ସାଧାରଣ ଘଟଣାରେ ପରିଣତ ହୋଇ ଯାଇଥିଲା । ଏହି ସବୁ ବିପର୍ଯ୍ୟୟକୁ ସଂଭାଳି ନେଇ ସାହସର ସହିତ ଆନ୍ଦୋଳନକୁ ଆଗେଇ ନେବାକୁ ଗୋପବନ୍ଧୁ ଆହ୍ୱାନ ଦେଇଥିଲେ । ସେ କହିଥିଲେ ବିପଦ ହିଁ ମଣିଷକୁ ପରଖିବା ପାଇଁ କଷଟି ପଥର ପରି କାମ କରେ । ଗୃହ ଦାହ ପଛରେ ବିଧାତାର ଇଙ୍ଗିତକୁ ବୁଝିବାକୁ ହେବ । ବାହ୍ୟ ଅଗ୍ନି ଲିଭିଯିବ ଖୁବ୍ ଶୀଘ୍ର । କିନ୍ତୁ ନିଜ ଭିତରର ଅଗ୍ନିକୁ ନିର୍ବାପିତ ହେବାକୁ ଦିଆଯିବ ନାହିଁ । ସତ୍ୟ ବହ୍ନି ହୃଦୟର ସମସ୍ତ ମଳିନତାକୁ ଦଗ୍ଧ କରି ଆତ୍ମସତ୍ତାକୁ ଶୁଦ୍ଧ ସୁବର୍ଣ୍ଣ ପରି ତେଜମୟ କରିବ । ଗୃହ ନାଶ ହେଉ ବା କାରାବାସ ହେଉ, କୌଣସି ଅବସ୍ଥାରେ ମଧ୍ୟ ଈଶ୍ୱରଙ୍କର ମହାନ୍ ଉଦ୍ଦେଶ୍ୟ ଉପରେ ମଣିଷର ବିଶ୍ୱାସ ତୁଟି ନ ଯାଉ । ସତ୍ୟ ପ୍ରତି ଅବିଚଳ ନିଷ୍ଠା ରଖି ଉତ୍କଳବାସୀ ଅହିଂସା ମାର୍ଗରେ ସ୍ୱରାଜ୍ୟ ହାସଲ କରିବା ପାଇଁ ତାଙ୍କର ସାଧନା ବଜାୟ ରଖିବା ପାଇଁ ଗୋପବନ୍ଧୁ ଉତ୍ସାହ ଦେଇଥିଲେ ।

ଗୋପବନ୍ଧୁଙ୍କର ପ୍ରଥମ କବିତା ସଂକଳନ ଅବକାଶଚିନ୍ତାରେ ପ୍ରକୃତି ଚିତ୍ର, ଅତୀତ ଗୌରବ ଗାନ, ଐତିହ୍ୟପ୍ରୀତି ଓ ନିଜ ଜୀବନର ଅନୁଭୂତିମାନ ପ୍ରକାଶ ପାଇବା ସଙ୍ଗେ ଓଡ଼ିଶାର କେତେକ ବରପୁତ୍ରଙ୍କ ସମ୍ପର୍କରେ ଲେଖାମାନ ରଚିତ ହୋଇଥିଲା । ଓଡ଼ିଶାର ଆଦିକବି ସାରଳା ଦାସ, ଦାଣ୍ଡୀରାମାୟଣର ରଚୟିତା ବଳରାମ ଦାସ, ଭାଗବତ ପ୍ରଣେତା ଜଗନ୍ନାଥ ଦାସ, କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, ଜ୍ୟୋତିର୍ବିଦ ସାମନ୍ତ ଚନ୍ଦ୍ରଶେଖର, ଦୁଇ ବିଶିଷ୍ଟ ସ୍ୱାଧୀନଚେତା ପରାକ୍ରମୀ ଗଜପତି ଅନଙ୍ଗଭୀମ ଦେବ ଓ ପୁରୁଷୋତ୍ତମ ଦେବ, ସ୍ୱଦେଶପ୍ରେମୀ ଶମ୍ଭୁକର ବାଜପେୟୀ ଓ ସଂସ୍କାରକ ହରିହର ଶର୍ମାଙ୍କ ବ୍ୟକ୍ତିତ୍ୱରେ ମୁଗ୍ଧ ଗୋପବନ୍ଧୁ ସେମାନଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ଜଣାଇ କବିତା ରଚନା କରି-

ଥିଲେ । ସେମାନଙ୍କର ଗୁଣକୀର୍ତ୍ତନ କରି ଜଡ଼ତାଗ୍ରସ୍ତ ଉତ୍କଳୀୟଙ୍କ ପ୍ରାଣରେ ନବ ଉନ୍ମାଦନା ସୃଷ୍ଟିର ପ୍ରୟାସ କରିଥିଲେ ।

କିନ୍ତୁ ବନ୍ଦୀଶାଳାରେ ଏକାକୀ କବି ଦିନ ରାତି ସ୍ୱଦେଶ ଚିନ୍ତାରେ ଆଚ୍ଛନ୍ନ ଥିବାବେଳେ ଓଡ଼ିଶାର ଏକ ଅତି ଜନପ୍ରିୟ କିମ୍ବଦନ୍ତୀର ନାୟକ ଧର୍ମ-ପଦର କଥା ବାରମ୍ବାର ସ୍ମରଣ କରିଛନ୍ତି । ଓଡ଼ିଶାରେ ପ୍ରଚଳିତ 'ବାରଶ ବଢ଼େଇରେ ଦାୟ କି ପୁଅରେ ଦାୟ' ଜନଶ୍ରୁତିଟି କୋଣାର୍କ ମନ୍ଦିର ନିର୍ମାଣକୁ କେନ୍ଦ୍ର କରି ସୃଷ୍ଟି ହୋଇଥିଲା । ମନ୍ଦିରର ଚୂଡ଼ା ନ ମାରି ପାରି ଶିଳ୍ପୀକୁଳ ହତାଶ ହୋଇ ରହିଥିବାବେଳେ ବାରବର୍ଷର ବାଳୁତ ପୁଅ ଧର୍ମପଦ ସେ କାର୍ଯ୍ୟ ନିର୍ବାହ କରିଛି । କିନ୍ତୁ ରାଜା ଯଦି ଏ ରହସ୍ୟ ଜାଣିଯିବେ ତେବେ ନିଶ୍ଚିତ ବାରଶହ ବଢ଼େଇଙ୍କର ମୁଣ୍ଡକାଟ ଆଦେଶ ଦେଇ ପାରନ୍ତି । ତେଣୁ ସେମାନେ ଧର୍ମପଦର ମୃତ୍ୟୁ ବିଧାନର ଚେଷ୍ଟା କରିଥିଲେ ଓ ଏଥିପାଇଁ ଧର୍ମପଦର ପିତା ବିଶୁ ମହାରଣାଙ୍କୁ ମଧ୍ୟ ପ୍ରବର୍ତ୍ତାଉଥିଲେ । କିନ୍ତୁ ଗୋପବନ୍ଧୁଙ୍କର ଧର୍ମପଦ ଜାତିଭାଇଙ୍କର ସମ୍ମାନରକ୍ଷା ପାଇଁ ନିଜେ ମନ୍ଦିର ଉପରୁ ସମୁଦ୍ରକୁ ଡେଇଁ ପଡ଼ିଛି ।

ଏହି ଗାଥା କାବ୍ୟଟିର ଭୂମିକାରେ କବି ଉଲ୍ଲେଖ କରିଛନ୍ତି, "ବାଲ୍ୟ-କାଳରୁ କବି ହେବାର ବାସନା ମୋର ବଳବତୀ ଥିଲା । ବାଲ୍ୟ ସହଜ ଉଦ୍ୟମରେ ମଧ୍ୟ ସେଆଡ଼େ କିଛି କରିଥିଲି । ମାତ୍ର ଘଟଣା ତରଙ୍ଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ଚିରଦିନ ପାଇଁ ସେ ଆଶା ମଉଳିଛି । ଧର୍ମପଦ ସେ ଆଶାର ଅଙ୍କୁର ନୁହେଁ; ଏହା ବିକ୍ଷିପ୍ତ ହୃଦୟର ସାମୟିକ ସ୍ପନ୍ଦନ ମାତ୍ର । ବନ୍ଦୀଶାଳାର ନିର୍ଜନ ପ୍ରକୋଷ୍ଠରେ ଏକ ସନ୍ଧ୍ୟାରୁ ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଏକାକୀ ଆବଦ୍ଧ ହୋଇ ଅନେକ ସମୟରେ ଉନ୍ନିଦ୍ରାବସ୍ଥାରେ ଯେ ସବୁ ଚିନ୍ତା ମନକୁ ଆସୁଥିଲା 'ଧର୍ମପଦ' ତହିଁରୁ ଅନ୍ୟତମ । ଦେଶ ଓ ଦଶ ନିମନ୍ତେ ଆତ୍ମୋତ୍ସର୍ଗରେ କି ସୁଖ ଓ ଗୌରବ ଅଛି, ଉତ୍କଳର ଚିରକଥିତ ଏହି କିମ୍ବଦନ୍ତୀରେ ତାହା ସୁସ୍ପଷ୍ଟ ବିବୃତ ହୋଇଅଛି ।

ଜାତି ପାଇଁ ଆତ୍ମବଳୀ ଦେଇଥିବା ଏହି ଧର୍ମପଦ ଚରିତ୍ରଟି ଉତ୍କଳୀୟଙ୍କ ନିକଟରେ ଆଦର୍ଶ ରୂପେ ଗୃହୀତ ହେଉବୋଲି କବି ଚାହିଁଥିଲେ । କାରଣ ଧର୍ମପଦ ମନ୍ଦିରର ଚୂଳ ମାରିବା କାର୍ଯ୍ୟ ଶେଷ କରିବା ପରେ ବାରଶ ବଢ଼େଇଙ୍କ ମୁହଁରେ ଦେଖିଥିଲା ଭୟ ଓ ଉଦ୍‌ବେଗର ଚିହ୍ନ । ସେ ସମସ୍ତଙ୍କୁ ଏ ବିଷୟ ଗୋପନ ରଖିବାର ପ୍ରତିଶ୍ରୁତି ଦେଇ ଆଶ୍ୱସ୍ତ କରିଥିଲା । କିନ୍ତୁ ତା'ର ପିତା ବିଶୁ ମହାରଣା ଧର୍ମପଦର ଏ ପ୍ରତିଶ୍ରୁତି ଅନ୍ତରାଳରେ ଅନୁଭବ କରି ପାରିଥିଲା ପୁତ୍ରର

ଆତ୍ମଦାନର ଅଭିଳାଷକୁ । ତେଣୁ ପୁଅକୁ ସେ କୌଣସି ପ୍ରକାରେ ବଞ୍ଚାଇ ରଖିବାକୁ ଚାହୁଁ ଥିଲେ । ଧର୍ମପଦ ନିଜର ପିତାକୁ ଆଶ୍ୱସ୍ତ କରିବାକୁ ଯାଇ ଯାହା କହିଥିଲେ ତାହାହିଁ ଥିଲା ଗୋପବନ୍ଧୁଙ୍କର ଅନ୍ତରର ବାଣୀ—

କାପୁରୁଷ ପରି ମରିବା ଜଗତେ
ନୁହେ ନର ପୌରୁଷ
ପରହିତ ସାଧି ମରେ ଯେ ମର୍ତ୍ତ୍ୟରେ
ସେହି ଏକା ସୁପୁରୁଷ ।
ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏଁ ନର କର୍ମ ଏକା ତାର
ଜୀବନର ମାନଦଣ୍ଡ ।
ମୁହୂର୍ତ୍ତେ ମାତର ଉଜ୍ଜ୍ୱଳ ପ୍ରଖର
ଶିଖା ଟେକି ହୁତାଶନ,
ଜଳି ଯେବେ କରେ ଆଲୋକ ଉତ୍ତାପ
ଚଉଦିଗେ ବିତରଣ
ଲିଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା' ଆଦର ଯଶ
କି ଲୋଡ଼ା ତହିଁରେ ରହେ ଯେ ମର୍ତ୍ତ୍ୟରେ
କୁହୁଳି ସହସ୍ର ବର୍ଷ ?

ଗୋପବନ୍ଧୁଙ୍କର ଜୀବନାଦର୍ଶ ଥିଲା ଦେଶ ଓ ଦଶର ମଙ୍ଗଳ ଲାଗି ବ୍ୟକ୍ତି-ଗତ ଆନନ୍ଦ ଓ ସୁଖ ସମ୍ଭୋଗକୁ ପରିତ୍ୟାଗ କରି ଆବଶ୍ୟକ ସ୍ଥଳେ ହସି ହସି ଆତ୍ମଦାନ ଦେବା । ଧର୍ମପଦ ପରି କଠୋପନିଷଦରେ ବର୍ଣ୍ଣିତ ନଚିକେତାଙ୍କର ସାଂସାରିକ ସମସ୍ତ ପ୍ରକାର ସୁଖଭୋଗକୁ ପ୍ରତ୍ୟାଖ୍ୟାନ ଓ ବ୍ରହ୍ମଜ୍ଞାନ ପାଇଁ ଅଭୀପ୍ସା ଗୋପବନ୍ଧୁଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ତେଣୁ ସେ ନଚିକେତା ଉପାଖ୍ୟାନ ରଚନା କରି ସେହି ପ୍ରସଙ୍ଗରେ ମଧ୍ୟ ଗୋ-ଜାତିର ସେବା ପାଇଁ ଉପଦେଶ ଦେବା ସଙ୍ଗେ ଗୋଜାତି ପାଇଁ ନିଜ ପ୍ରାଣର ସମସ୍ତ ଶ୍ରଦ୍ଧା, ମମତା ଓ ସମ୍ବେଦନା ଢାଳି ଦେଇଛନ୍ତି ।

ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ମୂଳ ଭିତ୍ତି ହେଲା ତାଙ୍କର ପ୍ରେମିକତା । ଏହି ପ୍ରେମିକତା ତାଙ୍କର ଏକ ଚାରିତ୍ରିକ ବିଭବ ମାତ୍ର ନୁହେଁ—ଏହା ତାଙ୍କର

ବ୍ୟକ୍ତିତ୍ୱର ସମସ୍ତ ବିକାଶ ସାଧନରେ ମୂଳବୀଜ ସଦୃଶ । ପ୍ରଚଣ୍ଡ ଅଭିଳାଷ, ଉଚ୍ଚା-
କାଂକ୍ଷାର ବଶବର୍ତ୍ତୀ ହୋଇ ଜାତି ଓ ଦେଶର ନେତୃତ୍ୱ ନେବା ପାଇଁ ଆଗେଇ
ଆସିଥିବା ବିଶିଷ୍ଟ ଜନନାୟକମାନଙ୍କର ଦୃଷ୍ଟାନ୍ତ ଇତିହାସରେ ଲିପିବଦ୍ଧ ହୋଇ-
ରହିଛି । କିନ୍ତୁ ଗୋପବନ୍ଧୁ ଜାତିର ଦୁର୍ଦ୍ଦିନରେ ଏ ଜାତିକୁ ଉଦ୍ଧାର କରିବା
ନିମନ୍ତେ ନିଜର ସର୍ବସ୍ୱ ସମର୍ପଣ କରିବାରେ ତିଳେମାତ୍ର କୁଣ୍ଠାବୋଧ କରି ନ
ଥିଲେ । ସେ ଈଶ୍ୱରଙ୍କୁ ଦେଖିଥିଲେ ମଣିଷ ଭିତରେ, ତାଙ୍କୁ ଅନୁଭବ କରିଥିଲେ
ମଣିଷ ସ୍ୱବରେ । ଶିବ ଜ୍ଞାନରେ ଜାତିସେବାର ମହତ୍ତ୍ୱର ଓ ଅଭୂତପୂର୍ବ ଆଦର୍ଶ
ଏବଂ କର୍ମର ଫଲ୍‌ଗୁ ଧାରା ଗୋପବନ୍ଧୁ ହିଁ ଓଡ଼ିଶା ମାଟିରେ ପ୍ରବାହିତ କରି-
ଥିଲେ । ତାଙ୍କର ପ୍ରେମପୂର୍ଣ୍ଣ ଅନ୍ତର ନୀଚ ସ୍ୱାର୍ଥବୋଧ, କ୍ଷୁଦ୍ରତା ପରିହାର କରି
ଅହଂକାରର ନିଗଡ଼ ବନ୍ଧନରୁ ମୁକ୍ତ ହୋଇ ଅଗଣିତ ଦୁଃଖୀ ଦେଶବାସୀଙ୍କ
ସହିତ ଏକାତ୍ମା ହେବା ସଙ୍ଗେ ଭୌଗୋଳିକ ଓଡ଼ିଶାର ପ୍ରତିଟି ଧୂଳିକଣା,
ବନଭୂମି, ନଦୀ, ପର୍ବତ ଓ ଜନବସତି ତାଙ୍କର ହୃଦୟନିଜାନ୍ତ ରସରେ ସିକ୍ତ ଓ
ପ୍ରାଣବନ୍ତ ହୋଇ ଉଠିଥିଲା ।

ଗୋପବନ୍ଧୁଙ୍କର ସାହିତ୍ୟ ତାଙ୍କର ଜନସେବା ଓ ଈଶ୍ୱରପ୍ରାଣତାର
ସୃଷ୍ଟିଗତ ଅଭିବ୍ୟକ୍ତି ମାତ୍ର । ଜନସେବାର ଆନ୍ତରିକତା, ଧର୍ମବିଶ୍ୱାସର
ନିଷ୍ଠାପରତା ଓ ଦେଶପ୍ରୀତିର ଐକାନ୍ତିକତାର ଅପୂର୍ବ ସମନ୍ୱୟରେ ଗଢ଼ିଉଠିଥିଲା
ତାଙ୍କର ସାହିତ୍ୟ ସୃଷ୍ଟି । ସଂଗ୍ରାମ ଓ ବିଦ୍ରୋହର ପଟ୍ଟଭୂମି ଉପରେ ଗୋପବନ୍ଧୁଙ୍କର
ଅନ୍ତରର କାବ୍ୟପୁରୁଷ ଅବତୀର୍ଣ୍ଣ ହୋଇଥିଲେ ହେଁ କୋଲାହଳ ମୁଖରିତ
ରଣପ୍ରାଙ୍ଗଣରୁ ସାମାନ୍ୟ ଅବ୍ୟାହତି କାଳରେ ତାଙ୍କର ପ୍ରାଣର ଦରଦୀ ଓ
ମରମୀ ମଣିଷଟି ବେଳେବେଳେ ଆତ୍ମପ୍ରକାଶ କରି ନିଜକୁ ଅନାବୃତ କରି
ଦେଇଛି । ସେହି କ୍ଷଣିକ ଉଦ୍ଭାସ ହିଁ ତାଙ୍କର ପ୍ରକୃତ ଆତ୍ମାର ସ୍ପର୍ଶ ବହନ କରି
ହୋଇଉଠିଛି ଭାସ୍ୱର ଓ ଲାବଣ୍ୟମୟ ।

କବି ଗୋପବନ୍ଧୁ ଅନୁଭବ କରିଥିଲେ ଜୀବନର ସକଳ ସୃଷ୍ଟିର ମୂଳାଧାର
ପ୍ରେମ । ପ୍ରେମ ହିଁ ଆନନ୍ଦର ସର୍ବୋତ୍ତମ ପ୍ରକାଶ । ଆତ୍ମିକ ଐଶ୍ୱର୍ଯ୍ୟର ଚରମ ଓ
ପରମ ଦିଗ ପ୍ରେମାନୁଭୂତି ବ୍ୟତିରେକେ କବିଆତ୍ମା ତା' ଜୀବନର ଶ୍ରେଷ୍ଠ ଅର୍ଘ୍ୟ
ପ୍ରଦାନ କରିପାରେ ନାହିଁ । ଗୋପବନ୍ଧୁ ମଣିଷର ସୁଖ-ଦୁଃଖ, ହସ-କାନ୍ଦ ଓ
ଆଶା-ନିରାଶା ଭିତରେ ନିଜକୁ ମିଶାଇ ଦେଇଥିଲେ । ତେଣୁ ତାଙ୍କ କବିତାରେ
ମଣିଷର ଅନ୍ତର କଥା ମଣିଷ କହିଛି—ମଣିଷର ଦୁଃଖରେ ମଣିଷ ଆଖିରୁ
ଲୁହ ଝରିଛି ଓ ମଣିଷର ପ୍ରେମପ୍ରୀତିରୁ ବଞ୍ଚିତ ମଣିଷର ଅନ୍ତରାତ୍ମା ହାହାକାର
କରିଉଠିଛି । ପ୍ରେମିକ କବିର ଅନ୍ତର ହଳ କରୁଥିବା ଚମ୍ପାପୁଅର 'ଦୁଃଖ ସହିତ

ଜଡ଼ିତ ହୋଇଛି । ଗାଈଆଳ ପିଲାର ବଂଶୀଧ୍ୱନି ଶ୍ରବଣରେ ବିମୁଗ୍ଧ ହୋଇଛି ଓ ଜଳଭର୍ତ୍ତି ବହନ କରି ମନ୍ଥରଗମନା ଗ୍ରାମବଧୂର ମାତୃତ୍ୱ ନିକଟରେ ଅବନତ ହୋଇଛି । ସେହି କବିହୃଦୟ ପୁଣି ବିଶ୍ୱ ପ୍ରକୃତିରେ ମିଳନର ଦୃଶ୍ୟ ଅବଲୋକନ କରି ଅତୀନ୍ଦ୍ରୀୟ ଭାବର ଆବେଗରେ ପୁଲକିତ ହୋଇଉଠିଛି । କବିଙ୍କର ପ୍ରେମ ଯେତିକି ସାଂସାରିକ ତତୋଽଧିକ ସ୍ୱର୍ଗୀୟ । ତାଙ୍କର ବ୍ୟକ୍ତିଗତ ଜୀବନର କ୍ଷୁଦ୍ର ପରିସରକୁ ପରିପୂର୍ଣ୍ଣ କରି ସେ ପ୍ରେମର ଅନିରୁଦ୍ଧ ପ୍ରବାହ ବିଶ୍ୱପ୍ରେମ ସାଗରରେ ନିମଜ୍ଜିତ ହୋଇଛି । କବି ଅନୁଭବ କରିଛନ୍ତି ଦ୍ୱନ୍ଦ୍ୱ ସଂଘାତପୂର୍ଣ୍ଣ ଜୀବନରେ ପ୍ରେମ ହିଁ କେବଳ ଅମୃତର ବାରି ସିଞ୍ଚନ କରିପାରେ—

କଣ୍ଟକ ସଂକୁଳ ପଥେ କୁସୁମ ବିତାନ
ମରୁଭୂମେ ପ୍ରେମ ସ୍ନିଗ୍ଧ ସଲିଲ ସମାନ ।
ମରପିଣ୍ଡେ ପ୍ରେମ ଏକ ଅମର ସଞ୍ଚାର
ପାର୍ଥିବ ଜଗତେ ପ୍ରେମ ସ୍ୱର୍ଗ ସୁଧାଧାର ।

ଅଥଚ ସେହି ସୁଧାଧାର ଭୂଲ ବୁଝାମଣାର ବିଷ କଣିକାରେ ଜର୍ଜରିତ ହୋଇ କବି ଅନ୍ତରକୁ କ୍ଷତବିକ୍ଷତ କରି ତୋଳିଛି । ପ୍ରେମ ଓ ବିଚ୍ଛେଦର ମାର୍ମିକ ଅନୁଭୂତିର ଏକ ମନୋଜ୍ଞ କାବ୍ୟଚିତ୍ର ପ୍ରକାଶ ପାଇଛି ତାଙ୍କର "ପ୍ରେମର କି ଏହି ପରିଣାମ" କବିତାରେ—

ଲିହି ଯେ ବୁକୁରେ ଶିର ରହିଁ ଆନମୁଖେ
ଶୋଇଥିଲୁ କୁତୂହଳେ ଏକ ମନ ସୁଖେ ।
ଯେତେ ଯେତେ କଥା ଅଛି ସେ ବୁକୁ ଭିତରେ
ଫିଟିବ ନାହିଁକି ତାହା କେବେ ଏକାନ୍ତରେ ।
ଏକକୁ ଅନାଇ ଆନ ନେତ୍ର ଅଶ୍ରୁଧାର
ବହିବ ନାହିଁ କି ଭେଦି ହୃଦୟ ଦୁଆର ?

ପ୍ରେମର ତାତ୍ତ୍ୱିକ ସତ୍ୟକୁ କବିଚିତ୍ତ ଅଲକ୍ଷ୍ୟରେ ସ୍ୱୀକାର କରି ଗାଇଉଠିଛି—

ବିଚ୍ଛେଦେ ବିକାଶେ ପ୍ରେମ ଅତି ମଧୁମୟ
ଶୀତ ଅନ୍ତେ ଶୋଭେ ସିନା ନବ କିଶଳୟ ।

ବିରହର ଅଗ୍ନିରେ ହିଁ ପ୍ରେମର ଶୁଦ୍ଧତା ପରୀକ୍ଷା କରାଯାଇପାରେ । କବିଙ୍କର ଜଣେ ଆଜୀବନ ସହକର୍ମୀ, ଯେ କେବଳ ସହକର୍ମୀ ନ ଥିଲେ, ଥିଲେ ତାଙ୍କର କର୍ମସହଚର ଓ ଅତି ପ୍ରିୟଜନ, ସେ ଥରେ କୌଣସି କାରଣରୁ ଗୋପବନ୍ଧୁଙ୍କ ପ୍ରତି ବିରକ୍ତ ହୋଇ ତାଙ୍କର ସଖ୍ୟକୁ ପ୍ରତ୍ୟାଖ୍ୟାନ କରି ତାଙ୍କୁ

କରି ସମାଲୋଚନା କଲେ । ସେହି ବନ୍ଧୁଙ୍କ ଉଦ୍ଦେଶ୍ୟରେ ରଚିତ 'ବ୍ୟଥିତ ପ୍ରାଣର ଅନ୍ତିମ ଅଶ୍ରୁ' ଗୋପବନ୍ଧୁଙ୍କର ଉଦାର କ୍ଷମାଶୀଳ ପ୍ରେମିକ ମନର ଆଲେଖ୍ୟ ବହନ କରିଛି—

ଏ ଜୀବନେ ପ୍ରେମ ନୁହେଁ ଅବସାନ
ଅନ୍ୟ ସ୍ଥାନେ ପୁଣି ହେବଟି ଦେଖା,
ଶୁଦ୍ଧ ନେତ୍ରେ ତହିଁ ଦେଖିବ ମୋ ହୃଦେ
ପ୍ରେମରସାଙ୍କିତ ଅମୃତ ଲେଖା ।
ପ୍ରେମ ପରି ସହେ ସହି ସୁଖପାଏ
ପ୍ରେମ ନ ଜାଣଇ କେବେ ଶୋଚନା,
ପ୍ରିୟ ଜନେ ନୁହଁ ପ୍ରେମିକ ବିମୁଖ
ହେଲେ ହେଉପଛେ ଗୁରୁଗଞ୍ଜଣା ।

ତଥାପି ଏହି ଅଶ୍ରୁଳ ଅନୁଭୂତି ପରେ ତାଙ୍କ ସମ୍ମୁଖରେ ସ୍ୱତଃ ଦେଖା ଦେଇଛି ସତ୍ୟ, ଶିବ ଓ ସୁନ୍ଦରର ସ୍ୱର୍ଲୋକ । କବିଙ୍କ ନିକଟରେ ଜଡ଼ ଜଗତ ପ୍ରାଣବନ୍ତ ହୋଇଉଠିଛି । ସୁଧାଂଶୁ ଓ ସୁନୀଳସିନ୍ଧୁ, ତରୁ ଓ ଲଳିତ ଲତିକା, ତପନ ଓ ନଳିନୀ ଏବଂ ସରିତ ଓ ସାଗରର ପ୍ରେମପୂର୍ଣ୍ଣ ମିଳନ ଉତ୍ସବ ଦର୍ଶନରେ କବି ଆତ୍ମା ପରମାତ୍ମାର ଅନନ୍ତ ମିଳନର ପରିକଳ୍ପନାରେ ତନ୍ମୟ । ବିଶ୍ୱସୃଷ୍ଟିର ସର୍ବଭୂତରେ ଆତ୍ମଦର୍ଶନ କରି ବିଶ୍ୱପ୍ରେମର ଧାରାରେ ଏକାତ୍ମ କବି ଗାଇଛନ୍ତି—

ମିଳାଇ ପ୍ରାଣ ତଥା ପ୍ରାଣେଶ ପଦେ
ନାଚିବି ବିଶ୍ୱପ୍ରେମ ପରମାନନ୍ଦେ ।

ମୋ ପ୍ରାଣ ପ୍ରେମଧାରେ ଭାସିବ ଧରା
ହେବ ଏ ବିଶ୍ୱ ମୋର ପ୍ରେମ ପସରା ।

କବି ଗୋପବନ୍ଧୁଙ୍କ ଜୀବନରେ ଯେ ଏକ ଦିବ୍ୟ ଉପଲବ୍ଧି ଘଟିଥିଲା ତାହାର ସୂଚନା ମିଳିଥାଏ ତାଙ୍କର 'ନୀରବ' କବିତାରେ । ସେ ଅନୁଭବ କରି-ଥିଲେ ନୀରବତା ମଧ୍ୟରେ ବିଶ୍ୱଲୀଳା ସଂଘଟିତ ହୁଏ, ଆକାଶରେ ରବି-ଶଶୀ-ତାରା ନୀରବରେ ଉଦିତ ହୁଅନ୍ତି, ତରୁଲତା ନୀରବରେ ବଢ଼େ, ସରସୀ ବକ୍ଷରେ ନୀରବରେ ପ୍ରସ୍ଫୁଟିତ ହୁଏ ଶତଦଳ, ପ୍ରେମୀ ପ୍ରଣୟୀର ଆଖିରେ ନୀରବରେ ଅଶ୍ରୁ ଛଳଛଳ ହୁଏ ଓ ଜୀବନର ସମସ୍ତ ଅର୍ଥପୂର୍ଣ୍ଣ ଘଟଣାର ସୂତ୍ରପାତ ହୁଏ ନୀରବତାରେ । ନୀରବତା ମନ୍ତ୍ରର ସାଧକ ଗୋପବନ୍ଧୁଙ୍କ ଉଦ୍ଦେଶ୍ୟରେ ଭାରତୀୟ କଥାସାହିତ୍ୟର ବିଶିଷ୍ଟ ଶିଳ୍ପୀ ମନୋଜ ଦାସ କହିଥିଲେ, 'କେଉଁ ଆଶ୍ଚର୍ଯ୍ୟସିଦ୍ଧ

ଚେତନାର କରୁଣାମୟ ସ୍ପର୍ଶ ପାଇ ଗୋପବନ୍ଧୁ ମାରବ କବିତାଟି ଲେଖିଥିଲେ, ଅନେକ ପାଠକ ବର୍ତ୍ତମାନ ତାହା ବୁଝିପାରିବେ ବୋଲି ମୋର ବିଶ୍ୱାସ ।''

ତାଙ୍କର କବିତା ଗୁଡ଼ିକରେ ଶିଶୁସୁଲଭ ସରଳ ପ୍ରାଣ, ଅକପଟ ସ୍ନେହ ମାଧୁରୀ ଏବଂ ଅନାବିଳ ଅଶ୍ରୁଧାରାର ଉଷ୍ମତା ଓ ଉଚ୍ଛ୍ୱାସ ପ୍ରକଟିତ ହୋଇଛି । ଛନ୍ଦ, ଭାଷା ବା ଆଙ୍ଗିକର ଯାଦୁ ସୃଷ୍ଟି କରିବା ତାଙ୍କ କବିତାର ଲକ୍ଷ୍ୟ ନ ଥିଲା କିମ୍ବା କବିଯଶ ଲାଭ କରିବା ମଧ୍ୟ ତାଙ୍କର ଉଦ୍ଦେଶ୍ୟ ନ ଥିଲା । ତାଙ୍କ ଜୀବନର ଅନ୍ତରଙ୍ଗ ଅନୁଭୂତିମାନ ସହଜ ସରଳ ଭାଷା ମାଧ୍ୟମରେ କବିତା ରୂପରେ ପ୍ରକାଶ ଲାଭ କରିଥିଲା । ଜନ ଲୋକଙ୍କ ମନରେ ଜାତୀୟ ଚେତନା ଜାଗ୍ରତ କରିବା ଓ ସେମାନଙ୍କୁ ସ୍ୱାଧୀନତା ଆନ୍ଦୋଳନର ସଂଗ୍ରାମୀ ସୈନିକ ଭାବରେ ଗଢ଼ିତୋଳିବା ପାଇଁ ଗୋପବନ୍ଧୁ କାବ୍ୟ କକ୍ଷରୁ ଯେଉଁ ଆହ୍ୱାନ ଦେଇଥିଲେ ତାହାହିଁ ପରିଣତ ହେଲା ଏକ କାଳଜୟୀ ସାହିତ୍ୟରେ । ଏ ସାହିତ୍ୟ ଏକ ସିଦ୍ଧ କବିର ସାହିତ୍ୟ । ଏହି କବିତାଗୁଡ଼ିକର ଅଧିକାଂଶ ପଂକ୍ତି ମନ୍ତ୍ରସିଦ୍ଧି ଲାଭକରିଛି । ଯାହାର ପଠନ ଓ ଉଚ୍ଚାରଣରେ ଓଡ଼ିଆ ଜାତି ନିର୍ଭୀକ ଭାବରେ ଆତ୍ମବଳରେ ବଳୀୟାନ ହୋଇ ଇଂରେଜ ସରକାରର କମାଣ ଆଗରେ ଛାତି ପତାଇବାକୁ ଭୟ କରି ନ ଥିଲା ।



# ଆଧୁନିକ ଓଡ଼ିଆ କବିତାରେ ଶିବଚେତନା

ଭାରତୀୟ ଧର୍ମ ପରମ୍ପରାରେ ଦୁଇ ପ୍ରମୁଖ ଧାରା ବୈଷ୍ଣବ ଓ ଶୈବ । ଉଚ୍ଚସ୍ତରୀୟ ଶୈବସାଧକମାନେ ଏକେଶ୍ୱରବାଦୀ ଅଦ୍ୱୈତବାଦ ଦର୍ଶନରେ ବିଶ୍ୱାସ କରନ୍ତି । ସେମାନେ ମନେ କରନ୍ତି, ଭକ୍ତି ଅପେକ୍ଷା ଜ୍ଞାନ ହିଁ ମୋକ୍ଷଲାଭର ନିଶ୍ଚିତ ମାର୍ଗ । ଭକ୍ତିପ୍ରଧାନ ବୈଷ୍ଣବମାନଙ୍କର ଉପାସ୍ୟ ଭଗବାନ କୃଷ୍ଣଙ୍କର ଆଧ୍ୟାତ୍ମିକତା ଓ ଭକ୍ତି ଉପାସନା କ୍ଷେତ୍ରରେ ଜନପ୍ରିୟତା ସହଜରେ ଅନୁମାନ କରାଯାଇପାରେ । ସେ ପ୍ରେମ ଓ ଜ୍ୟୋତିର ପ୍ରତିମା-ପ୍ରତୀକ । କିନ୍ତୁ ବିସ୍ମୟର କଥା ଯେ, ଭାରତୀୟମାନସ କିପରି ଭାବରେ କଠୋର ଶୈବଚିନ୍ତନର ଊର୍ଦ୍ଧ୍ୱକୁ ଉଠି ଏହି ମହାକାଳ ଭୈରବଙ୍କୁ ପ୍ରେମଭକ୍ତିର ଉପାସ୍ୟ ରୂପେ ଗ୍ରହଣ କଲା । ଭାରତୀୟ ସଂସ୍କୃତି ଓ ସାହିତ୍ୟରେ ଶିବଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପ୍ରାଗାର୍ଯ୍ୟ ମହେଞ୍ଜୋଦାରୋ ସଂସ୍କୃତିଠାରୁ ଅଦ୍ୟାବଧି ନିରବଚ୍ଛିନ୍ନ ଭାବରେ ଶିବ ଭାରତୀୟ ସଂସ୍କୃତିସହ ସମ୍ପୃକ୍ତ ଥିବାପରି ସର୍ବପ୍ରାଚୀନ ଆର୍ଯ୍ୟରଚନା ବେଦରୁ ଆରମ୍ଭ କରି ବହୁ ଧାରାରେ ବହୁ ଦିଗରେ ଗତିବିଧାନ ପୂର୍ବକ ସାହିତ୍ୟର ବିଭିନ୍ନ ସ୍ତର ଅତିକ୍ରମ କରି ସାମ୍ପ୍ରତିକ ସାହିତ୍ୟରେ ମଧ୍ୟ ଏକ ସାକାର ଜୀବନ୍ତ ଚରିତ୍ର ରୂପେ ତଥା ଏକ ବଳିଷ୍ଠ ଭାବମୂର୍ତ୍ତି ରୂପେ ପ୍ରତିଷ୍ଠିତ । ଆଧୁନିକ ମାନସରେ ସେ ହୋଇଛନ୍ତି, 'ଊନବିଂଶ ଶତାବ୍ଦୀର ସମାଜ କଲ୍ୟାଣ ଓ ଶ୍ରେୟବୋଧର ଆଦର୍ଶ ଏବଂ ବିଂଶ ଶତାବ୍ଦୀର ମାନବିକ ଭୂମା ଏବଂ ଭୂମାଚ୍ଛନ୍ନ ମାନବତା— Divinity of Humanity and Humanity of Divinity, ଉଭୟଯୁକ୍ତ ମାନବକେନ୍ଦ୍ରିକ ଆଧ୍ୟାତ୍ମ ଶ୍ରୀକୃତି' । (୧)

ଇଂରେଜମାନଙ୍କର ରାଜତ୍ୱକାଳରେ ଦୃଢ଼ ଶାସନ ବ୍ୟବସ୍ଥାର ପ୍ରବର୍ତ୍ତନ ଫଳରେ ସମାଜରେ ଏକପ୍ରକାର ସ୍ଥିରତା ଆସିଲା ସତ, କିନ୍ତୁ କ୍ରମଶଃ ସେମାନଙ୍କର ବିସ୍ତାର ଓ ଲକ୍ଷ୍ୟ କେବଳ ଦେଶର ଶାସନରେ ସୀମିତ ନ ରହି

---

(୧) ଶିବ ଭାବନା, ପୃ-୧୩୯ ସୁଧାଂଶୁ ମୋହନ ବନ୍ଦୋପାଧ୍ୟାୟ

ଧର୍ମ; ସଂସ୍କୃତି ଓ ସମାଜ ପ୍ରଭୃତି କ୍ଷେତ୍ରରେ ଭାରତୀୟଙ୍କର ସାମଗ୍ରିକ ଚେତନାକୁ ବିପର୍ଯ୍ୟସ୍ତ ଓ ବିକଳିତ କରିବାକୁ ଆରମ୍ଭ କରିଥିଲା । ସମଗ୍ର ଭାରତୀୟ ଜୀବନ ଏ ପ୍ରକାର ଜାତୀୟ ସଙ୍କଟର ସମ୍ମୁଖୀନ ହୋଇଥିବାର ଲକ୍ଷ୍ୟ କରି ମାର୍କସ ଇଂରେଜ ସରକାରଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ, ସେଥିରୁ କିଛି ଅଂଶ ଉଦ୍ଧୃତ ଆକାରରେ ଦିଆଯାଇପାରେ : England has broken down the entire frame work of Indian society without any symptoms of reconstruction yet appearing. This loss of his old world with no gain of a new one imparts a particular kind of melancholy to the present misery of the Hindoo and separates Hindustan ruled by Britain, from all its past history. (୧)

ମାର୍କସଙ୍କର ଏ ପ୍ରକାର ମନ୍ତବ୍ୟ ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ପାଶ୍ଚାତ୍ୟ ସଭ୍ୟତାର ବଳିଷ୍ଠ ପ୍ରଭାବ ପ୍ରାଚ୍ୟ ଜୀବନଧାରାକୁ ବହୁବିଧ ଭାବରେ ଆଲୋଡ଼ିତ କରିଥିଲା; କିନ୍ତୁ ସର୍ବାନ୍ତଃକରଣରେ ଗ୍ରାସ କରିପାରି ନ ଥିଲା । ପାଶ୍ଚାତ୍ୟ ଶିକ୍ଷାଦର୍ଶରେ ଅନୁପ୍ରାଣିତ ସହରାଞ୍ଚଳରେ ଶିକ୍ଷିତଗୋଷ୍ଠୀ ପ୍ରାଚ୍ୟ ପାଶ୍ଚାତ୍ୟ ସଂଘର୍ଷ ଓ ସମନ୍ୱୟର ସନ୍ଧିକ୍ଷଣରେ ଗତି କରୁଥିବାବେଳେ ଏ ଦେଶର ବୃହତ୍ତର ଗ୍ରାମାଞ୍ଚଳ ବିଦେଶୀ ପ୍ରଭାବରୁ ମୁକ୍ତ ଥିଲା । ଯୁଗଯୁଗାନ୍ତରର ଐତିହ୍ୟ ଧର୍ମଧାରା ପ୍ରତି ଜନସାଧାରଣଙ୍କର ପ୍ରଗାଢ଼ ଅନୁରକ୍ତି କୌଣସି ପ୍ରକାରେ କ୍ଷୁଣ୍ଣ ହୋଇ ନ ଥିଲା । ସମୟକ୍ରମେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ସମାଜ ବ୍ୟବସ୍ଥା, ଜୀବନଦର୍ଶନ, ସଂସ୍କୃତି ଓ ଚିନ୍ତାଧାରାର ଦୀର୍ଘ ସହାବସ୍ଥାନ ଆଧୁନିକ ମାନସରେ ଏକ ବୈପ୍ଲବିକ ଆଲୋଡ଼ନ ସୃଷ୍ଟି କରିଥିଲା; ତଥାପି ଇଂରେଜୀ ଶିକ୍ଷା ଲାଭ କରିଥିବା ଶିକ୍ଷିତ ମନ ମଧ୍ୟ ଥିଲା ଐତିହ୍ୟଜଡ଼ିତ ।

ପାଶ୍ଚାତ୍ୟ ଶିକ୍ଷା ଭାରତୀୟମାନଙ୍କୁ ଦୀର୍ଘପ୍ରଚଳିତ ପରମ୍ପରାରୁ ସମ୍ପୂର୍ଣ୍ଣ ବିଚ୍ୟୁତ କରିପାରି ନ ଥିଲା ସତ କିନ୍ତୁ ପ୍ରାଚୀନ ରୀତିନୀତି, ଧର୍ମଧାରଣା ଓ ସମାଜ ବ୍ୟବସ୍ଥା ପ୍ରତି ଏକପ୍ରକାର ଉଦାସୀନତା ଓ ବିଦ୍ରୋହଭାବ କେତେକାଂଶରେ ଦେଖାଯାଇଥିଲା । ସମଗ୍ର ଭାରତୀୟ ସାହିତ୍ୟରେ ପ୍ରାଚ୍ୟ ପାଶ୍ଚାତ୍ୟ ଚିନ୍ତାଧାରାର ସମନ୍ୱିତ ରୂପ ପ୍ରକାଶ ପାଇବା ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ଏକ ନବ-

(୧) The Newyork Daily Tribune, 10th June, 1853

ଦିଗନ୍ତର ଉନ୍ମୋଚନ ଘଟିଥିଲା । ମଧ୍ୟଯୁଗୀୟ କାବ୍ୟାବଳୀର ଗତାନୁଗତିକ ବର୍ଣ୍ଣନାଧର୍ମିତା, ଏକରୂପ ବିଷୟବସ୍ତୁ; ରସସାର ଶୃଙ୍ଗାରରସର ଏକଚ୍ଛତ୍ର ପ୍ରାଧାନ୍ୟକୁ ଖଣ୍ଡନ କରି ଆଧୁନିକ କବିର ଦୃଷ୍ଟି ବଳୟ ସୁଦୂର ପ୍ରସାରିତ ହେଲା । ସ୍ୱଦେଶପ୍ରେମ, ଜାତୀୟବାଦୀ ଚେତନା, ବାସ୍ତବଧର୍ମୀ ବସ୍ତୁବିନ୍ୟାସ, ଜୀବନର ବିବିଧ ଦିଗ, ମଣିଷର ବିଭିନ୍ନ ସମସ୍ୟାର ରୂପଚିତ୍ର ଓ ସାଧାରଣ ଶୁଦ୍ଧ ମାର୍ଜିତ ଓଡ଼ିଆ ଭାଷାର ପ୍ରୟୋଗ ଆଧୁନିକ ସାହିତ୍ୟର କେତୋଟି ଉଲ୍ଲେଖନୀୟ ଦିଗ । ବିଶେଷତଃ କାବ୍ୟକୁ କୌଣସି ଧର୍ମପ୍ରଚାରର ମାଧ୍ୟମ ରୂପେ ଗ୍ରହଣ କରାଯାଇ ନ ଥିଲା ।

ଆଧୁନିକ ଓଡ଼ିଆ କାବ୍ୟ ସାହିତ୍ୟରେ ଶିବଙ୍କର ରୂପଚିତ୍ର ସମ୍ପୂର୍ଣ୍ଣ ଅଭିନବ ନୁହେଁ । ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଐତିହ୍ୟର ଦୀର୍ଘସୂତ୍ର ଏହାଙ୍କ ସହିତ ସମ୍ପୃକ୍ତ । ପ୍ରାଚୀନ ଓ ମଧ୍ୟଯୁଗୀୟ ଶିବଚରିତ୍ର ଠାରୁ ଆଧୁନିକ ଶିବଚରିତ୍ରର କେତେକ ପାର୍ଥକ୍ୟ ଥିଲେ ମଧ୍ୟ ମୁଖ୍ୟତଃ ପାରମ୍ପରିକ ପରିପ୍ରେକ୍ଷୀରେ ଏହାର ବିଚାର କରା-ଯାଇପାରେ । ଆଧୁନିକ ସାହିତ୍ୟର ସ୍ରଷ୍ଟାପୁରୁଷ ରାଧାନାଥଙ୍କଠାରୁ ଆରମ୍ଭ କରି ପ୍ରଗତିବାଦୀ ପରିବେଶର ସାମ୍ପ୍ରତିକ ଯୁଗପର୍ଯ୍ୟନ୍ତ କବିମାନଙ୍କ ରଚନାରେ ରୁଦ୍ରଶିବ ବିଭିନ୍ନ ରୂପରେ, ଭାବରେ, ବର୍ଣ୍ଣରେ, ରସରେ ଓ ଆତ୍ମମହିମାରେ ପ୍ରକାଶିତ ହୋଇଛନ୍ତି । ଐତିହ୍ୟ ଓ ସାଂସ୍କୃତିକ ଚେତନାର ପ୍ରତୀକ ପୁରୁଷ ରୂପେ ଶିବଙ୍କୁ ଉପଲକ୍ଷ କରି ସ୍ୱଦେଶପ୍ରେମୀ ଅତୀତରେ ଉଦ୍‌ବୋଧନ କରିଛନ୍ତି; ପରାଧୀନ ଉତ୍କଳୀୟ ପ୍ରାଣରେ ସ୍ୱାଧୀନ ଚେତନା ସୃଷ୍ଟି କରିଛନ୍ତି । ରୁଦ୍ରଙ୍କର ଯୋଦ୍ଧୃ ଓ ଦୁର୍ବାର ଶକ୍ତିର ସ୍ମରଣ କରି ବିପ୍ଳବ, ବିଦ୍ରୋହର ଅଗ୍ନିବର୍ଷୀ ବାଣୀ ରଚିତ ହୋଇଛି; ଶିବଙ୍କର ବାହ୍ୟାବରଣ ଲକ୍ଷ୍ୟକରି ସମୀକରଣାତ୍ମକ ଆତ୍ମସମୀକ୍ଷା କରା-ଯାଇଛି, ଅର୍ଦ୍ଧନାରୀଶ୍ୱର ରୂପର ଆଲଙ୍କାରିକ ପ୍ରୟୋଗ ହୋଇଛି ଓ ପ୍ରକୃତିର ପଟ୍ଟଭୂମିରେ ରୁଦ୍ରଶିବର ରୂପଚ୍ଛାୟା ଅଙ୍କନ କରାଯାଇଛି । ଧ୍ୱଂସ ସୃଷ୍ଟିର ରୂପକାର ଭାବରେ ଚର୍ଚ୍ଚିତ ହୋଇଛନ୍ତି ରୁଦ୍ରଶିବ ଓ ତାଙ୍କୁ ହିଁ କେନ୍ଦ୍ରକରି ଆଧ୍ୟାତ୍ମଚିନ୍ତାର ବିକାଶ ସାଧନ କରିବା ସଙ୍ଗେ କବିମାନେ ଦିବ୍ୟାନୁଭୂତି ଲାଭ କରିଛନ୍ତି ବିଭିନ୍ନ ଅବସ୍ଥାରେ ।

ଊନବିଂଶ ଓ ବିଂଶ ଶତାବ୍ଦୀର ଜାତୀୟ ଆନ୍ଦୋଳନରେ ଶିବଙ୍କର ଭୂମିକା ଉଲ୍ଲେଖଯୋଗ୍ୟ । ସ୍ୱାମୀ ବିବେକାନନ୍ଦ ଅଧ୍ୟାତ୍ମ ବିଶ୍ୱାସ ବଳରେ ପରାଧୀନ ଭାରତବାସୀଙ୍କୁ ତ୍ୟାଗ, ସନ୍ନ୍ୟାସ, ସାଧନା ଓ ସାହସରେ ଅଭିମନ୍ତ୍ରିତ କରି ସଚେତନ ଓ ଶକ୍ତିମାନ କରିବାକୁ ଚାହିଁଥିଲେ । ଜଡ଼ତାଗ୍ରସ୍ତ ପରାଧୀନ ଭାରତୀୟଙ୍କୁ ଆହ୍ୱାନ ଜଣାଇ ସ୍ୱାମୀଜୀ କହିଥିଲେ, 'ହେ ଭାରତ' ଭୁଲିଯାଅ ନାହିଁ ଯେ ତୁମର

ଉପାସ୍ୟ ହେଉଛନ୍ତି ସର୍ବତ୍ୟାଗୀ ଉମାନାଥ ଶଙ୍କର । (୩) ଯୋଦ୍ଧା, ବିପ୍ଳବୀ, ସ୍ରଷ୍ଟା ଓ ପ୍ରଳୟଙ୍କାରୀ ଶିବଙ୍କୁ ଭାରତ-ଜନନୀର ସ୍ୱାଧୀନତା ଓ ଗୌରବ ରକ୍ଷାଲାଗି ବାରମ୍ବାର ଆହ୍ୱାନ କରାଯାଇଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ମୁଖ୍ୟ ସ୍ରଷ୍ଟାପୁରୁଷ ରାଧାନାଥ ଇଂରେଜ ସରକାରଙ୍କ ଅଧୀନସ୍ଥ ସରକାରୀ କର୍ମଚାରୀ ହୋଇଥିବାରୁ ସରକାରଙ୍କ ବିରୋଧରେ ପ୍ରକାଶ୍ୟ ବିଦ୍ରୋହୋତ୍ତୋଳନ କରିବା ସମ୍ଭବ ନଥିଲା । ଅଥଚ ସ୍ୱାଧୀନଚେତା କବିଙ୍କ ପକ୍ଷରେ ନୀରବ ରହିବା ମଧ୍ୟ କଷ୍ଟକର ଥିଲା । ପରାଧୀନ ଜୀବନ ସହିତ ଅଭ୍ୟସ୍ତ ହୋଇପଡ଼ିଥିବା ଜଡ଼ତାଗ୍ରସ୍ତ ଉତ୍କଳୀୟମାନଙ୍କୁ ବୀରତ୍ୱ, ଶୌର୍ଯ୍ୟ ଓ ସ୍ୱାଧୀନତାର ମହତ୍ତ୍ୱ ସମ୍ପର୍କରେ ସଚେତନ କରାଇବାର ଉଦ୍ଦେଶ୍ୟ ନେଇ ରାଧାନାଥ କ୍ଷୁଦ୍ର କବିତାଠାରୁ ଆରମ୍ଭ କରି ମହାକାବ୍ୟ ରଚନା କରିବାର ଯୋଜନା କରିଥିଲେ । ତାଙ୍କର ଅନ୍ୟତମ କବିତା 'ଶିବାଜୀ'ଙ୍କର ଉଦ୍ଦୀପ୍ତ ବାଣୀରେ ଶିବାଜୀଙ୍କ ମୁଖରେ ମହାରାଷ୍ଟ୍ରୀୟ ବୀରଗଣଙ୍କୁ ଯବନ ବିରୋଧରେ ଅସି ଉତ୍ତୋଳନ କରି ପରାଧୀନା ଭାରତ ଜନନୀଙ୍କୁ ଶୃଙ୍ଖଳମୁକ୍ତ କରିବା ନିମନ୍ତେ ଆହ୍ୱାନ କରାଯାଇଛି । ସୈନ୍ୟ-ମାନଙ୍କର ନୈତିକ ବଳ ଦୃଢ଼ କରିବା ପାଇଁ କବି ଦେବଯୋଦ୍ଧା ମହାଦେବଙ୍କର ଏ ଯୁଦ୍ଧରେ ସମର୍ଥନଥିବା କଥା ଉଲ୍ଲେଖ କରିଛନ୍ତି । ଶିବାନୁଚର ମହାବଳଶାଳୀ ନନ୍ଦୀ ତ୍ରିଶୂଳ ହସ୍ତରେ ମହାରାଷ୍ଟ୍ରୀ ଶୂରଙ୍କୁ ସହାୟତା କରିବା ପାଇଁ ସମରକ୍ଷେତ୍ରକୁ ଯିବେ ବୋଲି ଶିବାଜୀ ତାଙ୍କର ସୈନ୍ୟଗଣଙ୍କ ମନରେ ବିଶ୍ୱାସ ସଞ୍ଚାର କରିଛନ୍ତି—

ଶୂର ଦେବ ଦେବ ପଶି ରଣସ୍ଥଳେ
ତ୍ରିଶୂଳର ଗ୍ରୀଷ୍ମା ଦେଖି ଆକାଶେ
ଧୂମକେତୁ ପ୍ରାୟେ ଭୟଙ୍କର ଜଳେ
ଧୂମକେତୁ ଏହୁ ରିପୁ ବିନାଶେ ।

ପୁରାଣ ଶିବଙ୍କର ଯୋଦ୍ଧୃରୂପ କାଳେ କାଳେ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବା ପାଇଁ ପ୍ରେରଣା ଯୋଗାଇଛି । ଶୋଷଣ ଓ ଅସତ୍ୟର ଦମନ କରିବା ପାଇଁ ଶୈବସାମର୍ଥ୍ୟ ଆବଶ୍ୟକ । ଶିବ ସ୍ମରଣରେ ହିଁ ଜୀବ ମଧ୍ୟରେ ନୂତନ ଜୀବନୀ ଶକ୍ତିର ସଞ୍ଚାର ହୁଏ । ନାରିକେଳ କୁନ୍ତଳାକୁମାରୀ 'ଶିବ ସୂର ଉଠ ତରୁଣ ତରୁଣୀ' ଗୀତରେ ଯୁବଶକ୍ତି ପ୍ରତି ଆହ୍ୱାନ ଜଣାଇଥିଲେ ।

---

୩ । ବର୍ତ୍ତମାନ ଭାରତ—ସ୍ୱାମୀ ବିବେକାନନ୍ଦ, ୧୩୪୮ ସନ

ଜଣେ ବଳିଷ୍ଠ ଜାତୀୟତାବାଦୀ ସଂସ୍କୃତିସଚେତନ କବି ଭାବରେ ଗୋଦାବରୀଶ ମହାପାତ୍ର ପରିଚିତ । ସମାଜ, ସାହିତ୍ୟ, ରାଜନୀତି ଓ ଜାତୀୟ ଜୀବନର ପ୍ରତିଟି ସ୍ତରରେ ଅନ୍ୟାୟ ଅବିଚାର ଏବଂ ଓଡ଼ିଆମାନଙ୍କ ପ୍ରତି ଶାସକଗୋଷ୍ଠୀର ଅବହେଳା କବିଙ୍କ ମନରେ ଯେଉଁ ବିଦ୍ରୋହଭାବ ସୃଷ୍ଟି କରିଥିଲା, ତାହା ତାଙ୍କ ଲେଖନୀରୁ ଝରାଇଥିଲା ଅଗ୍ନିଗର୍ଭ ବାଣୀ । "ମହାପାତ୍ରଙ୍କ ବିଶାଳ ହିନ୍ଦୁଙ୍କ କାବ୍ୟ ମନ୍ଦିରରେ ପାଠକ ଯେତେବେଳେ ପ୍ରବେଶ କରେ ସେ ଲକ୍ଷ୍ୟ କରେ—ଜଣେ ବାଣୀସେବକ ଉଦ୍ଦାମ ଭାବର ଆବେଶରେ ଗାଇଯାଉଛି ବୈପ୍ଳବିକ ଶିବତାଣ୍ଡବ ଗାନ । କଠୋର ସେ ସାଧନା, ବଜ୍ର ଗମ୍ଭୀର ସେ ଗାନ, ଆବେଗପୂର୍ଣ୍ଣ ସେ କଣ୍ଠ । ପ୍ରଳୟ ଲାଗି ସେଥିରେ ଯେତିକ ପ୍ରେରଣା ନିହିତ, ଗଢ଼ିବାର ଉନ୍ମାଦନା ମଧ୍ୟ ତା'ଠାରୁ କିଛି କମ୍ ନୁହେଁ ।" (୪)

ସତ୍ୟବାଦୀ ଚନ୍ଦ୍ରାଧାରୀ କବିଙ୍କ ଜୀବନସାଧନାରେ ସର୍ବଦା ଆଦର୍ଶ ହୋଇ ରହିଥିଲା । ଜାତି ମନରୁ ହୀନମନ୍ୟତା ଦୂର କରିବା ପାଇଁ ଅତୀତ ଉତ୍କଳର ବୀରତ୍ୱ, ଶୌର୍ଯ୍ୟ ଓ ସମ୍ମାନବୋଧର ନାନା ଦୃଷ୍ଟାନ୍ତ ଦେବା ସଙ୍ଗେ ଯୌବନ-ଶକ୍ତିସମ୍ପନ୍ନ ତରୁଣଗୋଷ୍ଠୀକୁ ବାରମ୍ବାର ଆହ୍ୱାନ ଜଣାଇଛନ୍ତି—ଲୋଡ଼ା ଏଠି ଧୂର୍ଜ୍ଜଟି ସାଧନା । ଯୌବନର ଦୁର୍ନିବାର ଶକ୍ତି ଅସାଧ୍ୟକୁ ସାଧନ କରିପାରେ । କବି ମହାପାତ୍ର ଯେଉଁ ମୁକ୍ତିର ସ୍ୱାଧୀନତାର ସ୍ୱପ୍ନ ଦେଖିଛନ୍ତି, ତାକୁ ବାସ୍ତବ ରୂପ ଦେବାପାଇଁ ହେଲେ କେତେ କଠିନ ସଂଗ୍ରାମର ସମ୍ମୁଖୀନ ହେବାକୁ ହେବ, ତାହା ସେ ଅନୁମାନ କରିପାରିଛନ୍ତି । ସମସ୍ତ ବାଧା ଦୂରକରିବା ପାଇଁ ଶକ୍ତିଶାଳୀ ଯୌବନର ସହାୟତା କାମନା କରିଛନ୍ତି । ସେଇ ଦୁର୍ଦମନୀୟ, ଅପ୍ରତିରୋଧ୍ୟ ରୁଦ୍ର-ଯୌବନ ହିଁ କବିଙ୍କ ସକଳ ସଂଗ୍ରାମରେ ସେନାପତି—

କରେ ଧରିଆସ ସେନାପତି ମୋର
ଶୂଳପାଣି ଡମ୍ବରୁ
ଗୁମ୍ ଗୁମ୍ ଗୁମ୍ କମ୍ପନେ ତା'ର
ବିଶ୍ୱ ଧମନୀ ଥରୁ
ଭାଲେ ଜଳୁଥାଉ ଅମ୍ବିକା ଚିତା
ବିକଟ ଅଟ୍ଟହାସ

୪ । ଗୋଦାବରୀଶ ମହାପାତ୍ର ପରିକ୍ରମା—ପୃ-୧୨୮, ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ

ଧୂର୍ଜ୍ଜଟି-ଜଟା-ଚୁମ୍ବିତ ଉଚ୍ଛ୍ୱାସ
ତବ ସହ ମୋର ମଧୁର ମିଳନ
ସୃଷ୍ଟିର ଅଭିଳାଷ
( ଛନ୍ଦେ ଛନ୍ଦେ : ଉଠ କଙ୍କାଳ )

ଏପରିକି ମୃତ କଙ୍କାଳ ପଞ୍ଜରରେ ନୂତନ ଜୀବନ ସଞ୍ଚାର କରିବା ପାଇଁ କବି ରୁଦ୍ରଙ୍କର ମରଣ ବିଜୟୀ ବଂଶୀରେ ସ୍ୱର ତୋଳିଛନ୍ତି । ସେହି ବଂଶୀସ୍ୱନ ଶୁଣି କଙ୍କାଳ ଜାଗ୍ରତ ହେବ 'ଧୂର୍ଜ୍ଜଟି ଜଟାଜୂଟ କମ୍ପାଇ ଯୌବନ କୁତୂହଳେ ।'

କବି ମାୟାଧର ମାନସିଂହଙ୍କର 'ନବ ଅଭିଯାନ' କବିତାଟି ଏକ ଜାତୀୟ ଚେତନାଦୀପ୍ତ ରଚନା । ଯୁଗ ଯୁଗ ଧରି ପରପଦାନତ ଓ ଲାଞ୍ଛିତ ହୋଇ ମଧ୍ୟ ଓଡ଼ିଆ ଜାତି ଲଜ୍ଜାହୀନ ଭାବରେ ଓ ଚିନ୍ତାଶୂନ୍ୟ ମନରେ ସୁଖମୟ ଜୀବନ-ଯାପନ କରୁଥିବାର ଦେଖି ସ୍ୱାଧୀନତାବାଦୀ କବି ବ୍ୟଥିତ ହୋଇଉଠିଛନ୍ତି । ପରାଧୀନତାକୁ ଅପମାନ ମନେ ନ କରି ଆତ୍ମପ୍ରସାଦ ଅନୁଭବ କରୁଥିବା ଜାତିର ନୈତିକ ଅଧଃପତନ ଲକ୍ଷ୍ୟ କରି କବି ଏହାର ଆଶୁ ଅବସାନ କାମନା କରିଛନ୍ତି । କାରଣ ତାଙ୍କ ଜାତିର ମୁକ୍ତ ସତ୍ୟ ପ୍ରକାଶ କରିବାର ସାହସ ନାହିଁ । ଗୃହଠାରୁ ଦୂରରେ ରହିବାର ଭୟ, ଶାସ୍ତ୍ରକୁ ଭୟ, ଶସ୍ତ୍ରକୁ ଭୟ ଓ ପ୍ରତିବେଦନର ନିଷ୍ପ୍ରାଣତାପରେ ଏ ଜାତିର ଭୀତି ଓ ଦୁର୍ବଳତା ପ୍ରକାଶିତ । ଏପରି ଏକ ଜଡ଼ତାଗ୍ରସ୍ତ ଦୁର୍ବଳ ଜାତିକୁ ନିର୍ଭୀକ, ସତ୍ୟନିଷ୍ଠ ଓ ଦୃଢ଼ମନା କରି ଗଢ଼ିବା ପାଇଁ ରୁଦ୍ରଙ୍କର ପ୍ରେରଣା ହିଁ ଆବଶ୍ୟକ ; ତେଣୁ କବି ଶଙ୍କର ଭଗବାନଙ୍କୁ ତ୍ରିଶୂଳ ପ୍ରହାର ଓ ଭୀମ ହୁଙ୍କାର ଦ୍ୱାରା ଯୁଗଯୁଗର ଶିଥିଳତା, ଜଡ଼ତା ଓ ସ୍ଥବିରତାକୁ ଦୂର କରି ଜାତି ପ୍ରାଣରେ ନୂତନ ଶକ୍ତି, ଶୌର୍ଯ୍ୟ ଓ ସାହସ ସଞ୍ଚାର ଉଦ୍ଦେଶ୍ୟରେ ଆହ୍ୱାନ ଜଣାଇଛନ୍ତି—

ଡମ୍ବରୁ ତବ ବଜାଅ ତ୍ରିଶୂଳପାଣି ହେ
ଜଳାଅ ତୃତୀୟ ନୟନ
ମିଥ୍ୟା, ସ୍ୱାର୍ଥ, ଭୟ ଉଅ ଖରେ ହାଣି ହେ
ଶେଷ ହେଉ ଜଡ଼ଶୟନ
ଭସ୍ମରୁ ହେଉ ମୋ ଜାତିର ନବ ଅଭିଯାନ
( ନବ ଅଭିଯାନ : ଗୀତରେଣୁ )

ସୃଷ୍ଟି-ପ୍ରଳୟର ଓ ଯୋଗତ୍ୟାଗର ଦେବତା ରୁଦ୍ର ଶିବଙ୍କର ରୂପଚ୍ଛାୟା ପ୍ରକୃତିର ପଟ୍ଟଭୂମିରେ ପ୍ରକାଶିତ । ରୁଦ୍ର ରୂପରେ ଶିଏ ଧ୍ୱଂସର ବିଷାଣ ବଜାନ୍ତି,

ସେ ପୁଣି ଶିବ ରୂପରେ ସର୍ଜନର ମଙ୍ଗଳ ଗୀତ ଗାନ କରନ୍ତି । ଯେଉଁ ଶିବ ସଂସାରବିରାଗୀ, ସନ୍ନ୍ୟାସୀ, ସେ ପୁଣି ତାପସୀ ପ୍ରଣୟିନୀର ପ୍ରେମସାଧନା ନିକଟରେ କିଙ୍କରତ୍ୱ ସ୍ୱୀକାର କରନ୍ତି । ଧ୍ୱଂସ-ସୃଷ୍ଟି, ଶୂନ୍ୟତା-ପୂର୍ଣ୍ଣତା, ଭୟଙ୍କର-ମନୋହର, ରୁକ୍ଷ-କୋମଳ, ସୁଖ-ଦୁଃଖ ଐକ୍ୟ ହିଁ ସତ୍ୟର ଦୁଇ ରୂପ । ଜୀବନର ପରିପୂର୍ଣ୍ଣତା ସାଧନ ଦିଗରେ ଉଭୟର ରହିଛି ସମାନ ଅବଦାନ । ସୀମିତ ଚେତନା ମଧ୍ୟରେ ବାସକରୁଥିବା ମଣିଷ ଆପାତ ସୁଖକର ଘଟଣାଗୁଡ଼ିକୁ କେବଳ ଶ୍ରେୟ ମନେକରେ । ସୁଖ ଦୁଃଖର ଆପେକ୍ଷିକତାର ଊର୍ଦ୍ଧ୍ୱରେ ଥିବା ଆନନ୍ଦଘନ ସ୍ୱରୂପକୁ ଅନୁଭବ କରିପାରେ ନାହିଁ । କିନ୍ତୁ ଏକ ପ୍ରସାରଶୀଳ ଚେତନାପ୍ରାପ୍ତ ମଣିଷ ବିଶ୍ୱ ସୃଷ୍ଟିରେ ଅହରହ ଘଟୁଥିବା ପ୍ରତିଟି କ୍ଷୁଦ୍ର ମହତ୍ ଘଟଣା ପଛରେ ଥିବା ବିଶ୍ୱନିୟନ୍ତାଙ୍କ ମଙ୍ଗଳମୟ ଉଦ୍ଦେଶ୍ୟ ଉପଲବ୍ଧି କରିପାରେ । ତେଣୁ ଧ୍ୱଂସ ଭିତରେ ନବସୃଷ୍ଟିର, ମୃତ୍ୟୁରେ ଜୀବନର, ଶୂନ୍ୟତାରେ ପୂର୍ଣ୍ଣତାର ଓ ଦୁଃଖ ଶୋକର ଅନ୍ତରାଳରେ ଦିବ୍ୟାନନ୍ଦର ରସ ସେ ଆସ୍ୱାଦନ କରିପାରେ । ଧ୍ୱଂସ ଓ ସୃଷ୍ଟିର ଦେବତା ନଟରାଜ ଶିବ ହିଁ ବିଶ୍ୱ ପ୍ରକ୍ରିୟାର ପ୍ରତିଟି ଛନ୍ଦକୁ ନିୟନ୍ତ୍ରିତ କରନ୍ତି ତାଙ୍କର ନୃତ୍ୟରତ ପଦ ବିକ୍ଷେପରେ ।

ଘୂର୍ଣ୍ଣାୟମାନ ଋତୁଚକ୍ରରେ ଗ୍ରୀଷ୍ମ-ବର୍ଷା ଓ ଶୀତ-ବସନ୍ତର ସମାନ ସ୍ଥିତି । ଗ୍ରୀଷ୍ମର ଶୁଷ୍କ କଠୋର ରୁକ୍ଷତା, ବର୍ଷାର ଶ୍ୟାମ କୋମଳ ଆର୍ଦ୍ରତାରେ ବୁଡ଼ିଯାଏ । ଶୀତର ଶ୍ରୀହୀନତା ବସନ୍ତର ରମଣୀୟତାକୁ ଆମନ୍ତ୍ରଣ ଜଣାଇ ନେଇଆସେ । ଋତୁଚକ୍ରର ଆବର୍ତ୍ତନ ମଧ୍ୟରେ ମହାନଟର ପଦମଞ୍ଜୀର ସମତାଳରେ ଧ୍ୱନିତ ହୁଏ । ସେଇ ନଟରାଜଙ୍କର ପଦଧ୍ୱନି ଶୁଣିଥିଲେ କବି ରବୀନ୍ଦ୍ରନାଥ ଋତୁଚକ୍ରର ଆବର୍ତ୍ତନ ଓ ବିଶ୍ୱବିବର୍ତ୍ତନର ଧାରାରେ । ଶିବଙ୍କର ସର୍ବ ସଂସ୍କାର-ମୁକ୍ତ ନିର୍ବିକାର ବୈରାଗ୍ୟ କବିଚିତ୍ତକୁ ଭକ୍ତି ଭାବରେ ମୁଗ୍ଧ କରିଛି । ଋତୁରେ ଋତୁରେ ରୂପବୈଚିତ୍ର୍ୟରେ ନିତ୍ୟ ନବନବାୟମାନ ବିଶ୍ୱ ପ୍ରକୃତି ମଧ୍ୟରେ କବି ବିଶ୍ୱନାଥଙ୍କର ବିଶ୍ୱରୂପ ଦେଖିଛନ୍ତି । ତାଙ୍କର ଐଶ୍ୱର୍ଯ୍ୟ, ମାଧୁର୍ଯ୍ୟ ଓ ଲୌକିକ ମହିମାକୁ ଅବଲମ୍ବନ କରି କବିର କାବ୍ୟରେ ସଂଘଟିତ ହୋଇଛି ସର୍ବଦେବ ପୂଜା । କବି ରବୀନ୍ଦ୍ରନାଥ ସବୁଜ ଓ ସମସାମୟିକ ଓଡ଼ିଆ କବିମାନଙ୍କୁ ବହୁ ଭାବରେ ପ୍ରଭାବିତ କରିଛନ୍ତି । ଏହାର କାରଣ ସ୍ୱରୂପ ଲକ୍ଷ୍ୟ କରାଯାଇପାରେ, ସମାଜଜୀବନ ଓ ସାହିତ୍ୟ ଉଭୟ କ୍ଷେତ୍ରରେ ଏହି ସମୟରେ ଅନେକ ପରିବର୍ତ୍ତନ ଘଟିଥିଲା । ବିଜ୍ଞାନର ବିକାଶ ଓ ନବ ନବ ଉଦ୍ଭାବନ ଦ୍ୱାରା ପ୍ରାଚୀନ ସମାଜ-ବ୍ୟବସ୍ଥା, ପାରମ୍ପରିକ ଚିନ୍ତାଧାରା ଓ ପ୍ରତିଷ୍ଠିତ ଅନୁଷ୍ଠାନଗୁଡ଼ିକ ପ୍ରତି ରହିଥିବା ବିଶ୍ୱାସରେ ବହୁ ଆଲୋଡ଼ନ ସୃଷ୍ଟି ହେବାକୁ ଆରମ୍ଭ କରିଥିଲାବେଳେ ପ୍ରତ୍ୟେକ

ଔପନିବେଶିକ ପ୍ରେକ୍ଷାପଟରେ ସ୍ୱାଧୀନତା ଲାଭ କରିବା ପାଇଁ ପ୍ରବଳ ଜନଚେତନାର ଜାଗରଣ ଘଟିଥିଲା । ସମଗ୍ର ପୃଥିବୀରେ ଘଟିଥିବା ଏହି ପରିବର୍ତ୍ତନଶୀଳ ମୂଲ୍ୟବୋଧର ଧାରା ଭାରତର ସ୍ୱାଧୀନତା ଆନ୍ଦୋଳନର ପ୍ରବାହ ସହ ଏକାଠି ହୋଇ ଭାରତୀୟ ମାନସରେ ଏକ ବୈପ୍ଳବିକ ପରିବର୍ତ୍ତନ ଘଟାଇଥିଲା । ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ ଓ ପ୍ରସାର ଫଳରେ ଯୁବଗୋଷ୍ଠୀ ସମାଜରେ ପ୍ରଚଳିତ ରୀତିନୀତିକୁ ବିନା ପ୍ରଶ୍ନରେ ମାନିନେବାକୁ ପ୍ରସ୍ତୁତ ହେଲେ ନାହିଁ । ପାଶ୍ଚାତ୍ୟ ରୁଚିବୋଧ ଓ ଆଦର୍ଶ ଦ୍ୱାରା ପ୍ରଭାବିତ ତରୁଣ ପ୍ରାଣ ସମାଜକୁ ଅଗ୍ରଗତି ପଥରେ ଆଗେଇ ନେବା ଓ ସଂସ୍କାରପୀଡ଼ିତ ମଣିଷମାନଙ୍କୁ ପରିବର୍ତ୍ତିତ ମୂଲ୍ୟବୋଧ ପ୍ରତି ସଚେତନ କରିବା ଉଦ୍ଦେଶ୍ୟରେ ସଚେଷ୍ଟ ହୋଇଉଠିଥିଲା । ତେଣୁ ପ୍ରାଚୀନ ନାମରେ ପତନଶୀଳ ସମାଜ ବ୍ୟବସ୍ଥାର ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନ ଖୋଜୁଁଥିବା ଓଡ଼ିଆ ଯୁବକବିଗୋଷ୍ଠୀ ତାଙ୍କର ନିକଟ ଆଦର୍ଶ ଭାବରେ ପାଇଥିଲେ ସଦ୍ୟ ନୋବେଲ ପୁରସ୍କାର ବିଜେତା ସ୍ୱଦେଶୀ ଓ ପ୍ରତିବେଶୀ କବି ରବୀନ୍ଦ୍ରନାଥଙ୍କୁ ।

ଧ୍ୱଂସର ସ୍ତୂପ ଉପରେ ନୂତନ ଜୀବନ ସୃଷ୍ଟି ରୁଦ୍ରଶିବଙ୍କର କରୁଣା ଦ୍ୱାରା ସମ୍ଭବ ବୋଲି ବିଶ୍ୱାସ କରୁଥିଲେ ଶୈବଚେତନାର କବି ରବୀନ୍ଦ୍ରନାଥ । ପୁରାତନ ଗତାନୁଗତିକ ଜୀବନର କ୍ଷୁଦ୍ରତା, ତୁଚ୍ଛତା, ଜୀର୍ଣ୍ଣତା ଓ ଅବକ୍ଷୟର ବଳୟରୁ ମୁକ୍ତ ହେବା ଲାଗି ବୈଶାଖର ଘୂର୍ଣ୍ଣିବାତ୍ୟା ଓ ଆଷାଢ଼ବଜ୍ରର ଗୁରୁଗର୍ଜନରେ କବି ଶୁଣିପାରିଛନ୍ତି ରୁଦ୍ରଙ୍କର ଆହ୍ୱାନ ଓ ଅନୁରୋଧ କରିଛନ୍ତି—

ପିନାକେ ତୋମାର ଦାଓ ଟଙ୍କାର  
ଭୀଷଣେ ମଧୁରେ ଦିକ ଝଙ୍କାର  
ଧୂଲାୟ ମିଶାୟ ଯା' କିଛୁ ଧୂଲାୟ  
ଜୟୀ ହୋକ୍ ଯାହା ନିତ୍ୟ । (୫)

ଋତୁର ଆବର୍ତ୍ତନରେ ପ୍ରକୃତିର ରୌଦ୍ର ଜ୍ୱାଳାମୟ ରୂପ-ବୈଶାଖ ମଧ୍ୟରେ କବି ଦେଖିଛନ୍ତି ରୁଦ୍ରଙ୍କର ତାପସ ମୂର୍ତ୍ତି । ତପସ୍ୱୀର ବାହ୍ୟରୂପ ଆପାତ କଠୋର, ରୁକ୍ଷ ଓ ମଳିନ ହେଲେ ମଧ୍ୟ ତା'ର ଅନ୍ତର ସତତ କୋମଳ ଓ ସରସତାରେ ପୂର୍ଣ୍ଣ । ସଂସାରର ମଙ୍ଗଳବିଧାନ, ପ୍ରାଣୀମାନଙ୍କର କଲ୍ୟାଣସାଧନ ଓ ସର୍ବୋପରି ବିଶ୍ୱରେ ଶାନ୍ତି, ସମତା ଏବଂ ଆନନ୍ଦର ପ୍ରତିଷ୍ଠା ହିଁ ପ୍ରକୃତ ଯୋଗୀର ଲକ୍ଷ୍ୟ । ଯୋଗେଶ୍ୱର ଶିବଙ୍କର ଯୋଗସାଧନା ବିଶ୍ୱକଲ୍ୟାଣ ନିମନ୍ତେ ଅଭିପ୍ରେତ ।

---

(୫) ବୈଶାଖ-ଋତୁନୃତ୍ୟ—ରବୀନ୍ଦ୍ର ରଚନାବଳୀ ଅଷ୍ଟାଦଶ ଖଣ୍ଡ, ପୃ-୨୦୧

କବି ରବୀନ୍ଦ୍ରନାଥଙ୍କ ଦୃଷ୍ଟିରେ ବୈଶାଖ ସେହିପରି ଏକ ସର୍ବତ୍ୟାଗୀ ସନ୍ନ୍ୟାସୀ । ଜଗତରେ ନବବର୍ଷଣର ଆୟୋଜନ ପାଇଁ ତା'ର ଏ ଅଗ୍ନି ତପସ୍ୟା । କାଳ ବୈଶାଖୀର ଗୁରୁଗର୍ଜନରେ ଧ୍ୱନିତ ହୁଏ ରୁଦ୍ର ଶିବଙ୍କର ଆହ୍ୱାନ । ଆକସ୍ମିକ ଝଡ ଦ୍ୱାରା ଉତ୍କ୍ଷିପ୍ତ ଧୂଳିରାଶିରେ ବିକ୍ଷିପ୍ତ ହୋଇଥାଏ ଶିବଙ୍କର ଜଟାଜାଳ । ବୈଶାଖ ରୁଦ୍ର ଯାହା କିଛି ଆବର୍ଜନା ଦୂର କରି ନୂତନ ସୃଷ୍ଟି ନିମନ୍ତେ ପଥ ପରିଷ୍କାର କରିଦିଏ—

ଏସ, ଏସ, ଏସହେ ବୈଶାଖ
ତାପସ ନିଃଶ୍ୱାସ ବାଜେ ମୁମୂର୍ଷୁରେ ଦାଓ ଉଡାୟେ
ବତ୍ସରେର ଆବର୍ଜନା ଦୂର ହୟେ ଯାକ
ଯାକ ପୁରାତନ ସ୍ମୃତି ଯାକ ଭୁଲେ ଯାଓ ଯା ଗୀତି
ଅଶ୍ରୁ ବାଷ୍ପ ସୁଦୂରେ ମିଲାକ । (୬)

ଓଡ଼ିଆ କାବ୍ୟ କବିତାରେ ବୈଶାଖକୁ ଧ୍ୱଂସର ସାଧନ ରୂପେ ଯୋଗୀ ସନ୍ନ୍ୟାସୀ ଭାବରେ ଗ୍ରହଣ କରିବାର ରୀତି ରବୀନ୍ଦ୍ରନାଥଙ୍କର ପ୍ରତ୍ୟକ୍ଷ ପ୍ରଭାବର ପରିଣତି ବୋଲି କୁହାଯାଇପାରେ । କବି କାଳନ୍ଦୀଚରଣଙ୍କର ଅନୁରୂପ ଦୃଷ୍ଟିରେ ବୈଶାଖ ପରମତ୍ୟାଗୀ, ଶ୍ମଶାନ ପ୍ରେମିକ ଓ ଉଦାସୀନ ବୈରାଗୀ । ଜୀବନର ସମସ୍ତ ଛଳନା, ଜଞ୍ଜାଳ, ଜୀର୍ଣ୍ଣତା ଓ ଦୁର୍ବିପାକକୁ ଦଗ୍ଧ କରି ଜ୍ୟୋତିର ଜ୍ୱଳନ ନେଇ ବୈଶାଖର ଆଗମନ କବି କାମନା କରିଛନ୍ତି । ସାମାଜିକ ଜୀବନର ଅସାମଞ୍ଜସ୍ୟତା ଓ ଅସମତଳତାକୁ ଲୋପ କରିଦେବାକୁ ବୈଶାଖର ମରଣ-ଡମ୍ବରୁ ବାଜିଉଠୁ ବୋଲି ଆଶା କରିଛନ୍ତି—

ପ୍ରାଚୀନର ଦୈନ୍ୟତାରେ ସ୍ପର୍ଶୁ ତବ ଦୃଷ୍ଟି
ନବୀନର କାଳିମାରେ ମୁଥୁ କରୁ ବୃଷ୍ଟି
ଧ୍ୱଂସର ସାଧନା ତବ ଲୋଡ଼ିଆଣୁ ପ୍ରାଣମୟ ସୃଷ୍ଟି । (୭)

ରୁଦ୍ର ମହାକାଳଙ୍କର ଧ୍ୱଂସର ସାଧନା ମଙ୍ଗଳମୟ ଶଙ୍କରଙ୍କର ପ୍ରାଣମୟ ସୃଷ୍ଟି ସମ୍ଭାରରେ କ୍ଷେତ୍ର ପ୍ରସ୍ତୁତ କରେ । କବି ସେହି ବୈଶାଖୀ ରୁଦ୍ରକୁ ପୌରୁଷର ଏକମାତ୍ର ପ୍ରକାଶ ବୋଲି ମନେ କରିଛନ୍ତି । ତେଣୁ ବିଶ୍ୱସମସ୍ୟାରାଶିର ସମାଧାନ ପାଇଁ ଅଶାନ୍ତ ମାନବଚିତ୍ତରେ ଜ୍ୟୋତିର ପ୍ରକାଶ ଲାଗି ନବୀନ ପ୍ରାଚୀନ ମଧ୍ୟରେ

---

(୬) ବୈଶାଖ-ଋତୁନୃତ୍ୟ—ରବୀନ୍ଦ୍ର ରଚନାବଳୀ ଅଷ୍ଟାଦଶ ଖଣ୍ଡ, ପୃ-୨୦୨
(୭) କାଳନ୍ଦୀ ଚରଣ ଗ୍ରନ୍ଥାବଳୀ ୨ୟ ଖଣ୍ଡ—ପୃ-୩୪୭

ଲାଗିଥିବା ଦ୍ୱନ୍ଦ୍ୱର ଚିର-ଅବସାନ ନିମନ୍ତେ, ମର୍ତ୍ତ୍ୟରେ ସୁଶ୍ୟାମଳ ଜୀବନ ବିଭବ ଓ ସୁଶୀତଳ ଅମୃତୋତ୍ସବର ଆୟୋଜନ ପାଇଁ କବି ଉଗ୍ରକାନ୍ତ ବୈରାଗୀ ବୈଶାଖକୁ ବାରମ୍ବାର ଆହ୍ୱାନ ଜଣାଇଛନ୍ତି ।

ବୈକୁଣ୍ଠନାଥଙ୍କର ବୈଶାଖରୁଦ୍ର ଆତ୍ମଜୟୀ ସଂଯତ ସନ୍ନ୍ୟାସୀ । ବସନ୍ତର କୁଞ୍ଜବନରୁ ପୁଷ୍ପରାଶି ବୈଶାଖର ପ୍ରଚଣ୍ଡ ତେଜରେ ମାଟିରେ ଝଡ଼ିଯାଇଛି, ବକୁଳ ଚୁମ୍ବନହାର ଆଖିରେ ବ୍ୟଥାର କରୁଣ ଯନ୍ତ୍ରଣା । ମଳୟର ମୃଦୁସ୍ପର୍ଶ ଅପସରି ଯାଇଛି । ଯୌବନ ମଦମତ୍ତ ଉଚ୍ଛୃଙ୍ଖଳ ବିଶ୍ୱପ୍ରାଣରେ ସଂଯମ ବିଧାନ ପାଇଁ ବୈଶାଖ ବ୍ରହ୍ମର୍ଷି ରୁଦ୍ରମନ୍ତ୍ର ଉଚ୍ଚାରଣ କରୁଛି । କବି ଅନୁଭବ କରୁଛନ୍ତି ଯେ, ତାଙ୍କୁ ଯୌବନ ମୋହରୁ ମୁକ୍ତ କରି ଜୀବନକୁ ସଂହତ, ସୁଷମ ଓ ଶାନ୍ତ କରିପାରିବେ—ସେ ଗୁରୁ ହେଉଛନ୍ତି ବୈଶାଖ । ତେଣୁ କବି ସବିନୟ ଆହ୍ୱାନ ଜଣାଇଛନ୍ତି—

ଆସ ଧୀରେ ହେ ବୈଶାଖ ରୁଦ୍ରଗୁରୁ,<br>
ପିନ୍ଧି ତବ ଅନଳ ମୁକୁଟ । (୮)

କବି ପଦ୍ମଚରଣ ମଧ୍ୟ ବୈଶାଖ ରୁଦ୍ରଦେବତାଙ୍କୁ ତାଙ୍କର ସମସ୍ତ ଚପଳ-ଚିନ୍ତାରାଜିକୁ ଚଣ୍ଡ କିରଣରେ ଜାଳିପୋଡ଼ି ଭସ୍ମ କରିଦେବା ପାଇଁ କାତରସ୍ୱରରେ ସାଦର ନିମନ୍ତ୍ରଣ ଜଣାଇଛନ୍ତି । ସେ ଆତ୍ମବିଶ୍ଳେଷଣ କରି ଦେଖିଛନ୍ତି—ମୋହ, ମାୟା, ବାସନା, କାମନା କେବଳ ଜୀବନକୁ ଭାରାକ୍ରାନ୍ତ କରେ, ଆଶାର ମରୀଚିକା ପଛରେ ଦୌଡ଼ିବା ହିଁ ସାର ହୋଇଥାଏ । ଶେଷରେ କେବଳ ବିଫଳତା ଓ ଅପ୍ରାପ୍ତିର ହାହାକାର ନେଇ ମଣିଷର ଜୀବନ ଏକ ଅନ୍ତହୀନ ଯନ୍ତ୍ରଣା ଭିତରେ ଛଟପଟ ହୁଏ । ତେଣୁ କବିଙ୍କର ପ୍ରାର୍ଥନା ବୈଶାଖରୁଦ୍ର ରକ୍ତାନଳ ପ୍ରଜ୍ୱଳିତ କରି ତାଙ୍କର ବାସନା, ବିକାର, ମୋହ ଓ ଭ୍ରାନ୍ତି ସକଳ ଧ୍ୱଂସ କରିଦିଅନ୍ତୁ—

ଯେବେ ଶବେ ବସି ରୁଦ୍ରଦେବଙ୍କ ସାଧନା ହେବ ଚରମର ଯୋଗ,<br>
ମର୍ତ୍ତ୍ୟ ଜୀବନ ମୁହୂର୍ତ୍ତିକେ ପଛେ ହୋଇଯାଉ ଶୁଭଯୋଗ । (୯)

ବୈଶାଖରୁଦ୍ରର ପ୍ରଚଣ୍ଡ ମୂର୍ତ୍ତି, ଉନ୍ମାଦ—ଘୂର୍ଣ୍ଣିର ଚପ୍ତତାଣ୍ଡବ, ଅଗ୍ନିବର୍ଷି-ବାୟୁର ଭୀମସଂହାର ରୂପଦର୍ଶନରେ କବି ନାରାୟଣ ମୋହନ ବିଚଳିତ ହୋଇଉଠିଛନ୍ତି । ବୈଶାଖ ତାଙ୍କ ନିକଟରେ ସ୍ୱୟଂ ତ୍ରିପୁରାନ୍ତକ ରୁଦ୍ର ।

୮ । ଆସିଛୁ ବୈଶାଖରୁଦ୍ର—ବୈକୁଣ୍ଠନାଥ ପଟ୍ଟନାୟକ

୯ । ବୈଶାଖ—ପଦ୍ମଚରଣ ପଟ୍ଟନାୟକ, ଶତାବ୍ଦୀର ଶ୍ରେଷ୍ଠ କବିତା, ପୃ-୧୪୬

ହିମାଳୟର ସାନୁ ଦେଶରେ ଏକଦା କନ୍ଦର୍ପର ଚପଳତାରେ ରୁଷ୍ଟ ହୋଇ ତାଙ୍କୁ ରୋଷାଗ୍ନିରେ ଭସ୍ମ କରିଦେଇଥିବା ରୁଦ୍ର ବୋଧହୁଏ ପୁଣି ଥରେ କୌଣସି କାରଣରୁ କ୍ଷୁବ୍ଧ ହୋଇଛନ୍ତି । ତାଙ୍କର କୋପଶାନ୍ତି ଉଦ୍ଦେଶ୍ୟରେ କବି ବିନମ୍ର ଆବେଦନ ଜଣାଇଛନ୍ତି—

ସମ୍ବର ସଂହାରମୂର୍ତ୍ତି ତ୍ରିପୁର ଅନ୍ତକ
ଭୈରବ ତାଣ୍ଡବଲୀଳା କର ସମ୍ବରଣ
ସମ୍ବର ରୋଷ ପିଙ୍ଗଳ ନୟନ ପାବକ
ଦହେ ଦେଖ ମହୀ ଅଙ୍ଗ ଶଦଳ ବସନ
ହେ କ୍ଷିପ୍ତ ଧୂର୍ଜ୍ଜଟୀ ଆଜି ପଡ଼ିଛୁ କି ମନେ
ହିମାଦ୍ରି ସାନୁର ପୂର୍ବ ମନ୍ମଥ ମଥନ
ଦେଖ ଧରି ଯାଏ ଧସି ଚରଣ ତାଡ଼ନେ
ସମ୍ବର ଅମର୍ତ୍ତ୍ୟ ଶକ୍ତି କନ୍ଦର୍ପ ଧର୍ଷଣ । (୧୦)

କବି ମାନସିଂହଙ୍କର ଅନୁଭୂତି ଭିନ୍ନ ପ୍ରକାର । ରୁଦ୍ରବୈଶାଖ ଦିବସରେ ତୃଷାକୁଳ ଗ୍ରୀଷ୍ମତାପିତ ପ୍ରାଣୀମାନଙ୍କର କଷ୍ଟ ସେ ନିଜ ଭିତରେ ଅନୁଭବ କରିଛନ୍ତି । ପ୍ରକୃତିର ରୁକ୍ଷ ମଳିନ ଶ୍ରୀହୀନ ରୂପ ଓ ଚତୁର୍ଦ୍ଦିଗର ହା ହୁତାଶ ମଧ୍ୟରେ କ୍ଷୁଦ୍ର ମଲ୍ଲୀଫୁଲଟିର ସୁରଭିତ ପ୍ରକାଶ କବି ଅନ୍ତରକୁ ଶାନ୍ତକୋମଳ କରିଦେଇଛି । ଘନକୃଷ୍ଣ ମେଘାଚ୍ଛାଦିତ ତମସାଚ୍ଛନ୍ନ ଆକାଶରେ ମଝେ ମଝେ ବିଦ୍ୟୁତ୍‌ର କ୍ଷୀଣ ପ୍ରକାଶ ଆଲୋକର ସଙ୍କେତ ଦେବାପରି ବୈଶାଖର ରୁଦ୍ରତା ଓ ଧ୍ୱଂସ ପ୍ରକ୍ରିୟା ଭିତରେ ସୁରଭିତ ଶୁଭ୍ର କ୍ଷୁଦ୍ର ମଲ୍ଲୀଟିର ପ୍ରକାଶ ହିଁ ପ୍ରଳୟକାରୀ ପୁରୁଷର ସର୍ଜନକାମୀ ରସଘନ, ପ୍ରେମପୂର୍ଣ୍ଣ ହୃଦୟର ପରିଚୟ ପ୍ରଦାନ କରିଥାଏ । ମାନସିଂହଙ୍କର କବିପ୍ରାଣ ଧ୍ୱଂସ-ସୃଷ୍ଟିର ଏଇ ବିଚିତ୍ର ରହସ୍ୟକୁ ଉପଲବ୍ଧି କରି ଭକ୍ତିନମ୍ର ପ୍ରଣତି ଜଣାଇଛି—

ପ୍ରଳୟେ ସୃଜନକାମୀ ବିଚିତ୍ର ବିଧାନୀ
ସ୍ରଷ୍ଟାରେ ନମିଲି ଦେଇ ଭକ୍ତିର ପ୍ରଣାମି । (୧୧)

କେବଳ ବୈଶାଖ ନୁହେଁ, ବର୍ଷା ପ୍ରକୃତିରେ ମଧ୍ୟ ରୁଦ୍ରଶିବର ଫଟୋଗ୍ରାଫ୍ ପ୍ରକାଶିତ । ବୈଶାଖର ରୁଦ୍ରତା ଅନ୍ତରାଳରେ ବର୍ଷାର ଯେଉଁ ବ୍ୟଞ୍ଜନା ଲୁପ୍ତ

---

୧୦ । ବୈଶାଖ—ନାରାୟଣ ମୋହନ ଦେ, (ଉତ୍କଳ ସାହିତ୍ୟ ୧୯ଶ ଭାଗ, ପ୍ରଥମ ସଂଖ୍ୟା)

୧୧ । ମାସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ)

ଅଛୁ, ତାହା ଲକ୍ଷ୍ୟ କରିଥିଲେ କବି ରବୀନ୍ଦ୍ରନାଥ ଓ ଆଷାଢ଼ର ଘନଘଟାମୟ ରୂପରେ ଦେଖିଥିଲେ ଶଙ୍କରଙ୍କୁ—

ଓଗୋ ସନ୍ନ୍ୟାସୀ କି ଗାନ ଘନାଲ ମନେ
ଗୁରୁ ଗୁରୁ ଗୁରୁ ନାଚେର ଡମ୍ବରୁ
ବାଜିଲ କ୍ଷନେ କ୍ଷନେ
ତୋମାର ଲଲାଟେ ଜଟିଲ ଜଟାର ଭାର
ନେମେ ନେମେ ଆଜ ପଡ଼ିଛେ ବାରମ୍ବାର । (୧୨)

'ମେଘ ଗର୍ଜନରେ ନବବାରି ବର୍ଷଣ ଦ୍ୱାରା ଦାହ ନିବାରଣର ସୂଚନା ଯେପରି ବୈଶାଖର ରୁଦ୍ରକଣ୍ଠରେ ଶାନ୍ତିପାଠ । ଜୀର୍ଣ୍ଣତାର ଧ୍ୱଂସପରେ ନବସୃଷ୍ଟି ହେବ ଏହାର ସ୍ୱସ୍ତି ବାଚକ, ଧ୍ୱଂସ ମଧ୍ୟରୁ ବିରାମର ଶାନ୍ତି ମନ୍ତ୍ରପାଠ ।''

ସାଧକ ବୈଶାଖର ତପସିଦ୍ଧି ପରେ ଧରଣୀରେ ଅବତରି ଆସିଛୁ ବର୍ଷା । ଗର୍ଜନଶୀଳ ପର୍ଜନ୍ୟ, ମୂଷଳ ବୃଷ୍ଟିଧାରା ଓ ବଜ୍ର ବିଦ୍ୟୁତ୍‌ର ଘନ ଘନ ସ୍ଫୁରଣ ମଧ୍ୟରେ ରୁଦ୍ରଶିବ ଦେବତାର ଭୀମକାନ୍ତ ମୂର୍ତ୍ତି ମାନସିଂହଙ୍କର ଦୃଷ୍ଟିରେ ଉଦ୍‌ଭାସିତ ହୋଇଉଠିଛି । ଝଡ଼ର ପ୍ରଳୟ ସଙ୍ଗୀତରେ କବି ଶୁଣିପାରିଥିଲେ ଶଙ୍କର ନଟରାଜଙ୍କର ଚରଣ ମଞ୍ଜୀରର ଧ୍ୱନି । ସେ ଦିବ୍ୟଧ୍ୱନି କବିଙ୍କୁ ଆତ୍ମାନୁଭୂତି ଆଣି ଦେଇଛି । (୧୩) କବି ବୈକୁଣ୍ଠନାଥ ବର୍ଷାକୁ ଦେଖିଛନ୍ତି ବିଦ୍ରୋହୀ ବୀର ରୁଦ୍ର ରୂପରେ । ଚୌଦିଗରେ ପ୍ରବାହିତ ବାରିଧାରା, କ୍ଷୁବ୍ଧ ସିନ୍ଧୁ, କ୍ଷିପ୍ତ ପବନ ସବୁକିଛି କବିଙ୍କ ମନରେ ବିଦ୍ରୋହର ସ୍ପର୍ଶ ଦେଇଛି । ନବବର୍ଷାର ଅନୁରାଗ କବି-ହୃଦୟକୁ ଜଞ୍ଜାଳ ଓ ବନ୍ଧନମୁକ୍ତ କରିଛି । ସେ ଆକାଶ ପବନରୁଙ୍କ ପୁଲକିତ ହୋଇ ବର୍ଷାର ବଜ୍ରବାଣୀ ସହିତ ସମଛନ୍ଦରେ ବିପ୍ଳବର ସଙ୍ଗୀତ ଗାନ କରିଛନ୍ତି । ପୁଣି ବର୍ଷା ଆସିଛି ମଙ୍ଗଳମୟ ଶିବ ରୂପରେ । ମରୁଭୂମିରେ ପରିଣତ ହୋଇଥିବା ଜୀର୍ଣ୍ଣ ଦେଶରେ ମଙ୍ଗଳମୟ ସ୍ରଷ୍ଟାବେଶରେ ବର୍ଷାର ଆଗମନ ହୋଇଛି । ତା'ର ଶୁଭାଗମନ ବିଶ୍ୱକୁ ଛନ୍ଦମୟ କରିବା ସଙ୍ଗେ ବୃକ୍ଷ ଲତା, ନଦୀ ଓ ପର୍ବତ ପ୍ରଭୃତିରୁ ଅପସରି ଯାଇଛି ମୃତ୍ୟୁର ଅବସାଦ । କିନ୍ତୁ ବର୍ଷା ସ୍ୱୟଂ ସନ୍ନ୍ୟାସୀ । ମୃତ୍ୟୁରେ ଜୀବନର, ଧ୍ୱଂସରେ ସୃଷ୍ଟିର ସଞ୍ଚାର କରି ସେ ଅନାସକ୍ତ ଫେରିଯିବ । ବିଶ୍ୱର କଲ୍ୟାଣ ସାଧନ ହିଁ ବର୍ଷାଯୋଗୀର ଏକମାତ୍ର ଲକ୍ଷ୍ୟ । (୧୪)

---

୧୨ । ବର୍ଷା ମଙ୍ଗଳ, ରବୀନ୍ଦ୍ର ରଚନାବଳୀ (୮ମ ଖଣ୍ଡ), ପୃ-୨୧୨
୧୩ । ମାନସିଂହ ଗ୍ରନ୍ଥାବଳୀ (ପ୍ରଥମ ଖଣ୍ଡ), ପୃ-୪୭୧
୧୪ । ବୈକୁଣ୍ଠନାଥ ଗ୍ରନ୍ଥାବଳୀ (ପ୍ରଥମଭାଗ), ପୃ-୪୭୧

କବି ଗୋଦାବରୀଶ ମହାପାତ୍ରଙ୍କର ବର୍ଷା ଆବାହନ ମଧ୍ୟରେ ବୈପ୍ଳବିକ ଚେତନାର ପ୍ରକାଶ ଘଟିଛି । ରୁଦ୍ରଗ୍ରୀଷ୍ମରେ ତାପିତ ଅଶାନ୍ତ ଧରଣୀକୁ ଶାନ୍ତ ସବୁଜ କରି ସବୁରି ଅନ୍ତରରେ ଚେତନାର ଦୀପ୍ତ ସ୍ପର୍ଶ ଦେଇ ଶିବ ବର୍ଷାକୁ ପୃଥିବୀରେ ଅବତରଣ କରାଇଛନ୍ତି । (୧୫) କବି ଗଡ଼ନାୟକଙ୍କ 'ମୌସୁମୀ' ରୁଦ୍ରଶିବ ରୂପରେ ତୃଷ୍ଣି ଗତିର ହିଲ୍ଲୋଳରେ ପୂର୍ତ୍ତି ଶକ୍ତି ନେଇ ଧାଇଁଆସିଛି ଦଗ୍ଧୀଭୂତା ଧରଣୀ ବକ୍ଷକୁ । କବି କୁଞ୍ଜବିହାରୀ ଦାଶଙ୍କର ବର୍ଷା ରୁଦ୍ରଙ୍କର ପ୍ରଳୟଙ୍କରୀ ଶକ୍ତି ରୂପେ କଳ୍ପିତ । (୧୬) ପଣ୍ଡିତ କବି ନୃପେନ୍ଦ୍ର ପ୍ରସାଦ 'ବର୍ଷା ଆବାହନ' କରିଛନ୍ତି ରୁଦ୍ର ମନ୍ତ୍ରରେ । ତାଙ୍କର ବର୍ଷା ବଜ୍ରହସ୍ତା, ଭୈରବ ରୁଦ୍ର; କିନ୍ତୁ ସେ ପୁଣି ମଙ୍ଗଳମୟ ପ୍ରାଣଦ ଶିବ ।

ଆଧୁନିକ ଓଡ଼ିଆ କବିତାରେ କେବଳ ଭକ୍ତି ବା ଘୃଣାତ୍ମକ ଦିଗରୁ ଋତୁ ମଧ୍ୟରେ ରୁଦ୍ରଶିବଙ୍କର ସନ୍ଧାନ ରହିନାହିଁ । ଶବ୍ଦସାମ୍ୟ ଅବଲମ୍ବନରେ ଋତୁ ଓ ରୁଦ୍ର ଏକହୋଇ ଉଠିଛନ୍ତି । (୧୭) ଉପର୍ଯ୍ୟୁକ୍ତ ଭାବରେ କବିମାନେ ପ୍ରକୃତିର ପଟ୍ଟ-ଭୂମିରେ ରୁଦ୍ରଶିବଙ୍କର ସ୍ୱରୂପ ଲକ୍ଷ୍ୟକରି ଭୀତ ହୋଇଛନ୍ତି, ବହ୍ନିବାଗ୍ନି ପ୍ରଜ୍ୱଳିତ କରିଛନ୍ତି ଓ ସର୍ବୋପରି ଦିବ୍ୟାନନ୍ଦ ଅନୁଭବ କରିଛନ୍ତି ।

ହିନ୍ଦୁ ଐଶ୍ୱର୍ଯ୍ୟଶାଳୀ ଦେବଗଣଙ୍କ ମଧ୍ୟରେ ଭୋଗବିଳାସଠାରୁ ଦୂରରେ ରହି ତ୍ୟାଗ ଓ ତପସ୍ୟାରେ ଜୀବନଯାପନ କରି ବିଶ୍ୱକଲ୍ୟାଣ ନିମନ୍ତେ ନିତ୍ୟ ତପସ୍ୟାରତ ସଦାଶିବ ହିଁ ସଂସ୍କାରଧର୍ମୀ କବିର ଆଦର୍ଶରୂପେ ଗୃହୀତ ହେଲେ । ଶିବ ଯଜ୍ଞଧ୍ୱଂସୀ । ଶିବଙ୍କୁ ଅନାର୍ଯ୍ୟ, ପତିତ, ସ୍ଖଳିତ, ଅସ୍ପୃଶ୍ୟ ଓ ମାତୃହୀନ ପ୍ରଭୃତି ଆଖ୍ୟାଦେଇ ଆର୍ଯ୍ୟ ଯଜ୍ଞାନୁଷ୍ଠାନରୁ ବଞ୍ଚିତ କରାଯାଇଥିଲା । କିନ୍ତୁ ଶିବ ନିଜର ଆତ୍ମମର୍ଯ୍ୟାଦା ପ୍ରତିଷ୍ଠା ପାଇଁ ପୁରୁଷକାର ବଳରେ ଯଜ୍ଞଭାଗ ଲାଭ କରିବା ସଙ୍ଗେ ଆର୍ଯ୍ୟ ଦେବମଣ୍ଡଳୀରେ ନିଜପାଇଁ ଏକ ଚିରନ୍ତନ ସୁଦୀପ୍ତ ଆସନ ପ୍ରତିଷ୍ଠା କରିପାରିଥିଲେ । ସତ୍ୟସନ୍ଧାନୀ ମଣିଷର ଶିବ ହେଉଛନ୍ତି ପ୍ରଥମା ପ୍ରତୀକ । ସେ ଚିରଯୋଦ୍ଧା, ବ୍ରାତ୍ୟପତି । ବିପ୍ଳବ ମାଧ୍ୟମରେ, ଧ୍ୱଂସ ମାଧ୍ୟମରେ, ତାଙ୍କର ପ୍ରଳୟଙ୍କର ଶିଙ୍ଗାନାଦରେ ସେ ସମାଜର ସମସ୍ତ ଅସମତଳତା ଓ ଅସାମଞ୍ଜସ୍ୟକୁ ସମତଳ ଓ ସହିତ କରି ପାରନ୍ତି । ବିକଳାଙ୍ଗ ସୃଷ୍ଟିର ପୁନର୍ବିନ୍ୟାସ ପାଇଁ ରୌଦ୍ର-ଚେତନା ଅପରିହାର୍ଯ୍ୟ ।

---

୧୫ । ଜନ୍ମାଷ୍ଟମୀ (ଉଠ କଙ୍କାଳ), ଗୋଦାବରୀଶ ମହାପାତ୍ର

୧୬ । କୁଞ୍ଜବିହାରୀ ସଞ୍ଚୟନ (୧ମ ଭାଗ), ପୃ-୨୧୩

୧୭ । ପ୍ରକୃତି ବର୍ଣ୍ଣନ—ରାଧାମୋହନ ରାଜେନ୍ଦ୍ର ଦେବ

ଭାରତୀୟ ସମାଜବ୍ୟବସ୍ଥାରେ ଜାତିଗତ ବୈଷମ୍ୟ ଏପରି କାୟା ବିସ୍ତାର କରି ରହିଛି, ଯାହା ଫଳରେ ତଥାକଥିତ ନୀଚ ଗୋଷ୍ଠୀ ସମାଜିକ ନ୍ୟାୟ ଓ ଅଧିକାରରୁ ବଞ୍ଚିତ ହୋଇ ଲାଞ୍ଛିତ ଜୀବନଯାପନ କରୁଛନ୍ତି । ସବୁଠାରୁ ପରିତାପର ବିଷୟ ହେଲା, ଶୂଦ୍ରମାନେ ସେମାନଙ୍କ ପ୍ରତି କାଳି କାଳ ଧରି ହୋଇ-ଆସୁଥିବା ଅନ୍ୟାୟ ସମ୍ପର୍କରେ ସଚେତନ ନୁହନ୍ତି । ଅନ୍ଧ-ଧର୍ମ ମୋହରେ ସେମାନେ ମନେକରନ୍ତି, ଏ ପ୍ରକାର ସାମାଜିକ ବୈଷମ୍ୟ ତାଙ୍କ ପାଇଁ ବିଧି ନିର୍ଦ୍ଧାରିତ, ସେମାନଙ୍କର ଭବିତବ୍ୟ । ତେଣୁ ଭାଗ୍ୟ ବିରୋଧରେ ସ୍ୱରୋଚାରଣ କରିବା ଅନ୍ୟାୟ ଓ ଅଧର୍ମ ବୋଲି ସେମାନେ ମନେକରୁଥିବାରୁ ନିଜର ଶକ୍ତି ସାମର୍ଥ୍ୟର ପରିଚୟ ଦେବାକୁ ପ୍ରସ୍ତୁତ ନୁହନ୍ତି । ସେଥିଲାଗି କବି ବୈକୁଣ୍ଠନାଥ ସେମାନଙ୍କ ମଧ୍ୟରେ ସଚେତନତା ସୃଷ୍ଟି ପାଇଁ ରୁଦ୍ରଙ୍କ ଦୃଷ୍ଟାନ୍ତ ମାଧ୍ୟମରେ ଉଦ୍‌ବୋଧନ ଦେଇଛନ୍ତି । ଶୋଷଣ, ଅତ୍ୟାଚାର ଓ ଅନ୍ୟାୟ ବିରୋଧରେ ରୁଦ୍ରଙ୍କ ସଦୃଶ ପୌରୁଷ ପ୍ରକାଶ କରି ସମାଜରେ ନିଜର ନ୍ୟାଯ୍ୟ ପ୍ରତିଷ୍ଠା କରିବାକୁ ଆହ୍ୱାନ କରିଛନ୍ତି—'ଦେଖା ତୋ ପଉରୁଷ ହେ ଶୂଦ୍ର ରୁଦ୍ର ଭଳି' । (୧୮) କବିଙ୍କର ସାମ୍ୟବାଦୀ ଚେତନାଦୀପ୍ତ କେତେକ କବିତା ମଧ୍ୟରେ 'ରୁଦ୍ର ଦେବତା' ଅନ୍ୟତମ, ବିଦ୍ରୋହୀ, ସଂଗ୍ରାମଶୀଳ, ଦନ୍ତ୍ରହସ୍ତା, ତ୍ୟାଗୀ, ସଂସ୍କାରମୁକ୍ତ, ସନ୍ନ୍ୟାସୀ ଓ ନିଗୃହୀତ ଜୀବସକଳର ଅଧିପତି ଦେବତା ରୁଦ୍ରଶିବ କବିଙ୍କର ଆଦର୍ଶ । ସେହିଁ କେବଳ ସର୍ବହରା ଭିକ୍ଷୁଦଳକୁ ଅନ୍ୟାୟ ବିରୋଧରେ ଲଢ଼ିବାର ସାହସ ଦେଇପାରିବେ । ରୁଦ୍ରଙ୍କର ଭିକ୍ଷୁ ସ୍ୱରୂପରେ ସେ ଦେଖିଛନ୍ତି ନିକ୍ଷେପିତ ବିଶ୍ୱମାନବିକତା ପ୍ରତି ସହାନୁଭୂତି ।

ପୁରାତନ ଜୀର୍ଣ୍ଣ ବୁକୁରେ ରୁଦ୍ରଙ୍କର ନୃତ୍ୟ ନୂତନ ଯୁଗର ପଦଧ୍ୱନି । ତାଙ୍କର ଅନ୍ୟତମ କବିତା 'କପୋତ'ରେ ସେ ସୂଚନା ଦେଇଛନ୍ତି ସଂସାର ଜୀବନ, ବନ୍ଦୀତ୍ୱ ଓ ବନ୍ଦୀଶାଳାକୁ ଭାଙ୍ଗିଦେବା ପାଇଁ ଲୋଡ଼ା ପ୍ରଳୟ ପରିବେଶ । ଏକ ବ୍ୟାପକ, ବିସ୍ତୃତ ଓ ବିରାଟ ଚେତନାର ସ୍ତରରୁ ବିଚ୍ଛିନ୍ନ ହୋଇ ଏକ ତୁଚ୍ଛ କ୍ଷୁଦ୍ର ନୀଡ଼ର ଆଶ୍ରୟକୁ ଶ୍ରେୟ ମନେ କରୁଥିବା ସେଇ ଯାଯାବର କପୋତଟିକୁ କବି ବିଶାଳ ଧରଣୀର ଆହ୍ୱାନ ଓ ବିରାଟ ଆକାଶର ଆକର୍ଷଣ ସମ୍ପର୍କରେ ସଚେତନ କରାଇ ଦେଇଛନ୍ତି—

ଭୈରବ ରାଗେ ବାଜେ ରୁଦ୍ରର
ବିଷାଣର ଝଙ୍କାର

---

୧୮ । ଶୂଦ୍ର : ଉତ୍ତରାୟଣ—ବୈକୁଣ୍ଠନାଥ ପଟ୍ଟନାୟକ

ଆରେ ଯାଯାବର ଏ ଘରେ ତୋର
ପ୍ରଳୟର ଶୃଙ୍ଗାର (୧୯)

ରୁଦ୍ରଙ୍କର ବଜ୍ରଘୋଷ ସକଳ ବନ୍ଧନକୁ ଛିନ୍ନ କରେ, ନୃତ୍ୟ ମୁଦ୍ରାରେ ମୁକ୍ତିର ପଥ ଉନ୍ମୋଚନ କରେ ଓ ଧ୍ୱଂସର ପଥ ଦେଇ ଜୀବନକୁ ଆମନ୍ତ୍ରଣ ଜଣାଏ । ସୃଷ୍ଟି ଓ ଲୟର ପ୍ରତିଟି ଦିଗ ତାଙ୍କର ନୃତ୍ୟ-ମୁଦ୍ରାରେ ପ୍ରକାଶିତ ହୁଏ । ସଙ୍କୋଚନ ମୃତ୍ୟୁ—ପ୍ରସାରଣ ଜୀବନ । ମହାଜୀବନର ଅମୃତ ଆକର୍ଷଣକୁ ଏଡ଼ି ଦେଇ ବିଶ୍ୱମାନବ ଅନ୍ୟ କୌଣସି ପ୍ରକାର ସୁଖ ବା ଆନନ୍ଦ ଭିତରେ ତୃପ୍ତ ରହିପାରିବ ନାହିଁ । ଯେଉଁଦିନ ରୁଦ୍ରଙ୍କର ଦାରୁଣ ଦୀପ୍ତି ଦ୍ୱାର ଭେଦକରି ପ୍ରବେଶ କରିବ, ସେହିଦିନ ମୁକ୍ତିକାମୀ ମଣିଷ ପାଇଁ ସମସ୍ତ ଅବରୋଧ ଉନ୍ମୋଚିତ ହୋଇଯିବ । ସବୁ ଅର୍ଗଳ ଖୋଲିଯିବ । ରୌଦ୍ର ଚେତନା ବ୍ୟକ୍ତିକୁ ଆତ୍ମକେନ୍ଦ୍ରିକ କ୍ଷୁଦ୍ରତାରୁ ବୈକେନ୍ଦ୍ରିକ ମୁକ୍ତିବଳୟ ଭିତରେ ପ୍ରସାରିତ କରିଦିଏ ।

ସୃଷ୍ଟିର, ଜୀବନର ଓ ଚେତନାର ଆବାହନ ପ୍ରକାଶ ପାଇଛି କବି ବିନୋଦଙ୍କର 'ନନ୍ଦାଦେବୀ'ରେ । ଶିବ କାଳର ଅଧୀଶ୍ୱର ମହାକାଳ, କାଳୀ ମହାକାଳଙ୍କର ଅନୁସାରିଣୀ । ଶିବ ଅବିଚଳ, ଗୁଣହୀନ, ସୀମାହୀନ, ନୈର୍ବ୍ୟକ୍ତିକ ସତ୍ତା । ଅନ୍ତହୀନ ସାଗର ବକ୍ଷରେ ନିତ୍ୟନୃତ୍ୟରତ ଚଳଚଞ୍ଚଳ ଢେଉ ପରି ମହା-କାଳର ଧ୍ୟାନ ଗମ୍ଭୀର ନୀରବ ସତ୍ତାରେ ଚଳମାନ ମୂର୍ତ୍ତି ପ୍ରତିମା ମହାକାଳୀ ହିମାଳୟର ତୁଷାରାବୃତ ଗିରିଶୃଙ୍ଗର ସାନୁଦେଶରେ କବି ଧ୍ୟାନମଗ୍ନ ଶଙ୍କରଙ୍କର ଶାନ୍ତ ସୌମ୍ୟ ମୂର୍ତ୍ତିର କଳ୍ପନା କରିଛନ୍ତି—

ହିମଶିଳା ଆସନରେ ଧ୍ୟାନମଗ୍ନ ନଟ
ପିଙ୍ଗଳ ଅମ୍ବର ଚୁମ୍ବେ ଜଟ
ଗଙ୍ଗୋତ୍ରୀର ଉପବୀତ
ପରିହିତ ଶାର୍ଦ୍ଦୁଳର ଛାଲ
ନୀରବ ଗମ୍ଭୀର ମହାକାଳ ।

ଏହି ସମାଧିମଗ୍ନ ମହାକାଳଙ୍କର ସମୀପରେ ନନ୍ଦାଦେବୀ ଦିବ୍ୟାନନ୍ଦରେ ଆରାଧନାରତ । କିନ୍ତୁ ପୂର୍ବ ସାଗର ତଟଦେଶରୁ ପଶ୍ଚିମର ଅସ୍ତଶିଖର ପର୍ଯ୍ୟନ୍ତ ଅସୁରିକ କୃଷ୍ଣଛାୟା ଘୋଟି ରହିଛି । ରକ୍ତବୀର୍ଯ୍ୟର ଦଳ ଲକ୍ଷ ଲକ୍ଷ ଜୀବନକୁ ଅକାଳରେ ଧ୍ୱଂସ କରିଚାଲିଛନ୍ତି । ଏପରି ଏକ ସଙ୍କଟ କାଳରେ କବି ନୂତନ ସୃଷ୍ଟି ନୂତନ ଜୀବନ ଓ ସ୍ୱର୍ଣ୍ଣଶସ୍ୟର ସ୍ୱପ୍ନକୁ ବାସ୍ତବ ରୂପ ଦେବା ପାଇଁ ରୁଦ୍ରାଣୀ ନନ୍ଦା-ଦେବୀଙ୍କୁ ନିବେଦନ ଜଣାଇଛନ୍ତି—

୧୯ । କପୋତ : (ସନ୍ତ୍ରାସ ସ୍ତୂପ)—ବିନୋଦ ନାୟକ

ଜଗାଅ ରୁଦ୍ରରେ
ସକଳ ସଂଶୟ ମେଘ ବିଖଣ୍ଡିତ କର ଅନମ୍ବରେ ।

କାରଣ ଧ୍ୟାନମଗ୍ନ ରୁଦ୍ର ସୃଷ୍ଟିର ସଙ୍କଟରେ ମଧ୍ୟ ସହଜରେ ଜାଗ୍ରତ ହେବେ ନାହିଁ । କବିଗୁରୁ ରବୀନ୍ଦ୍ରନାଥ 'ଭୈରବେର ଧ୍ୟାନମାଝେ ଉମାର ଭୈରବୀ' ଶୁଣି ପାରିଥିବା ପରି କବି ବିନୋଦ ନାୟକ ମଧ୍ୟ ହିମାଚଳରେ ଧ୍ୟାନ-ମଗ୍ନ ନଟର ପାଦଦେଶରେ ସଦା ଜାଗ୍ରତ ରୁଦ୍ରାଣୀସ୍ୱରୂପା ନନ୍ଦାଦେବୀଙ୍କ ମଧ୍ୟରେ ସଙ୍କଟ ଅପସାରଣ ଶକ୍ତିର ସନ୍ଧାନ କରିଛନ୍ତି ।

ଅସ୍ୱୀକୃତି ଓ ସଂଶୟବାଦ ଆଧୁନିକ ଜୀବନର ଅନ୍ୟତମ ଲକ୍ଷଣ । ନାୟକକୁ ପ୍ରତିପ-ନାୟକ ଓ ପ୍ରତିପ-ନାୟକକୁ ନାୟକ ଭାବରେ ପ୍ରତିପାଦିତ କରିବାର ପ୍ରଚେଷ୍ଟା ଆଧୁନିକ ସାହିତ୍ୟରେ ଲକ୍ଷ୍ୟକରାଯାଏ । ପୌରାଣିକ ଚରିତ ବା ଘଟଣାକୁ କାବ୍ୟ-କବିତା ଏକ ବିଷୟ ବା ମାଧ୍ୟମ ରୂପେ ଗ୍ରହଣ କରାଯାଉ-ଥିଲେ ବି ତାହାକୁ, ସବୁବେଳେ ସେହି ପୌରାଣିକ ସ୍ୱରୂପରେ ଦେଖାଯାଉ ନାହିଁ, ବରଂ ତାହାର ଏକ ନୂତନ ବ୍ୟାଖ୍ୟା କରାଯାଉଛି । କବି ଜ୍ଞାନୀନ୍ଦ୍ର ବର୍ମାଙ୍କର 'ହିରଣ୍ୟକଶିପୁ' ଆଧୁନିକ ସଂଶୟବାଦୀ, ଯୁକ୍ତିବାଦ ମଣିଷର ପ୍ରତିଭୂ ଯୁଗଯୁଗର ବିଶ୍ୱାସ ଉପରେ ସେ କୁଠାରାଘାତ କରିଛି, ବିନା ପ୍ରଶ୍ନରେ ତଥାକଥିତ ପ୍ରତିଷ୍ଠିତ ତତ୍ତ୍ୱକୁ ମାନିନେଇ ନାହିଁ । ତା'ର ମାନସିକ ଚେତନା ମଙ୍ଗଳମୟ । ସେ ସତ୍ୟର ସନ୍ଧାନ ପାଇଁ ପ୍ରଣୋଦିତ ହୋଇଛି । ସମସ୍ତ ମଳିନତା, ଅସ୍ପଷ୍ଟତାକୁ ଦୂର କରିବାର ପ୍ରଚେଷ୍ଟା ତା' ନିକଟରେ ପ୍ରକାଶ ପାଇଛି । ପ୍ରହ୍ଲାଦ ଏଠାରେ ଅନ୍ଧ-ବିଶ୍ୱାସର ପ୍ରତୀକ । କିନ୍ତୁ ହିରଣ୍ୟକଶିପୁ ଧ୍ୱଂସର ଆରାଧକ; ସତ୍ୟ ପାଇଁ ଜିଜ୍ଞାସା ମାତ୍ର ନାହିଁ, ଅଛି ପ୍ରମାଣ ପାଇଁ ଦୃଢ଼ ପ୍ରତ୍ୟୟ । ଆବିଳ ସୃଷ୍ଟିକୁ ସେହି ଅବସ୍ଥାରେ ରଖିବା ଅପେକ୍ଷା ତାହାକୁ ଧ୍ୱଂସ କରିଦେବାକୁ ସେ ଶ୍ରେୟସ୍କର ମନେ କରିଥିଲା । ପ୍ରତିଷ୍ଠିତ ସୁବିଧାବାଦୀ ଗୋଷ୍ଠୀର ଚକ୍ରାନ୍ତରେ ଶିବ ବା ମଙ୍ଗଳର ଉପାସକ ହିରଣ୍ୟକଶିପୁକୁ ମାରିବାକୁ ପଡ଼ିଥିଲା । ତେଣୁ କବି କ୍ଷୋଭ ପ୍ରକାଶ କରିଛନ୍ତି ହିରଣ୍ୟକଶିପୁର ମୃତ୍ୟୁରେ—

ତୁମେ କରିଥିଲ ଧ୍ୱଂସର ଆରାଧନା
ଆବିଳ ସୃଷ୍ଟି ନେଇଥିଲ ନାହିଁ ମାନି
ତୁମେ ପାଇଥିଲ ଶିବର ସମ୍ବେଦନା
ତୁମେ ଗୁହିଁଥିଲ ନାଶିବାର ପାଇଁ ଗ୍ଲାନି । (୧୦)

---

୧୦ । ହିରଣ୍ୟକଶିପୁ—ଜ୍ଞାନେନ୍ଦ୍ର ବର୍ମା, (ଶତାବ୍ଦୀର ଶ୍ରେଷ୍ଠ କବିତା ସଙ୍କଳନ, ପୃ-୩୮୪)

ରୁଦ୍ରଶିବ ଚେତନା ପ୍ରତି ଉନ୍ମୁଖତା ଅନେକ ଆଧୁନିକ କବିତାରେ ପ୍ରକାଶିତ । କବି ଧ୍ୱଂସରେ ପ୍ରଳୟରେ ଭଗବାନଙ୍କର ରୁଦ୍ରସତ୍ତାର ଅନୁଭବ କରିବା ସଙ୍ଗେ ସୃଷ୍ଟିରେ ଓ ପ୍ରାକ୍ ସୃଷ୍ଟିର ପରିକଳ୍ପନାରେ ମଧ୍ୟ ସେହି ମଙ୍ଗଳମୟ ପୁରୁଷଙ୍କର କରୁଣାଘନ ସ୍ୱରୂପର ପରିଚୟ ପାଇଛି । କବି ବିନୋଦ ନାୟକ ଶିବଙ୍କର କଲ୍ୟାଣୀୟ ସମ୍ବେଦନାମୟ ଓ କାରୁଣିକ ସ୍ୱରୂପର ପ୍ରକାଶ ଓ ଆରୋପ କରିଛନ୍ତି ନିଜଠାରେ । ସମସ୍ତ ଉଗ୍ରତା, ଭୟଙ୍କରତା ଓ ନିର୍ମମତାକୁ ଶିବ ଭାବରେ ଶାନ୍ତ, ପ୍ରୀତିପଦ ଓ କମନୀୟ କରିବାର ସ୍ପୃହା ତାଙ୍କ ଅନ୍ତରରେ ଉଦ୍ଦୀପିତ ହୋଇଛି ।

ପ୍ରକାଶିତ ପରିବେଷର ବିମ୍ବରେ
ମୁଁ ହିଁ ପ୍ରସ୍ଫୁଟିତ ଜ୍ୟୋତିକମଳ
ମୁଁ ହିଁ ଶିବ ! (୨୧)

ରୁଦ୍ରଙ୍କର ବିଷାଣ ଘୋଷରେ ସମାଧିର ଦ୍ୱାର ଉନ୍ମୁକ୍ତ ହୁଏ, ମୃତ୍ୟୁ-ପୂର୍ବ ଅନ୍ଧକାର ଆଲୋକିତ ହୋଇଯାଏ, ସମସ୍ତ ବିଫଳ ଆଶା, ଆକାଂକ୍ଷା, ବେଦନା ଓ ମୃତ୍ୟୁର ବିଲମ୍ବିତ ସକଳ ତାଙ୍କର ତୃତୀୟ ନେତ୍ରର ଅଗ୍ନିପିଣ୍ଡରେ ଧ୍ୱଂସ ହୋଇଯାଏ । କିନ୍ତୁ ସେସବୁ ପ୍ରଳୟ ଭିତରେ ଲୀନ ହୋଇଯାଏ ନାହିଁ, ଦକ୍ଷିଣାବର୍ତ୍ତି ଶଙ୍ଖ ସଦୃଶ ମାତୃ କ୍ଷେତ୍ରରେ ପୁଣି ନବ ଜୀବନର ସଙ୍କଳ୍ପ ଯିଏ ଆଣନ୍ତି, ସେ ଶିବ । ପୃଥିବୀକୁ ଜୀବସତ୍ତା ଆସିବା ପୂର୍ବରୁ ତା'ର ଜନ୍ମ କୁଣ୍ଡଳୀରେ ସମସ୍ତ ଶଷ୍ଟ ଅମଙ୍ଗଳ ଖଣ୍ଡନ କରି କଲ୍ୟାଣ ଓ ମଙ୍ଗଳର ବାର୍ତ୍ତା ଯିଏ ଦିଅନ୍ତି, ସେ ଶିବ ।

ଶିବଙ୍କର ପାରମ୍ପରିକ ଭିକ୍ଷୁକ ରୂପ ଏଠାରେ ଉଦ୍‌ଘାଟିତ ହୋଇଛି । ସେ ଭିକ୍ଷୁଦାନ ଗ୍ରହଣ କରନ୍ତି. କିନ୍ତୁ ସେ ଦାନ ପ୍ରେମର, ଭକ୍ତିର, ଶ୍ରଦ୍ଧାର । କୌଣସି କ୍ଷମତାସମ୍ପନ୍ନ ଉଦ୍ଧତହସ୍ତର ପ୍ରେମହୀନ, ସମ୍ବେଦନାହୀନ ଭିକ୍ଷାକୁ ପ୍ରେତଘୃଣାରେ ସେ ତୃଣସଦୃଶ ଜାଳି ଦିଅନ୍ତି । ସେ ପ୍ରେମର ଦେବତା, କଲ୍ୟାଣର ମୂର୍ତ୍ତି, ମଙ୍ଗଳର କର୍ତ୍ତା । କେବଳ ସୃଷ୍ଟିରେ ନୁହେଁ, ପ୍ରାକ୍ ସୃଷ୍ଟିର କଳ୍ପନାରେ ସେଇ ମଙ୍ଗଳମୟ ପୁରୁଷଙ୍କର କଲ୍ୟାଣର ସ୍ପର୍ଶ ରହିଥାଏ । କବି ଏଠାରେ ଶିବ ଭାବରେ ଉଦ୍ଦୀପିତ । ସଂସାରର, ସମାଜର ଶୁଭବିଧାନରେ ତାଙ୍କର ମଙ୍ଗଳମୟ ଇଚ୍ଛାର ପ୍ରକାଶ ସର୍ବତ୍ର ସେ ଲକ୍ଷ୍ୟ କରିଛନ୍ତି ।

---

(୨୧) ଶିବ (ସ୍ୱପ୍ନସ୍ତୂପ)—ବିନୋଦ ନାୟକ

ଶିବଙ୍କର ଦ୍ୱିବିଧ ଅଭିବ୍ୟକ୍ତି ସାହିତ୍ୟର ମୁଖ୍ୟ ଉପଜୀବ୍ୟ । ପ୍ରଥମରେ ସେ ଏକ ଭାବମୂର୍ତ୍ତି, ଦର୍ଶନ ଓ ସାଧନା । ଦ୍ୱିତୀୟରେ ସେ ମାନବିକ ରୂପ-ଗୁଣଯୁକ୍ତ ଏକ ସାକାର ଚରିତ୍ର । ତାଙ୍କର ଏହି ଉଭୟସ୍ୱରୂପ ଯୁଗେ ଯୁଗେ ସାହିତ୍ୟିକ ପ୍ରେରଣାର ଉତ୍ସ ହୋଇଆସିଛି । ତେବେ ଆଧୁନିକ କବିମାନଙ୍କ ନିକଟରେ 'ଶିବକଥାର ମୂଳ ହେଉଛି, ଆତ୍ମଚୈତନ୍ୟରେ ଉଦ୍‌ବୁଦ୍ଧ ହେବାଲାଗି ଗୋଟିଏ ପ୍ରସ୍ତୁତିପୋପାସନା । ସେଇ ପ୍ରସ୍ତୁତି ହିଁ ଚିନ୍ତାରେ ଚେତନାରେ ନିଷ୍ଠାରେ ସଫଳ ହୋଇଉଠେ—ବ୍ୟଷ୍ଟିର ଓ ସମଷ୍ଟିର ଜୀବନରେ । (୨୨) ଆଧୁନିକ କବି ବ୍ୟକ୍ତିନିଷ୍ଠ । ତେଣୁ ଶିବ କବିର ବ୍ୟକ୍ତି ଚେତନାର ଭିତ୍ତିଭୂମିରେ ପ୍ରତିଷ୍ଠିତ ହେଲେ ମଧ୍ୟ ବ୍ୟକ୍ତିରୁ ସମଷ୍ଟିମୁଖୀ ହୋଇଛନ୍ତି । ପ୍ରତ୍ୟେକ କବିର ପ୍ରକାଶଭଙ୍ଗୀ ଭିନ୍ନ ହେଲେ ବି ଅନୁଭବର ଶିବ ଓ ଶୈବତତ୍ତ୍ୱ ଅଭିନ୍ନ ।

---

୨୨ । ଶିବ ଭାବନା, ପୃ-୧୪—ସୁଧାଂଶୁ ମୋହନ ବନ୍ଦୋପାଧ୍ୟାୟ



# ଓଡ଼ିଆ ଉପନ୍ୟାସରେ କେତୋଟି ବଶିଷ୍ଟ ନାରୀଚରିତ୍ର

ସାହିତ୍ୟରେ ସାଧାରଣତଃ ତିନୋଟି ପ୍ରମୁଖ ବିଷୟର ଉପଯୋଗ କରାଯାଇ ଆସୁଛି—ଈଶ୍ୱର, ପ୍ରକୃତି ଓ ନାରୀ । ପ୍ରତ୍ୟେକଟି ବିଷୟ ପାଇଁ କ୍ଷେତ୍ର ମଧ୍ୟ ଊଣାଅଧିକେ ଭିନ୍ନ । ଈଶ୍ୱରଙ୍କ ପାଇଁ, ପ୍ରକୃତି ପାଇଁ କାବ୍ୟ କବିତାର କ୍ଷେତ୍ର ହେଉଛି ପ୍ରଶସ୍ତ । ନାରୀ ପାଇଁ କାବ୍ୟ କବିତା ନାଟକ ପ୍ରଭୃତି ଥିଲେ ବି ଗଳ୍ପ ଉପନ୍ୟାସରେ ତାର ପ୍ରୟୋଜନ ମନେହୁଏ ଅନିବାର୍ଯ୍ୟ । ଏ ପ୍ରକାର ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ ପାଇଁ ନାରୀ ବିରହିତ ନାଟକ ବା ଉପନ୍ୟାସ ରଚନା କରାଯାଏ ସତ, କିନ୍ତୁ ତାର ପରିମାଣ ଏକାନ୍ତ ନଗଣ୍ୟ । ଏକ ହଜାରରେ ଏକ କହିଲେ ଚଳିବ । ଏଥିପାଇଁ ମୁଖ୍ୟ କାରଣ ହେଉଛି ନାରୀ ସର୍ବତୋଭାବରେ ପୁରୁଷ ସମାଜର ଆନନ୍ଦ ବା ଆକର୍ଷଣ । ଏ ପ୍ରସଙ୍ଗରେ ଭର୍ତ୍ତୃହରିଙ୍କର ଉକ୍ତି ଉଲ୍ଲେଖ କରାଯାଇପାରେ—

ସ୍ମିତେନ ଭାବେନ ଚ ଲଜ୍ଜୟା ଭିୟା
ପରାଙ୍ମୁଖୈରର୍ଧକଟାକ୍ଷବୀକ୍ଷଣୈଃ
ବଚୋଭିରୀର୍ଷ୍ୟା କଳହେନ ଲୀଳୟା
ସମସ୍ତଭାବୈଃ ଖଳୁ ବନ୍ଧନଂ ସ୍ତ୍ରୀୟଃ ।

ଅର୍ଥାତ୍—"କି ସ୍ମିତରେ, କି ଭାବରେ, କି ଲଜ୍ଜାରେ, କି ଭୟରେ, କି ବଚନରେ, କି ଈର୍ଷାରେ, କଳହରେ କିମ୍ବା ଲୀଳାବିଭ୍ରମରେ ସର୍ବତୋଭାବରେ ନାରୀ ବନ୍ଧନ ଆକର୍ଷଣ । ଇଂରେଜ କବି ଚସର୍ ମଧ୍ୟ ଏହି ଭାବର ସମର୍ଥନ କରନ୍ତି ।

ଉପନ୍ୟାସରେ ନାରୀଚରିତ୍ରର ଭୂମିକା ଦୁଇଟି ଦିଗରୁ ବିଶେଷ ଭାବରେ ବିଚାର୍ଯ୍ୟ । ପ୍ରଥମତଃ ଆନନ୍ଦଦାନ ଓ ଦ୍ୱିତୀୟତଃ ଶିକ୍ଷାଦାନ । ଏହି ପ୍ରସଙ୍ଗରେ ନାରୀର ଅନ୍ତରଙ୍ଗ ଓ ବହିରଙ୍ଗ ସ୍ୱରୂପ ଦୁଇଟି ବିଚାରଣୀୟ । ତା'ର ଅନ୍ତରଙ୍ଗ ସ୍ୱଭାବଟି ଅତଳ ସାଗର ପରି । ଯେମିତି ସାଗରର ଗଭୀରତା ତା'ର ତରଙ୍ଗ ଲୀଳାରୁ ବୁଝାଯାଏନା, ସେହିପରି ନାରୀ ହୃଦୟର ଗଭୀରତା ତାର ବାହ୍ୟ

ପ୍ରକାଶରୁ କଳନା କରିହୁଏ ନାହିଁ । କେବଳ ପୁରୁଷ ପାଇଁ ନୁହେଁ, ତା' ନିଜପାଇଁ ମଧ୍ୟ ଏହା ଉଣାଅଧିକେ ସତ୍ୟ, ଯେହେତୁ ସେ ନିଜେ ଏକ ରହସ୍ୟ । ତାର ବହିରଙ୍ଗ ଦିଗଟି ହେଉଛି ତାର ଭାବସମୃଦ୍ଧ ବା ଅଭିବ୍ୟକ୍ତ ଅବସ୍ଥା—ଯାହା ମୁଖ୍ୟତଃ ମାୟା ମରୀଚିକା ପରି ଝିଲ୍‌ମିଲ୍ କରେ ଏବଂ ଆଖିଠାରି ଡାକେ ।

ଏହି ମୌଳିକ ସତ୍ତାରେ ଉପନ୍ୟାସର ଚରିତ୍ରୀଭୂତ ନାରୀକୁ ଲେଖକ କେଉଁ ଭାବରେ ଓ କିପରି ଭାବରେ ବ୍ୟକ୍ତ କରିପାରେ ତାହାହିଁ ହେଉଛି ଅସଲ କଥା ଏବଂ ପାଠକ ବା ଗ୍ରାହକ କିପରି ଓ କେତେ ପରିମାଣରେ ତାହା ଘେନିପାରେ ବା ବୁଝିପାରେ ତାହା ପର କଥା । ଏହି ଉଭୟର ସମନ୍ୱୟରେ ନାରୀଚରିତ୍ରର ଉତ୍ତୀର୍ଣ୍ଣତା ନିର୍ଭର କରେ । ଏହି କାରଣରୁ ଅନେକ ସୁନ୍ଦର-ହୋଇପାରିଥାନ୍ତା—ଭଳି ନାରୀ ଚରିତ୍ର ଠିକ୍ ହୋଇପାରେ ନାହିଁ । ଅଥଚ ତା' ସତ୍ତ୍ୱେ କିଛି କିଛି ଆକର୍ଷଣ ମଧ୍ୟ କରେ । ଯେପରି ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ ଉପନ୍ୟାସର 'ସରଦେଈ' । ଏ କ୍ଷେତ୍ରରେ ଚରିତ୍ରର ଉପଯୋଗିତା ବା ଚରିତ୍ରର ଚିତ୍ରଣ ଦୃଷ୍ଟିରୁ ଲେଖକ ଅନ୍ତର୍ଦୃଷ୍ଟିସମ୍ପନ୍ନ ନୁହନ୍ତି, ଏଠି କିଛି ଭାବପ୍ରବଣ ଆବେଦନ ମାତ୍ର ରହିଛି । କଳାର ମିଥ୍ୟା ବା ମିଥ୍ୟା ସୃଷ୍ଟିକୁ ସତ୍ୟ ରୂପେ ପ୍ରତିପନ୍ନ ବା ପ୍ରତିଭାତ କରି ପାରିନାହାନ୍ତି, ଯେମିତି ଐତିହାସିକ ଉପନ୍ୟାସର ଏକ ସଫଳ ସ୍ରଷ୍ଟା Robert Gravesଙ୍କ Wife to Mr. Miltonର Mary Powell ଚରିତ୍ର । ଏପରିକି କୁହାଯାଏ ଯେ ପାଓ୍ୱେଲ ହେଉଛନ୍ତି ନିଜେ ଗ୍ରେଭ୍‌ସ ବା ଗ୍ରେଭ୍‌ସ ହେଉଛନ୍ତି ପାଓ୍ୱେଲ । ସରଦେଈ ଚରିତ୍ରଟି ଉତ୍ତୀର୍ଣ୍ଣ ହେବାର କିନ୍ତୁ ବହୁ ଅବକାଶ ଥିଲା । ଅନ୍ୟ ପକ୍ଷରେ ଗୋଟିଏ ଗୋଟିଏ ଏମିତି ଚରିତ୍ର ଅଛି ତାହା ବହୁବର୍ଣ୍ଣିତ ବା ଅଳ୍ପବର୍ଣ୍ଣିତ ହେବାସତ୍ତ୍ୱେ ସଫଳ ହୋଇଛି ଯେପରି ସାରିଆ, ଚନ୍ଦ୍ରକଳା ବା ମାନମୟୀ । ଆଲୋଚ୍ୟ କ୍ଷେତ୍ରରେ ଓଡ଼ିଆ ଉପନ୍ୟାସର କେତୋଟି ବିଶିଷ୍ଟ ନାରୀଚରିତ୍ରର ବିବେଚନା କରାଯାଉଛି ।

**ଚାନ୍ଦାଣୀ**—ଫକୀରମୋହନ ସେନାପତିଙ୍କର କାଳଜୟୀ ଉପନ୍ୟାସ 'ଛମାଣ ଆଠଗୁଣ୍ଠ'ର ଚାନ୍ଦାଣୀ ନିରମ୍ବ ପ୍ରାପ୍ତ ରାମଚନ୍ଦ୍ର ମଙ୍ଗରାଜଙ୍କର ଥିଲେ ଆତ୍ମା । ରଙ୍ଗମଞ୍ଚ ଉପରକୁ ଅଭିନୟ କାଳରେ ଆସେନା ସୂତ୍ରଧର । କିନ୍ତୁ ଅଭ୍ୟନ୍ତରରେ ସେ ଥିଲେ ମଧ୍ୟ ପ୍ରକାଶ୍ୟ ଅଭିନୟରେ ଲିପ୍ତ ହୋଇଥାଏ ତାର କରଣି, ଚାଳନଶକ୍ତି । ଏଠାରେ ମଙ୍ଗରାଜଙ୍କ ଜୀବନ ମଞ୍ଚରେ ଚାନ୍ଦାଣୀ ସମ୍ମୁଖକୁ ଆସି ନାହାନ୍ତି, ସେ ସୂତ୍ରଧର । ଏପରିକି ମୃତ୍ୟୁ ପରେ ବି ତାଙ୍କର ପ୍ରଭାବ ନାୟକ ମଙ୍ଗରାଜଙ୍କ ଅଭିନୟକର୍ମକୁ ନିୟନ୍ତ୍ରଣ କରିଛି ।

ଗାଁରେ ସ୍ତ୍ରୀଲୋକମାନଙ୍କ ମଧ୍ୟରେ ସ୍ୱାମୀ ସେବା କଥା ପଡ଼ିଲେ ସମସ୍ତେ ସାନ୍ତାଣୀଙ୍କର ଉଦାହରଣ ଦେଉଥିଲେ । ତାଙ୍କର ଚରିତ୍ର ଥିଲା ଯେପରି ନିର୍ମଳ ସେହିପରି ଧର୍ମାନୁରାଗୀ । କିନ୍ତୁ ସ୍ତ୍ରୀର ସର୍ବସ୍ୱ ଧନ ପତି ସୋହାଗ ବିଧାତା ତାଙ୍କ କପାଳରୁ ପୋଛି ଦେଇଥିଲା । ମାତ୍ର ତାଙ୍କର ସେଥିପାଇଁ କୌଣସି ଶୋଚନା ନ ଥିଲା । କେବଳ ପତିସେବା ନୁହେଁ, ମନୁଷ୍ୟର ସେବାକୁ ସେ ଜୀବନର ପରମ ସୌଭାଗ୍ୟ ବୋଲି ମନେ କରୁଥିଲେ । ସପ୍ତପଦୀର ସମସ୍ତ ଶପଥ ତାଙ୍କ ଜୀବନରେ ହୋଇଥିଲା ସାର୍ଥକ । ଶାଳଗ୍ରାମର ଶୋଇବା ବସିବା ପରି ତାଙ୍କର ହସକାନ୍ଦ, ସୁଖଦୁଃଖ ଓ ଭାବକଳା ମଧ୍ୟରେ ଭେଦ ବୁଝିବା କଷ୍ଟ । ଘରେ ସେ ତାଙ୍କର କର୍ତ୍ତୃତ୍ୱ ଆଦୌ ଜାହିର କରୁ ନଥିଲେ । ସ୍ୱତଃ ତାହା ଜାହିର ହୋଇ ରହିଥିଲା ।

ଗାଁର ସବୁ ଲୋକଙ୍କ ସୁଖଦୁଃଖରେ ସେ ଥିଲେ ଜଣେ ଦରଦୀ ଅଂଶୀଦାର । କାହାଘରେ ଖାଇବାକୁ ନାହିଁ । କାହାଝିଅ ପୁଆଣି ହେବ ସବୁ ଆଡ଼କୁ ତାଙ୍କର ନଜର ଥିଲା । ସାଆନ୍ତଙ୍କ ଅଗୋଚରରେ ଯାହାକୁ ଯେତେ ପାରନ୍ତି ସହାୟତା କରନ୍ତି । ସେ ଦିଅନ୍ତୁ ବା ନ ଦିଅନ୍ତୁ କିନ୍ତୁ ସବୁ ଦୁଃଖୀରଙ୍କୀଙ୍କର ସେ ଥିଲେ ଆଶା ଭରସାର ସ୍ଥଳ; ଓଡ଼ିଆ ଉପନ୍ୟାସରେ ବିଶ୍ୱଜନନୀ ପରି । ଶିବୁ ପଣ୍ଡିତଙ୍କ ଭାଷାରେ ସାନ୍ତାଣୀ ଥିଲେ ଦୟା, କ୍ଷମା, ସ୍ନେହ, ଭକ୍ତି ପ୍ରଭୃତି ସ୍ୱର୍ଗୀୟ ଗୁଣାବଳୀର ମୂର୍ତ୍ତିମତୀ ଦେବୀ । କାହାର ଦୁଃଖ ଦେଖିଲେ ସେ ଦୋଷୀ ନିର୍ଦ୍ଦୋଷର ବିବେଚନ କରିପାରୁ ନ ଥିଲେ । ସ୍ୱାମୀଙ୍କ ସହିତ ନିଜର ଅଧିକାର ନେଇ ବା ତାଙ୍କ ପ୍ରତି ମଙ୍ଗରାଜଙ୍କର ଉଦାସୀନତା କାରଣରୁ ସେ କେବେ କଳି କରିବାର କେହି ଜାଣେନା । କିନ୍ତୁ ମଙ୍ଗରାଜଙ୍କ କ୍ରୋଧ ବା ଅନ୍ୟାୟର ଶିକାର ହୋଇଥିବା ବ୍ୟକ୍ତି ପାଇଁ ସେ ବିବିଧ ପ୍ରକାର ଯୁକ୍ତି ଦର୍ଶାଇ ତା'ର ନିର୍ଦ୍ଦୋଷତା ପ୍ରମାଣ କରିବାକୁ ଗୁଡ଼ନ୍ତିନ । ସେଥିପାଇଁ ସହିବାକୁ ପଡୁଥିବା ସମସ୍ତ ଗଞ୍ଜଣା ପ୍ରତି ସେ ନିର୍ବିକାର ।

ଘରକରଣା ବୁଦ୍ଧି ତାଙ୍କର ପ୍ରଖର ନ ଥିଲା । ଧନ ସଞ୍ଚିବା ଅପେକ୍ଷା ଅଭାବୀ ବ୍ୟକ୍ତିଙ୍କୁ ଧନ ଦେବାରେ ସେ ପାଉଥିଲେ ପରମତୃପ୍ତି । ମନର ଦୁଃଖ ମନରେ ମାରିବାରେ ସେ ଥିଲେ ଏକ କୁଶଳୀ କଳାକାର । ନିଜ ଦୁଃଖର କାରଣ ସମ୍ପର୍କରେ ସେ କାହାରିକୁ ଜଣାଉ ନ ଥିଲେ । କିନ୍ତୁ ବେଳେ ବେଳେ ଜଣେ ଲୋକ ଜାଣିଯାଏ । ସେ ହେଲା ମୁକୁଳା । ପିଲାଟି ଦିନୁ ତାଙ୍କ କୋଳରେ କାଖରେ ମଣିଷ କରିଥିଲା ଓ ବାହାଘର ସମୟରେ ବାପଘରୁ ତାଙ୍କ ସାଥିରେ ଆସିଥିଲା । ସାନ୍ତାଣୀଙ୍କର ଅତି ମନକଷ୍ଟ ବେଳେ ଧାଇଁ ଆସି ମୁକୁଳା ତାଙ୍କ

ମୁହଁକୁ କେବଳ ଜଳ ଜଳ ହୋଇ ଚାହେଁ । ସାନ୍ତାଣୀ ମୁଣ୍ଡ ତଳକୁ ପୋତି ଦିଅନ୍ତି । ସେଇ ନୀରବତା ଭିତରେ ଜଣେ ଜଣାଏ ସମବେଦନା ଓ ଅନ୍ୟ ଜଣେ ପାଏ ସାନ୍ତ୍ୱନା ।

ରାମଚନ୍ଦ୍ର ମଙ୍ଗରାଜ ନିଜ ସ୍ତ୍ରୀକୁ ପ୍ରେମରେ ଦୁଇପଦ କଥା କହିବାର କେହି ଶୁଣିନାହାନ୍ତି । ବରଂ ତାଙ୍କ ପ୍ରତି ଉପେକ୍ଷା ପ୍ରଦର୍ଶନ କରିଛନ୍ତି ଜୀବନସାରା । ଚରମ ଅପମାନ ମଧ୍ୟ ଦେଇଛନ୍ତି । ରାତି ଅଧଯାଏ ମଙ୍ଗରାଜ ଚମ୍ପା ସହିତ ଏକାନ୍ତ ବସି ମନ୍ତ୍ରଣା କରନ୍ତି, କାହା ଜମି ଉପରେ ଜବରଦଖଲ କରିବେ, କାହା ଘର କିପରି ଭାଙ୍ଗିବେ ଇତ୍ୟାଦି । ବାଘ ସିଂହ ପରିବାରର ସର୍ବନାଶ କରିବାର ଯୋଜନା କରୁଥିବାବେଳେ ରାତିର ଦ୍ୱିତୀୟ ପ୍ରହରରେ ସାନ୍ତାଣୀ ଆସି କବାଟ ପାଖରେ ନୀରବରେ ଠିଆ ହେଲେ ଓ ସ୍ୱାମୀଙ୍କର ବିରକ୍ତିସତ୍ତ୍ୱେ ଧୀର ସ୍ୱରରେ ବିନମ୍ରରେ କହିଲେ, "ମୁଁ କହୁଛି ରାତି ହେଲା, ଶୋଇପଡ଼, ଆଉ ସେ କଥାଗୁଡ଼ା ପାଞ୍ଚ ନାହିଁ ।" କିନ୍ତୁ ତାଙ୍କ କଥା ସରିବା ପୂର୍ବରୁ ପୋଇଲୀ ଚମ୍ପାର ଅବଜ୍ଞା-ସୂଚକ 'ହୁଁ' ଓ ମଙ୍ଗରାଜଙ୍କର ତାଙ୍କୁ ବାହାରକୁ ଯିବାର ନିର୍ଦ୍ଦେଶ ଉଭୟ ଥିଲା ତାଙ୍କ ପ୍ରତି ମର୍ମନ୍ତୁଦ ଆଘାତର କାରଣ । କୌଣସି ବିବାହିତା ପତ୍ନୀ ପୋଇଲୀ ସମ୍ମୁଖରେ ସ୍ୱାମୀଠାରୁ ଅପମାନ ପାଇବା ଓ ସ୍ୱାମୀଙ୍କ ସାକ୍ଷାତରେ ପୋଇଲୀର ଅବଜ୍ଞା ସୂଚକ ଆଚରଣକୁ ସହ୍ୟ କରିବା ମରଣାଧିକ କଷ୍ଟକର । ତା'ପରଦିନଠାରୁ ସେଇ ଅଭିମାନିନୀ ନାରୀ ମୁହଁରୁ କେହି ଆଉ କଥା ଶୁଣିନି । କେବଳ ଦେଖିଛି ଲୁହଭରା ଦୁଇଟି ଆଖି । ଯେତେ ମନ ଭୁଲାଇବାକୁ ଚେଷ୍ଟା କରୁଥିଲେ ବି ସ୍ୱାମୀଙ୍କର ଅପକର୍ମ ତାଙ୍କୁ ବହୁ ଭାବରେ ବିଚଳିତ କରୁଥିଲା··· ଅଥଚ ସେ ତାଙ୍କୁ ନିବୃତ୍ତ କରିପାରୁ ନ ଥିଲେ । ଅନେକ ଆଘାତ ସହି ସହି ମଧ୍ୟ ତାଙ୍କ ମନର ସ୍ପର୍ଶକାତରତା ଊଣା ହୋଇ ନ ଥିଲା । ହେଲେ ଶେଷ ଆଘାତରେ ମନର ଟାଣ ଆଉ ସେ ରଖିପାରିଲେନି । ସାରିଆର ଜମି ଫେରେଇ ଦେବାକୁ ସାନ୍ତଙ୍କ ଗୋଡତଳେ ପଡ଼ି ଯେତେ କାକୁତି ମିନତି କଲେ ସବୁ ହେଲା ନିଷ୍ଫଳ । ପୁଣି ବାଘ ସିଂହ ପରିବାରର ସର୍ବନାଶର କାରଣ ଅନୁମାନ କରି ସେ ସମ୍ପୂର୍ଣ୍ଣ ଭାଙ୍ଗିପଡ଼ିଲେ, ଅନ୍ନ ଜଳ ସ୍ପର୍ଶ କଲେ ନାହିଁ । କିନ୍ତୁ ଯାହାଙ୍କ ପାଇଁ ଥିଲା ତାଙ୍କର ଏ ଅନ୍ତର୍ଦାହ, ଯାହାଙ୍କ ପାଇଁ ସେ କରୁଥିଲେ କଠିନ ପ୍ରାୟଶ୍ଚିତ୍ତ ସେ କିନ୍ତୁ ସାମାନ୍ୟ ସଚେତନ ନ ଥିଲେ ।

ସାନ୍ତାଣୀଙ୍କର ଜୀବନ ଚରିତ ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ ମଙ୍ଗରାଜଙ୍କୁ ବିବାହ କରିବା ପରେ ସେ ଶାନ୍ତିରେ ଦିନଟିଏ ମଧ୍ୟ ବିତାଇ ପାରି ନ ଥିବେ । ତାଙ୍କର ଚରିତ୍ର ବିଷୟର, କୋମଳ ମନ, ସ୍ନେହ, ମାୟାମମତା,

ଧର୍ମପରାୟଣତା ଓ ପରୋପକାର ପ୍ରବୃତ୍ତିର ସମ୍ପୂର୍ଣ୍ଣ ବିପରୀତ ଥିଲେ ତାଙ୍କର ସ୍ୱାମୀ । ସେ କେବଳ ବୁଝିଥିଲେ 'ଟଙ୍କା ଏବ ମନୁଷ୍ୟାଣାଂ ଚତୁର୍ବର୍ଗ ଫଳପ୍ରଦା' । ଦିବାରାତ୍ର ତାଙ୍କର ଟଙ୍କା ଥିଲା ଧ୍ୟାନ ଓ ଟଙ୍କା ଥିଲା ଜ୍ଞାନ । ମଣିଷର ସୂକ୍ଷ୍ମ ମନୋବୃତ୍ତିର ସାମାନ୍ୟ ଅନୁଭବ ତାଙ୍କର ନ ଥିଲା । ତେଣୁ ଏହିପରି ପୁରୁଷର ସ୍ୱାମୀତ୍ୱକୁ ସ୍ୱୀକାର କରି ଜୀବନଯାକ କେବଳ ନୀରବ ଯନ୍ତ୍ରଣାରେ ସେ ଛଟପଟ ହେଉଥିଲେ । ସ୍ୱାମୀ ନିକଟରୁ ପ୍ରେମ ଓ ଶ୍ରଦ୍ଧା ପାଇ ନ ଥିବା ନାରୀର ଯନ୍ତ୍ରଣାକାତର ଜୀବନକୁ ଅନୁଭବ କରିବା ସହଜ ବ୍ୟାପାର ନୁହେଁ । ଆଉ କେହି ସାଧାରଣ ନାରୀ ହୋଇଥିଲେ ଆପଣା ଜୀବନକୁ ବ୍ୟର୍ଥ ମନେ କରିଥାନ୍ତା । ସାନ୍ତାଣୀଙ୍କର ନୀରବ ଅଥଚ ଦୃଢ଼ ବ୍ୟକ୍ତିତ୍ୱ ତାଙ୍କ ଜୀବନକୁ ବ୍ୟର୍ଥ ହେବାକୁ ଦେଇନି । ବରଂ ସେ ଏକରୁ ଅନେକ ଭିତରେ ପ୍ରସରି ଯାଇଛନ୍ତି । ତାଙ୍କର ମୃତ୍ୟୁରେ ପ୍ରତ୍ୟେକ ଶୋକକାତର ହୋଇ ଅନୁଭବ କରିଛନ୍ତି, ତାଙ୍କର ଆପଣାର କେହି ଜଣେ ଚାଲିଗଲା ।

ତାଙ୍କର ସ୍ୱାମୀ ମଙ୍ଗରାଜ ଥିଲେ ପଥର ହୃଦୟ । ଶୋଷଣ ପୀଡ଼ନ କେବଳ ଥିଲା ତାଙ୍କର କାମ । ପ୍ରଥମ ଓ ଶେଷଥର ତାଙ୍କ ଆଖିରୁ ଲୁହ ଝରିଥିଲା କେବଳ ସାନ୍ତାଣୀଙ୍କ ମୃତ୍ୟୁରେ । ସେ ଅବା ବୁଝିପାରିଥିଲେ ଯେ ଅବହେଳିତା ସାନ୍ତାଣୀ ଥିଲେ ତାଙ୍କର ପୁଣ୍ୟବଳ । ପଥରତଳେ ଯେ ଗୁପ୍ତ ଝରଣାଟିଏ ଥାଇପାରେ ସାନ୍ତାଣୀଙ୍କ ମୃତ୍ୟୁ ଦେଇଥିଲା ତାର ସନ୍ଧାନ । ସେଥିପାଇଁ ନିଜ ମୃତ୍ୟୁ ବେଳକୁ ତାଙ୍କର ଯେମିତିକି ଆତ୍ମୋଦ୍ଧାର ହୋଇଯାଇଥିଲା । ନିଜ ଝରଣାର ଜଳରେ ସେ ଆର୍ଦ୍ର ସିକ୍ତ ହୋଇଯାଇଥିଲେ—ତେଣୁ ଛ-ମା-ଆ-ଗୁଁ—ଗୁଣି ହେଉଥିଲେ ।

ଫକୀର ମୋହନଙ୍କ ଏ ବିଚିତ୍ର ଦମ୍ପତି ପରିକଳ୍ପନା ପ୍ରକୃତରେ ବଡ଼ ଅଦ୍ଭୁତ । ଏ ସଦା ନୀରବ ଧର୍ମପତ୍ନୀ କେଡ଼େ ମହୀୟସୀ, ତାଙ୍କ ମୃତ୍ୟୁପରେ ବେଶି ଅନୁଭୂତ ହୁଏ । ପରିତ୍ୟକ୍ତା ଶକୁନ୍ତଳାଙ୍କ ପାଖେ ପାଖେ ରହିଥିବା ଅଦୃଶ୍ୟମାନା ସାନୁମତୀ ପରି ଦୁଃଖ ଓ କରୁଣାମୟୀ ସାନ୍ତାଣୀ ଯେମିତିକି ସାଥୀରେ ମଙ୍ଗରାଜଙ୍କ ପାଖେ ପାଖେ ରହି ତାଙ୍କ ଜୀବନ୍ମୃତ ଆତ୍ମାର ଉଜ୍ଜୀବନ କରିଛନ୍ତି, ତାଙ୍କ ଜୀବନର ଅନ୍ତିମ ମୁହୂର୍ତ୍ତରେ ।

**ଚରିତ୍ରକଳା**—ବିବିଧ ଚରିତ୍ର ଚିତ୍ରଣରେ ହଟକାରିତା ସୃଷ୍ଟି କରିବାରେ ସେନାପତି ଥିଲେ ଜଣେ ସଫଳ ଯାଦୁକର । ପ୍ରତ୍ୟେକଟି ଚରିତ୍ର ଏକ ଏକ ସ୍ୱତନ୍ତ୍ର ବ୍ୟକ୍ତିସତ୍ତା । ଔପନ୍ୟାସିକ ଫକୀରମୋହନଙ୍କର ଥିଲା ଏକ ପୂର୍ଣ୍ଣାଙ୍ଗ ଦୃଷ୍ଟି । ନାରୀ ଚରିତ୍ରର ବିଶେଷ ସୂକ୍ଷ୍ମ ସୁନ୍ଦର ଦିଗଗୁଡ଼ିକ ଯେପରି ତାଙ୍କ ଆଖି

ଆଗରେ ଉଦ୍‌ଘାଟିତ ହୋଇଛି ସେହିପରି ଅତ୍ୟନ୍ତ କ୍ରୂର, କୁଟିଳ ଓ ଚତୁର ଦିଗଟି ମଧ୍ୟ ପ୍ରକାଶିତ ହୋଇଛି । ସେନାପତି ତାଙ୍କ ଉପନ୍ୟାସ ଓ ଗଳ୍ପଗୁଡ଼ିକରେ କାବ୍ୟ ନାୟିକା ପରିବର୍ତ୍ତେ ଲୋକ ନାୟିକାମାନଙ୍କୁ ହିଁ ଚରିତ୍ର ରୂପେ ଗ୍ରହଣ କରିଛନ୍ତି । ସେଥିପାଇଁ ସେନାପତିଙ୍କ ନାରୀ ଚରିତ୍ରଗୁଡ଼ିକ ଏତେ ସ୍ୱାଭାବିକ ମନେ ହୁଅନ୍ତି ।

'ମାମୁଁ'ର ନାୟିକା ଚନ୍ଦ୍ରକଳା 'ଛ ମାଣ ଆଠଗୁଣ୍ଠ'ର ବହୁବନ୍ଦିତା ନାୟିକା ଚମ୍ପାର ଏକ ମାର୍ଜିତ ସହରୀ ସଂସ୍କରଣ । ପ୍ରଥମତଃ ବେଶଭୂଷା, ଚାଲିଚଳଣ ଓ କଥାବାର୍ତ୍ତାରେ ସେ ବେଶ୍ ରୁଚିସମ୍ପନ୍ନା । ଯାହାକୁ ଦେଖିଲେ ଲୋକେ ନାଜରଙ୍କ ଗୃହିଣୀ ବୋଲି ମନେ କରନ୍ତି । 'ଚମ୍ପା ଫୁଲ ପରି ଚହଟ ଗୋରି ନୁହେଁ, ଦେହର ରଙ୍ଗଟା ଶ୍ୟାମଳ, ମୁହଁଟିର ଗଢ଼ଣ ସୁନ୍ଦର, ତା' ଉପରେ ପୁଣି ଓଲଟେ ଛ'ଅର ଘଷା ମଜାରେ ସୁନ୍ଦରପଣ ଫୁଟି ଦିଶେ । ତା'ର ଏଇ ସୁନ୍ଦର ରୂପଟି ହେଲା ନାଜରାଣୀଙ୍କ ଚିନ୍ତାର କାରଣ । ଚେଇଁଥିଲେ ଚନ୍ଦାର ଚିନ୍ତା, ଶୋଇଲେ ବି ସ୍ୱପ୍ନରେ ସେଇ । କିନ୍ତୁ ଘର ଗୋଟାକୁ ସମ୍ଭାଳିଛି ସେଇ...... କିପରି ସ୍ୱାମୀଙ୍କ ସହିତ ତାର ସମ୍ପର୍କ ପ୍ରତି ସନ୍ଦେହ ପ୍ରକାଶ କରିବେ, ବୁଝିପାରୁ ନ ଥିଲେ ନାଜରାଣୀ । କିନ୍ତୁ ତାଙ୍କର ମନୋଭାବ ବୁଝିବା ପାଇଁ ଚନ୍ଦ୍ରକଳାର ଆଦୌ ବିଳମ୍ବ ହୋଇ ନ ଥିଲା । 'ଯାହା ବୁଦ୍ଧି ପାଖରେ ନାଜର ବାବୁଙ୍କର ବୁଦ୍ଧି ହଟିଯାଏ, ଏ ବା କେତେ କଡ଼ାରେ ଗଣ୍ଡାଏ' । ଚନ୍ଦ୍ରକଳା ବୁଝିଲା ନାଜରାଣୀକୁ କୌଣସିମତେ ନିଜ କବ୍‌ଜାରେ ରଖିବାକୁ ହେବ ନ ହେଲେ ଅସୁବିଧା ଅନେକ । ତା' ଯୋଜନାର ପ୍ରଥମ ପର୍ଯ୍ୟାୟ ହେଲା ନାଜରାଣୀଙ୍କର ସନ୍ତୋଷ ବିଧାନ । ସେଥିପାଇଁ ଚନ୍ଦ୍ରକଳା ବଜାର ସଉଦା କରିବାକୁ ଯାଇ ଅଳ୍ପ ପଇସାରେ ଏତେ ଜିନିଷ ଆଣିବାର ଦେଖି ନାଜରାଣୀଙ୍କର ଲୋଭୀ ମନ ସହଜରେ ପୋଷ ମାନିଗଲା । ନାଜର ନଟବର ସେଥିରେ ଆଉ ଟିକେ ଯୋଗ କଲେ ଯେ ସେ ନିଆଣ୍ଡ୍ରି ସ୍ତ୍ରୀ ଲୋକ, କିନ୍ତୁ ପ୍ରଚୁର ଧନର ମାଲିକ, ତା'ର ଆଉ କେହି ନାହିଁ । ସେଥିପାଇଁ ତାଙ୍କୁ ଆଶ୍ରା କରି ପଡ଼ିଛି ସବୁ ସମ୍ପତ୍ତି ସେ ତାଙ୍କର ନାମରେ ଲେଖି-ଦେବ । ତା' ପରଠାରୁ ନାଜରାଣୀଙ୍କ ପାଟିରେ ପଡ଼ିଗଲା ଶକ୍ତ କୋଲପଟିଏ । ମନ ଭିତରେ ଯେ ଟିକିଏ ଅନ୍ଧାରିଆ ରକମ ଗୋଳମାଳ ଥିଲା, ଏକାବେଳକେ ସାଫ୍ । ଚନ୍ଦ୍ରକଳାର ଚିନ୍ତା ଗଲା । କିନ୍ତୁ ନାକଫୋଡ଼ିଆମା ସହିତ ଚନ୍ଦ୍ରକଳାର ଝଗଡ଼ା ବେଳେ ନାକଫୋଡ଼ିଆମା ସାଆନ୍ତଙ୍କ ସହିତ ତା'ସମ୍ପର୍କର ରହସ୍ୟ ସାନ୍ତାଣୀଙ୍କ ଆଗରେ ଖୋଲିଦେବା ପରେ ଯେଉଁ ବିଷମ ପରିସ୍ଥିତି ସୃଷ୍ଟି ହୋଇ-ଥିଲା ତାକୁ ଚନ୍ଦ୍ରକଳା ଯେପରି ବିଚକ୍ଷଣତାର ସହିତ ସମ୍ଭାଳି ନେଲା, ଦେଖିଲେ

ତା'ର ଆଶୁ ବୁଦ୍ଧି ଓ ଚତୁରତାର ସ୍ପଷ୍ଟ ପରିଚୟ ମିଳିଥାଏ । ପୋଲିସ୍ ହେଲେ ବି ତା'ର ଅହଂକାର ଥିଲି ବହୁତ । ନାଜରାଣୀ ତାଙ୍କ ବୋଉଙ୍କୁ ଚନ୍ଦ୍ରକଳାକୁ ଚିହ୍ନାଇବାକୁ ଯାଇ ପୋଇଲି କହିବାରୁ ତା'ର ମାନହାନି ହୋଇଗଲା । ମନରେ ଭାବିଲା, 'ହଁ ତୋ ଚଉଦ ପୁରୁଷ ତେର ପୋଇଲି ରଖିଥିଲେ··· । ଏପରି ଭାବିବା ତା' ପକ୍ଷରେ ସ୍ୱାଭାବିକ ଥିଲା, କାରଣ ପ୍ରକୃତରେ ଚନ୍ଦ୍ରକଳା ହିଁ ଥିଲା ଘରର ଓ ନଟବରଙ୍କର ପ୍ରକୃତ ମାଲିକାଣୀ ।

ନାଜରଙ୍କ ପ୍ରରୋଚନାରେ ଉଚ୍ଚରାୟ ବଂଶର ଖାନଦାନୀ ଅଳଙ୍କାର ପୁଟୁଳା ଚନ୍ଦ୍ରା ଦକ୍ଷତାର ସହିତ ଚୋରାଇ ନେଇଛି ଏବଂ ଅଳଙ୍କାରତକ ହସ୍ତଗତ ହେବାପରେ ନାଜର ନିଜ ବୁଦ୍ଧିକୁ ଧନ୍ୟ ଧନ୍ୟ କରିଛନ୍ତି । ଯେଉଁଦିନ ପ୍ରଭୁଦୟାଳ ସହିତ ସନ୍ଧ୍ୟାରେ ରଙ୍ଗରସ କରୁଥିବା ବେଳେ ନାଜର ପହଞ୍ଚି ଯାଇଛନ୍ତି ଚନ୍ଦ୍ରା ଧରାପଡ଼ି ଯାଇ ଯାଇ ନିଜର ଉପସ୍ଥିତ ବୁଦ୍ଧିରେ ଏପରି ହଟଚମଟ କରିଦେଇଛି ଯେ ନାଜରଙ୍କ ପରି ଧୂର୍ତ୍ତ ଶୃଗାଳ ମଧ୍ୟ ପ୍ରକୃତ ଘଟଣାଟା ବୁଝିପାରି ନାହିଁ, ବରଂ ଏକ ପ୍ରକାର ମ୍ଳାନ ଆତ୍ମସନ୍ତୋଷ ଲାଭ କରିଛି । ଗୁଡ଼୍ ଫ୍ରାଇଡ଼େର ଶୋଭାଯାତ୍ରା ଦେଖେଇବା ଆଳରେ ଚନ୍ଦ୍ରକଳା, ନାଜରାଣୀ ଓ ତାଙ୍କର ମାଙ୍କୁ ଛାତ ଉପରକୁ ନେଇଯାଇ ରାଘବ ଓ ପ୍ରଭୁଦୟାଳକୁ ନାଜରଙ୍କ ସିନ୍ଦୁକରୁ ସରକାରୀ ତହବିଲ ଚୋରି କରିନେବାରେ ସାହାଯ୍ୟ କରିଛି ଓ ନାଜର ବନ୍ଦୀହୋଇ ଯିବାପରେ ଚୋର ଭୟ ଦେଖାଇ ବିଶାଖା ଦେଇଙ୍କର ଅଳଙ୍କାରତକ ନିଜେ ଚୋରାଇ ନେଇଛି । ତା' ଘର ଖାନତଲାସି ବେଳେ କୌଣସି ଚୋରମାଲ୍ ମିଳିନି, ତା' ଘର ବାହାର ମାଟିତଳୁ ଆଳଙ୍କାର ବାହାରିଛି ।

ଚୋରି ଅଭିଯୋଗରେ ଚନ୍ଦ୍ରକଳା ବନ୍ଦୀହୋଇ ଯାଇଛି; କିନ୍ତୁ କୋର୍ଟରେ ଜବାବଶୁଆଲ ବେଳେ ସେ ଆଦୌ ଭୟଭୀତ ନ ହୋଇ ଓଲଟା ଆକ୍ରମଣାତ୍ମକ ଭଙ୍ଗୀରେ କହିଛି, 'ମୁଁ ଟଙ୍କା ଚୋରି କରିଛି କିଏ ଦେଖିଛି ? ମୋ ଘରୁ କିଛି ମାଲ ବାହାରିନି—କେହି ଲୋକ ଦୁଷ୍ମନି କରି ମୋର ଘର ପଛରେ ଗାତରେ ରଖିଦେଇ ଯାଇଛି—ମାଲ ଘରୁ ନବାହାରିଲେ କେହି ସଜା ପାଏ ନାହିଁ' । ବିଚାରପତି ମାମଲାର ରାୟ ପଢ଼ିବାବେଳେ ଚନ୍ଦ୍ରକଳା ସମ୍ପର୍କରେ କହିଛନ୍ତି, 'ଏହି ଆସାମୀ ଗୋଟାଏ ଭୟଙ୍କର ବୁଦ୍ଧିମତୀ, ଭୟଙ୍କର ଦୁଷ୍ଟଚରିତ୍ରା ବଜାରୀ ସ୍ତ୍ରୀ ଅଟେ ···ଚତୁରତାରେ ନାଜର ନଟବର ଦାସକୁ ଭୁଲାଇ ରଖିଥିଲା । ଏହି ଦୁଷ୍ଟା ସ୍ତ୍ରୀ ପରାମର୍ଶ କୌଶଳ ଓ ବିଶ୍ୱାସଘାତକତା ପୂର୍ବକ ନାଜର ବସାରୁ ଅଳଙ୍କାର ଚୋରାଇ ଆଣିଛି । ପୁଣି ଚୋରି ଅପରାଧରୁ ମୁକ୍ତି ପାଇବା ନିମନ୍ତେ ନାନା ପ୍ରକାର କୌଶଳ ଅବଲମ୍ବନ କରିବାରେ ତ୍ରୁଟି କରିନାହିଁ ।'

ଚନ୍ଦ୍ରକଳାର ଚରିତ୍ରରେ ଉପର୍ଯ୍ୟୁକ୍ତ ଦୁର୍ଗୁଣଗୁଡ଼ିକ ଥିବା ସତ୍ତ୍ୱେ ଘନକୃଷ୍ଣ ମେଘମାଳା ଦେହରେ ସ୍ୱର୍ଣ୍ଣ ବିଜୁଳିର ସାମାନ୍ୟ ଝଟକ ପରି ତା' ଭିତରେ ଭଲ ଗୁଣଟିଏ ମଧ୍ୟ ଥିଲା । ଔପନ୍ୟାସିକ ତା'ର ସୂଚନା ମାତ୍ର ଦେଇଛନ୍ତି । ସ୍ୱାଇ ସ୍ୱପକ କଥାରେ ପଡ଼ି ମାଈଁ ଓରଫ ବିଶାଖା ଦେଇ ନଟୁକୁ କଟୁ ଭର୍ତ୍ସନା କରିବାରୁ ନଟୁ ଭୟ, ଅପମାନ ଓ ଲଜ୍ଜାରେ ଜଡ଼ ମୂର୍ତ୍ତିଟିଏ ପରି ଠିଆ ହୋଇ-ଥିବା ବେଳେ ଆସିଛି ଚନ୍ଦ୍ରକଳା । ସମଗ୍ର ଉପନ୍ୟାସରେ ଚନ୍ଦ୍ରକଳା ମନରେ କାହାର ପାଇଁ ଆନ୍ତରିକତା, ଦରଦ ବା ସ୍ନେହର ପରିଚୟ ମିଳେନାହିଁ । କିନ୍ତୁ ସେଇ ଅବସ୍ଥାରେ ନଟୁକୁ ଦେଖି ଚନ୍ଦ୍ରକଳାର ମନେହେଲା ନାଳଗାଣୀ ପରି ଘୁମୁରିଆଣୀଟା କ'ଣ ଦେବତା ପୁଅକୁ ଚହ୍ଲିବ ! ନାଲ୍ଟୁବାବୁର ହାତ ଧରି ବୁଝାଇ ଘର ଭିତରକୁ ନେଇଯାଇଛି । ମଣିଷ ଚହ୍ଲିବାରେ ତା'ର ଥିଲା ଅଶେଷ ଦକ୍ଷତା । କାର୍ଯ୍ୟ ସାଧନ ପାଇଁ ମନ୍ଦଲୋକଙ୍କର ମନନେଉଥିଲେ ମଧ୍ୟ ଭଲ ମଣିଷ ପାଇଁ ତା' ମନରେ ସ୍ୱାଭାବିକ ଶ୍ରଦ୍ଧା ଓ ସମ୍ମାନ ଥିଲା । ଚନ୍ଦ୍ରକଳା ଚରିତ୍ରର ସମସ୍ତ କାଳିମା ସତ୍ତ୍ୱେ ଏଇ ଗୋଟିଏ ସୁନ୍ଦର ଦିଗ—ତା' ଭିତରେ ଲୁଚି ରହିଥିବା ଭଲ ମଣିଷଟିର ପରିଚୟ ଦେଇଥାଏ । ମାମୁଁ ଉପନ୍ୟାସଟିରେ ଚନ୍ଦ୍ରକଳାର ସବୁଠାରୁ ଶକ୍ତିଶାଳୀ ବ୍ୟକ୍ତିତ୍ୱ—ଯାହା ପୁରୁଷ ଦୁର୍ଲଭ ।

ଗଉରୀ—ଓଡ଼ିଆ ଉପନ୍ୟାସ ସାହିତ୍ୟରେ ପ୍ରଥମ ମନୋବିଶ୍ଳେଷଣଧର୍ମୀ ଉପନ୍ୟାସ ଭାବରେ ଔପନ୍ୟାସିକ ବୈଷ୍ଣବଚରଣ ଦାସଙ୍କର 'ମନେ ମନେ' ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ଏହି ଉପନ୍ୟାସରେ ବର୍ଣ୍ଣିତ ଚରିତ୍ରମାନଙ୍କର ଯେଉଁ ମାନସିକ ସ୍ଥିତିର ବିଶ୍ଳେଷଣ କରାଯାଇଛି ତାହା ଅତ୍ୟନ୍ତ ପରିପକ୍ୱ ଲେଖନୀର ପରିଚୟ ଦିଏ । ଏହି ଉପନ୍ୟାସରେ ବର୍ଣ୍ଣିତ ନାରୀ ଚରିତ୍ରଟିଏ ଗଉରୀ । ଏପରି ଏକ ସୁନ୍ଦର ମହୀମାମୟ ଚରିତ୍ରଟିଏ ଅଦ୍ୟାବଧି ଅନ୍ୟ କୌଣସି ଓଡ଼ିଆ ଉପନ୍ୟାସରେ ସମ୍ଭବ ହୋଇନାହିଁ ।

ନାୟିକା କନକର ସେ ବିଧବା ବଡ଼ ନଣନ୍ଦ । ସାନ ଭାଇ ନିଧିର ବାହାଘରକୁ ଆସି ବାପଘରେ ରହିଥିଲା । ଦେହରେ ତାର ଧଳା ଲୁଗା, ମୁଣ୍ଡରେ ଚିତା ଓ ବେକରେ ତୁଳସୀ ମାଳୀ ଦେଖି କନକର ପ୍ରଥମରୁ ତା' ପାଇଁ କୌତୂହଳ ସୃଷ୍ଟି ହୋଇଛି ଓ ସେ ଜାଣିବାକୁ ଚାହିଁଛି ସେ ମାତାଟି କିଏ । ନିଜ ଝିଅକୁ ମାତା କହିଥିବା କାରଣରୁ ଶାଶୂ ପ୍ରଚଣ୍ଡ ରାଗରେ ବୋହୂ କନକକୁ ନାନା ପ୍ରକାର ଭର୍ତ୍ସନା କରିଛନ୍ତି । ଗଉରୀ ତାଙ୍କୁ ସେଠାରୁ ଟାଣିନେଇ ବୋହୂ ପାଇଁ ବହୁତ କାକୁତି ମିନତି ହୋଇ ନ ରାଗିବା ପାଇଁ ଅନୁରୋଧ କରିଛି ଓ ବୁଝାଇବାକୁ ଯାଇ କହିଛି, 'ବୋହୂ କିଏ ଆଉ ଝିଅ କିଏ' । ତା' କଥା ଶୁଣି

ତା' ବୋହୂଙ୍କ ଆଖିରେ କ୍ଷଣକ ପାଇଁ ଟିକିଏ ଜ୍ୟୋତି ଦେଖାଦେଲା ଓ ଲିଭିଗଲା । କିନ୍ତୁ ସେହି ସ୍ନେହର ଦୀପ୍ତିଟା ଗଉରୀ ଆଖିରେ ସବୁକାଳେ ଲାଗିଥାଏ । ସତେ ଯେପରି ସ୍ନେହର ମୂର୍ତ୍ତିଟିଏ । ସେଇ ନଣନ୍ଦ ତା' ଘରକୁ ଫେରିଯିବ ଭାବିଲାବେଳେ କନକ ନିଜକୁ ଅତି ଅସହାୟ ମନେ କରିଛି । ଗଉରୀ ନ ଥିଲେ କନକର ଶାଶୁଘର ଯେ କଠୋର କାରାବାସଠାରୁ ବଳିଯିବ ଏକଥା ଆଉ କେହି ବୁଝିନୁନା ନବୁଝନ୍ତୁ କନକ ବେଶ୍ ବୁଝିପାରିଥିଲା ଓ ଗଉରୀର ତିର ସମାନ ନୀରସ ଜୀବନ ମଧ୍ୟ ଅନେକାଂଶରେ ପରିବର୍ତ୍ତିତ ହୋଇ ଆସିଥିଲା···ତାହାର ସୁନ୍ଦର ମୁହଁଟିରେ ଦୟା ଓ ସରଳତା ସହିତ ଯେଉଁ ବିଷାଦର ମଳିନ ଗ୍ଲାନିଟିକ ଲାଗି ରହିଥାଏ ସେଟା କ୍ରମେ ଅନେକ ପରିମାଣରେ ଊଣା ହୋଇ ଆସିଥିଲା ।

ଭାଉଜ ନଣନ୍ଦଙ୍କ ଭିତରେ ଏତେ ଆନ୍ତରିକ ସମ୍ପର୍କର ଚିତ୍ର ଅନ୍ୟତ୍ର ଦେଖାଯାଏନା । ମାତ୍ର ଚାରି ପାଞ୍ଚଟା ଦିନ ଭିତରେ ପରସ୍ପର ପ୍ରତି ଏପରି ମମତା ବଢ଼ିଗଲା ଯେ ଦୁହେଁ ଦୁହିଁଙ୍କର ବାହ୍ୟ ଜୀବନର ସୁଖଦୁଃଖ ପ୍ରତି ଦୃଷ୍ଟି ଦେବା ବ୍ୟତୀତ ହୃଦୟର ଗୋପନ କଥାଟି ପ୍ରତି ମଧ୍ୟ ସମ୍ବେଦନଶୀଳ ହୋଇପଡ଼ିଲେ । ଅନ୍ୟର ଦୁଃଖକୁ ନିଜର କରି କାଢ଼ିବାକୁ, ବାଣ୍ଟିନେବାକୁ ମନ ବ୍ୟାକୁଳ ହୋଇଉଠିଲା । ଲେଖକ ଉପଲବ୍ଧି କରିଛନ୍ତି ଯେ, 'ଏତେ ଗଭୀର ପ୍ରଣୟ ଏତେ ଅଳ୍ପ ସମୟ ମଧ୍ୟରେ ବୋଧହୁଏ କେବଳ ନାରୀ ନାରୀ ମଧ୍ୟରେ ହିଁ ସମ୍ଭବ ।' ନାରୀ ଜୀବନରେ ପୁରୁଷର ସାନ୍ନିଧ୍ୟ ପରି ଅନ୍ୟ ଏକ ନାରୀର ବନ୍ଧୁତା ଓ ସ୍ନେହ ମଧ୍ୟ ପରମ କାମ୍ୟ ହୁଏ । ଏପରିକି ଦୁଇଟି ନାରୀ ମଧ୍ୟରେ ସମ୍ପର୍କ ବେଳେ ବେଳେ ଆହୁରି ଗଭୀର ଓ ଆନ୍ତରିକ ହୋଇଥାଏ ।

ଗଉରୀ ଜୀବନରେ କାହା ସହିତ ଏପରି ଘନିଷ୍ଠ ହେବାର ସୁଯୋଗ ଆସି ନ ଥିଲା । କନକକୁ ପାଇ ତାର ନିତି ଦିନର ଧର୍ମକର୍ମଜନିତ ନିୟମବନ୍ଧା ଜୀବନରେ ସୃଷ୍ଟି ହେଲା କେତେକ ବ୍ୟତିକ୍ରମ । ସେ ଅନୁଭବ କରିଛି ନୂଆବୋହୂ କନକ ସହିତ ଏକ ନିବିଡ଼ ଆତ୍ମୀୟତାର ବନ୍ଧନରେ ସେ ବାନ୍ଧି ହୋଇଯାଇଛି । ଯେଉଁଦିନ ଭିଜାଗଳାରେ କନକ କହିଲା 'ମୁଁ ବଡ଼ ଦୁଃଖୀ', ଗଉରୀର ମନେ-ହେଲା ସ୍ତ୍ରୀଲୋକମାନେ ପ୍ରାୟ କଥାରେ କଥାରେ ଏଇ ପଦଟା ସେମିତି କହିଦିଅନ୍ତି; କିନ୍ତୁ କନକର ଏଇ ପଦକ କଥା ଭିତରୁ ତା' ହୃଦୟର କେଉଁ ଏକ ଗୋପନ ବ୍ୟଥା ହିଁ ଝରିଆସିଛି । ନାରୀ ଛଡ଼ା ନାରୀର ଏ ମର୍ମବ୍ୟଥା ଆଉ ବୁଝିବ କିଏ ! ଗଉରୀ ପରି ଏତେ ଚେତନାପ୍ରବଣ (sensitive) ନାରୀ ଚରିତ୍ରଟିଏ ଆଉ କାହିଁ !

ହଠାତ୍ ଆବେଗପ୍ରଣୋଦିତ ହୋଇ ଗଉରୀ କନକ ମୁଣ୍ଡରେ ସିନ୍ଦୂର ଲଗାଇ ଦେଉଥିବାର ଦୃଶ୍ୟ ସାମ୍ନାଅପା ଆଖିରେ ପଡ଼ିଯିବା ଓ ସେ ଗଉରୀର ଏ ଆଚରଣକୁ ନିନ୍ଦାକରି ଭର୍ତ୍ସନା କରିବା ମୁହୂର୍ତ୍ତରେ ଗଉରୀ ଭିତରର ହତଭାଗିନୀ ନାରୀଟି ଲଜ୍ଜା, ଅପମାନ, କ୍ଷୋଭରେ ଜଳିଯାଇ ନିଜକୁ ଧିକ୍କାର କରିଛି— 'ଛି ଛି ମୁଁ ଯେ ବିଧବା, ଅମଙ୍ଗୁଳୀ, ଅଲକ୍ଷଣୀ, ପୋଡ଼ାମୁହିଁ ବିଧବା ।'

ପୁଣି ଅଳ୍ପ ସମୟ ଭିତରେ ଗଉରୀ ସମସ୍ତ ଅପମାନ ଓ ଦୁଃଖକୁ ନିଜ ଭିତରେ ସାଲିସ କରେଇ ନେଲା ଓ ତା'ର ସ୍ୱାଭାବିକ ହସ ହସ ମୁହଁରେ କନକ ପାଖରେ ପହଞ୍ଚିଲା । ମିଲୁବାବୁ କୁଣିଆ ହୋଇ ଆସିଥିବାର ଖବର ଆଣିଥିବା ପିଲାଟିକୁ ପରିହାସ କରି କହିଲା,···ଶୁଣ୍‌ବେ ରମା, କିଏ ସେ ସାନ୍ତ ଆସିଚି କବେ ? ମୁଁ ସେଇଟାକୁ ସୁଆରରୁ ଓହ୍ଲାଇବା ବେଳେ ଭଲକରି ଦେଖିପାରିଲି ନାହିଁ ।' ବୈଧବ୍ୟର ଅଭିଶାପ ଭୋଗୁଥିବା ଗଉରୀର ସ୍ୱାଭାବିକ ମନଟା ମରିଯାଇ ନ ଥିଲା ।

ନିଧି ଓ କନକ ଭିତରେ ଭୁଲ ବୁଝାମଣାର ସୂଚନା ପାଇବାମାତ୍ରେ ଗଉରୀ ନିଧିକୁ ହିଁ ତାଗିଦା କରିଛି । ଭାଉଜ ଅପେକ୍ଷା ସମସ୍ତ ଅଶାନ୍ତିର କାରଣ ରୂପେ ତା' ଭାଇକୁ ହିଁ ଦାୟୀ କରିଛି । ଏପରି ନଜିର ବା କେତେ ଜାଗାରେ ମିଳେ । ରାତିରେ ଶୋଇବାକୁ ଯିବାବେଳେ କନକକୁ ବହୁତ ବୁଝାଇସୁଝାଇ ନିଧିବାବୁଙ୍କ ବଖରା ଭିତରକୁ ପଠାଇଦେଇ ନିଜେ ବିଛଣାରେ ଶୋଇ ଶୋଇ ଗଉରୀ ଚିନ୍ତା କରିଛି ଅନେକ କଥା । ତା'ର ଏଇ ଚିନ୍ତାର ଧାରା ଦେଇ ହିଁ ତା'ର ଚରିତ୍ରର ବିଶେଷ ଦିଗଟି ଉଦ୍‌ଘାଟିତ । କନକ ବାହାହୋଇ ଆସିବା-ପରେ ଗଉରୀ ବୁଝିପାରିଥିଲା କନକ ମନର କେଉଁ ଏକ ଗୋପନ କୋଠରୀରେ କଥାଟିଏ ଲୁଚିରହିଛି ଓ ମିଲୁ ପ୍ରତି କନକର ଗଭୀର ଭଲପାଇବା ସେ ବୁଝିଥିଲା; କିନ୍ତୁ ସେସବୁକୁ ଯୋଡ଼ି ଗୋଟାଏ କିଛି ନିର୍ଦ୍ଦିଷ୍ଟ ମତରେ ପହଞ୍ଚିବାକୁ ସେ ଗୃହିଁ ନଥିଲା । କିନ୍ତୁ କନକ ନିକଟରୁ ମିଲୁ ଓ ତା'ର ସମ୍ପର୍କକଥା ଜାଣିବା ପରେ ତା'ର ସହାନୁଭୂତି କନକ ପାଇଁ ଆହୁରି ବଢ଼ିଯାଇଛି । ସେ କନକ, ମିଲୁ, ନିଧି, ରଙ୍ଗୀ ଓ ନିଜ କଥା ମଧ୍ୟ ଭାବିବାକୁ ଲାଗିଲା । ସମସ୍ତଙ୍କ ଦୁଃଖକୁ ନିଜର ବୋଲି ଭାବିବାରୁ ସେମାନଙ୍କ ଦୁଃଖର ଗଭୀରତା ମଧ୍ୟ ସେ ବୁଝିପାରିଲା । ତା' ମନରେ ପ୍ରଶ୍ନ ଉଠିଛି ଏ ସମସ୍ତ ଦୁଃଖର କାରଣ କଣ ସମାଜ ? ସମାଜକୁ ଯଦି ବଦଳାଇ ଦିଆଯାଏ ତେବେ କଣ ଦୁଃଖର ସମାଧାନ ହୋଇଯିବ ! ଏଇ ଭାବନା ଭିତରେ ସେ ଏକ ସାଧାରଣ ସତ୍ୟ ଅନୁଭବ କରିପାରିଛି ଯେ ଦୁଃଖୀ ଓ ଦୁଃଖିନୀ ନଥାଇ କୌଣସି ସମାଜ କେବେହେଲେ ତିଷ୍ଠି ରହି ପାରେନା ।

ସୁଖପରି ଦୁଃଖର ଅସ୍ତିତ୍ୱ ମଧ୍ୟ ସତ୍ୟ । ତାକୁ ଜୀବନଧାରାର ଏକ ଅଙ୍ଗରୂପେ ହିଁ ମାନିନେବାକୁ ହେବ । ନିଜର ସ୍ଥିତି ସେ ବିଶ୍ଳେଷଣ କରିଛି । ନିଜକୁ ପ୍ରଶ୍ନ କରିଛି ସମାଜରେ ଯଦି ବିଧବା ବିବାହର ପ୍ରଚଳନ ରହିଥାନ୍ତା ତେବେ ସେ ପୁଣି ବାହାହୋଇ ଥାନ୍ତା କି ? ତା' ମନରୁ ଉତ୍ତର ଆସିଲା ନାଁ ।' ତେବେ ଏମିତି କେତେ ବିଧବା ମଧ୍ୟ ବିଭିନ୍ନ କାରଣରୁ ପୁଣି ବିବାହ କରି ନଥାନ୍ତେ । ତେଣୁ ପ୍ରଥା ନାହିଁ ବୋଲି ଓ ବିଧବାର ଜୀବନ ଯାପନ କରୁଥିବାରୁ ସେ ନିଜକୁ ଅଭାଗୀ ମନେକଲା ନାହିଁ । କିନ୍ତୁ ଯେଉଁମାନେ ପୁନର୍ବିବାହ ଚାହାନ୍ତି ସେମାନଙ୍କୁ ସୁଯୋଗ ଦେବା ସମାଜର ଉଚିତ ବୋଲି ତା'ର ଧାରଣା ହେଲା । ଏଇ ପ୍ରସଙ୍ଗରେ ତା'ର ସ୍ୱାମୀର ସ୍ମୃତି କ୍ରମଶଃ ତା'ର ମନକୁ ସମ୍ପୂର୍ଣ୍ଣ ଆଚ୍ଛନ୍ନ କରିପକାଇଲା । ସେ ବୁଝିପାରିଲା ନାହିଁ ଯେ ତାଙ୍କ ସହିତ ତା'ର କେତେଦିନର ପରିଚୟ ଥିଲା ! ସେ କଣ ଏ ସୃଷ୍ଟିର ଆଦିକାଳରୁ ତାଙ୍କୁ ଜାଣିଥିଲା ଓ ଅନନ୍ତ କାଳଯାଏ ଏ ପରିଚୟ ତାରି ଭିତରେ ସଞ୍ଚରି ରହିବ ! ତା'ର ହୃଦୟର ଭଲ-ପାଇବା ସେ ଢାଳିଦେଇଥିଲା ଯେଉଁ ବ୍ୟକ୍ତିଟି ପାଖରେ ସେ ଆଉ ନାହିଁ, କିନ୍ତୁ ତା'ର ହୃଦୟାବେଗ ତ ଟିକିଏ ବି ଊଣା ହେଲାନି । ସେଇ ବ୍ୟକ୍ତିଟିର ସ୍ମୃତିକୁ ସେ ତା' ମନ ପ୍ରାଣର କୋମଳ ଅନୁଭବ ଦେଇ ତାରି ଭିତରେ ଏତେ ସଜୀବ ରଖିପାରିଛି ଯେ ସେଠି ହତାଶାର ହାହାକାର କାହିଁ ! ପାଇବାର ପୂର୍ଣ୍ଣତା ଭିତରେ ହରାଇବାର ବ୍ୟର୍ଥତା ତାକୁ ସ୍ପର୍ଶ କରିପାରିନି । ତା'ର ଚିନ୍ତା, କଳ୍ପନା ଓ ଅନୁଭବ ଭିତରେ ସେ ତାରି ପ୍ରିୟ ପୁରୁଷଟିର ନିତ୍ୟ ସାନ୍ନିଧ୍ୟ ଲାଭକରି ଚାଲିଛି । ସେଠି ବିରହର ମର୍ମନ୍ତୁଦ ଯନ୍ତ୍ରଣାର ସତ୍ତା ନାହିଁ । ସେଇ ପ୍ରେମମୟୀ ନାରୀଟିର ପ୍ରୀତିସଜଳ ହୃଦୟଟିହିଁ ଅନୁଭୂତି ପାଇଁ ସମର୍ଥ ହୋଇ ପାରିଛି । ତା' ମନରେ ରହିଯାଇଛି, 'ଖାଲି ଗୋଟାଏ ଅସୀମତାର ଗ୍ଲାନି, ତାରି କ୍ଷୁଦ୍ର ହୃଦୟରେ ମେଲିଗଲା ଗୋଟାଏ ଦିଗନ୍ତବ୍ୟାପୀ ପୂର୍ଣ୍ଣତା—ଯାହା ଇହକାଳ, ପରକାଳ ଭେଦ କରି କୁଆଡ଼େ ଶୂନ୍ୟରେ ମିଶିଯାଇଛି—ତାର ନା ଅଛି ଏପାଖର ଠିକଣା, ନା ସେପାଖର ଅନ୍ତ ।' ତା'ର ପ୍ରେମ ପାର୍ଥିବ ସ୍ମୃତିରୁ ଅପାର୍ଥିବ ଚେତନା ଭିତରେ ନିର୍ଜିତ ହୋଇ ଯାଇଛି ।

ଅବାରିତ ଭାବରେ ପ୍ରସାରିତ ହୋଇ ଚାଲିଥିବା ତା'ର ସମ୍ବେଦନଶୀଳ ହୃଦୟଟି ତା'ର ନିକଟତମ କେତୋଟି ହୃଦୟର ଦୁଃଖରେ ଅଭିଭୂତ ହେବାକୁ ଲାଗିଲା । ସେ ଖୋଜିବୁଲିଲା ତା'ର ସମାଧାନର ପନ୍ଥା । ସେ ବୁଝିଥିଲା ମାଲୁ କନକ ନିଧି କନକ ଓ ରଙ୍ଗୀ ମାଲୁଙ୍କ ମଧ୍ୟରେ ସମସ୍ତ ଦୁଶ୍ଚିନ୍ତାର କାରଣ ବିବାହ ପ୍ରେମ । ବିବାହ ଓ ପ୍ରେମ ସମ୍ପର୍କିତ ଏତେ ସ୍ପଷ୍ଟ ଧାରଣା ଗନ୍ଧରୀ ବ୍ୟତୀତ ଅନ୍ୟ କୌଣସି ତରିଭିତର ବୋଧହୁଏ ଘଟିନାହିଁ । ସେ ମନେକରିଛି ସବୁ ସମ୍ପର୍କର ଶେଷକଥା

ବିବାହ ହୋଇ ପାରେନା । କାରଣ ବିବାହରେ ଗୋଟିଏ ହୃଦୟ ତା'ର ବାଞ୍ଛିତର ଠିକଣା ସବୁବେଳେ ପାଏନାହିଁ । ବିବାହ ଏକ ସମାଜିକ ଅନୁଷ୍ଠାନ ମାତ୍ର; କିନ୍ତୁ ହୃଦୟ ରାଜ୍ୟର ଶେଷ ସମାଧାନ ନୁହେଁ । 'ସମାଜର ବିବାହ ସେ ସମାଜର—ସମାଜର ନରନାରୀ ସେଥିରେ ସୁରଧୁନୀ ଖୋଜିଲେ ପାଇପାରନ୍ତି; କିନ୍ତୁ ତା' ବୋଲି ସେହି ବିବାହ ହିଁ ସୁରଧୂନୀ ବା ସର୍ବସନ୍ତାପହାରିଣୀ, ସ୍ତ୍ରୀ କିପରି ହୋଇପାରେ' ! ତେଣୁ ଗହ୍ଲରୀ ଅନୁଭବ କରିଛି, ହୃଦୟ ହିଁ ସବୁ ଆନନ୍ଦର ସବୁ ତୃପ୍ତିର ମୂଳକାରଣ । ହୃଦୟର ପ୍ରକୃତ ଭଲପାଇବା ଥିଲେ ବ୍ୟକ୍ତି ବାହାରେ କିଣ ପାଇଲି ନପାଇଲି ନେଇ ବିବ୍ରତ ବିଚଳିତ ହୁଏନାହିଁ । ପ୍ରେମହିଁ ତାର ମନକୁ ପରିପୂର୍ଣ୍ଣ କରି ରଖେ । ଅଥଚ ଏଇ ଅନୁଭବ ଟିକକ ଅଭାବରୁ ମଣିଷର ଜୀବନ କେତେ ବ୍ୟର୍ଥତା ଓ ହତାଶା ଭିତରେ ଜଳିପୋଡ଼ି ପାଉଁଶ ହେଇଯାଏ !

ଆତ୍ମହତ୍ୟା କରିବାକୁ ଯାଇ କୂଅ ଭିତରକୁ ଡେଇଁ ପଡ଼ିଥିବା କନକକୁ ଯେତେବେଳେ ଉଦ୍ଧାର କରି ବାହାରକୁ ଅଣାଗଲା ସେତେବେଳେ ସେ ଥିଲା ଚେତାଶୂନ୍ୟ । ଚେତା ଫେରିବା ପରେ କନକର ଦୃଷ୍ଟି ଘରେ ଉପସ୍ଥିତ ଥିବା ସମସ୍ତଙ୍କ ଉପରେ ପହଁରି ଆସି ଅପ୍ରତିଭ ହୋଇ ପୁଣି ବନ୍ଦ ହୋଇଗଲା । ସେଇ ଭାବଟିକକ ଗହ୍ଲରୀର ଦୃଷ୍ଟି ବୁଝି ପାରିଥିଲା । ସେ ନିଧିବାବୁଙ୍କୁ ମାଲ୍ଟ ନିକଟକୁ ତାର କରିବାକୁ କହିଲା । ପରେ ପରେ ବାହାରେ ଗୋଟିଏ ଗାଡ଼ି ରହିବାର ଶବ୍ଦ ଶୁଣି କନକ ଦ୍ୱାର ଆଡ଼କୁ ବହୁ କଷ୍ଟରେ ଚାହୁଁଥିବାର ଦେଖି ଏକା ଗହ୍ଲରୀ ହିଁ ଜାଣିଲା କେତେ ଉଦ୍‌ବେଗ ଉତ୍କଣ୍ଠା ତା' ଆଖିରେ ନେଇ କନକ କାହାର ପ୍ରତୀକ୍ଷା କରୁଛି । କନକ ହୃଦୟର ପ୍ରତିଟି ସ୍ପନ୍ଦନ ସତେ ଯେପରି ଗହ୍ଲରୀର ହୃଦୟରେ ପ୍ରତିଧ୍ୱନିତ ହେଉଥିଲା ।

ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଗହ୍ଲରୀ ପରି ଚରିତ୍ରଟିଏ ସମ୍ଭବ ହୋଇ-ନାହିଁ । କାହ୍ନୁଚରଣଙ୍କର ବହୁ ଉପନ୍ୟାସ ଓ ଅନ୍ୟାନ୍ୟ ଉପନ୍ୟାସରେ ଯୁବତୀ ବିଧବାର ବହୁ ଯନ୍ତ୍ରଣାପୂର୍ଣ୍ଣ ଜୀବନ, ବିବାହ କରିବା ନ କରିବା, ମାତୃତ୍ୱଲାଭର ପିପାସା, ପ୍ରେମିକକୁ ଗ୍ରହଣ କରିବା ନକରିବା ଆଦି ବିଭିନ୍ନ ସମସ୍ୟା ନେଇ ସନ୍ଦିଗ୍ଧ ହେବାର ଓ ପ୍ରତି ପଦରେ ନିଜର ଭାଗ୍ୟହୀନତା ପାଇଁ ନିଜକୁ ଓ ଭାଗ୍ୟକୁ ଅହରହ ଦୋଷ ଦେବାର ବହୁ ବର୍ଣ୍ଣନା ମିଳେ । ନିଜକୁ ବଞ୍ଚିତ ମନେକରି ଅନ୍ୟର ସୁଖ ସୌଭାଗ୍ୟକୁ ଦେଖି ଏକ ଅବ୍ୟକ୍ତ ଈର୍ଷାରେ ଜଳିବାର ଉଦାହରଣ ମଧ୍ୟ କମ୍ ନୁହେଁ । କିନ୍ତୁ ବୈଷ୍ଣବଚରଣଙ୍କ ଗହ୍ଲରୀ ଏକ ଅନନ୍ୟା ନାରୀ, ଗୋଟିଏ ଅତି ସୁନ୍ଦର ହୃଦୟର ଅଧିକାରିଣୀ । ବୈଧବ୍ୟକୁ ଜୀବନର ଏକ ଚୂଡ଼ାନ୍ତ ଅଭିଶାପ ବୋଲି ମନେକରିନ, ଜୀବନଧାରାର ଏକ ପର୍ଯ୍ୟାୟ ଭାବରେ ଗ୍ରହଣ କରିଛି ।

ସାଥିହୀନ ନିଃସଙ୍ଗ ଜୀବନକୁ ସାଥିର ସ୍ମୃତିଚାରଣରେ ସୁନ୍ଦର ଓ ସଜୀବ କରି ରଖିଛି । ପ୍ରେମର ପାର୍ଥିବ ଅନୁଭବକୁ ଉତ୍ତୀର୍ଣ୍ଣ କରିନେଇଛି ଏକ ଅପାର୍ଥିବ ଚେତନାର ସ୍ତରକୁ । ସେ ହୃଦୟଟିରେ କ୍ରୋଧ ନାହିଁ, କାହାରି ଉପରେ ମାନ ଅଭିମାନ ନାହିଁ, ଈର୍ଷା ନାହିଁ ବରଂ ଅନ୍ୟମାନଙ୍କର ଦୁଃଖ ଦୂର କରିବା ପାଇଁ ନିଜ ଶକ୍ତିମତେ ଉଦ୍ୟମ କରିଚାଲିଛି । ସାଧାରଣ ନାରୀଟିଏ ଶଇଳୀ; ସମାଜ, ବିବାହ, ପ୍ରେମ ଓ ଯନ୍ତ୍ରଣାର ମୂଳତତ୍ତ୍ୱଟିକୁ ଯେପରି ବୁଝିଛି ସେପରି ଅନ୍ୟ କୌଣସି ଚରିତ୍ର ବୁଝିବାକୁ ସମର୍ଥ ହୋଇନାହାନ୍ତି ।

ସତୀ—ଔପନ୍ୟାସିକ ଉପେନ୍ଦ୍ର କୁମାରଙ୍କ 'ମଲ୍ଲିଜହ୍ନ'ର ନାୟିକା ସତ୍ୟଭାମା ବା ସତୀ । ହିନ୍ଦୁ ସମାଜରେ କନ୍ୟାର ବିବାହ ଧାର୍ମିକ ଦୃଷ୍ଟିରେ ଅନିବାର୍ଯ୍ୟ ବିଚାର କରାଯାଏ । ଏଥିପାଇଁ ବାପ ମା' କୌଣସି ନା କୌଣସି ପ୍ରକାରେ ନିଜ ଝିଅକୁ ବିବାହିତା ଦେଖିବାକୁ ଚାହାନ୍ତି । ସେଥିପାଇଁ ସମାଜରେ କେତେକ କ୍ଷେତ୍ରରେ ଅସାମଞ୍ଜସ୍ୟ ବିବାହ ମଧ୍ୟ ହୋଇଥାଏ । ସାଧାରଣତଃ ବାଲ୍ୟ ବିବାହ ଓ ଯୌତୁକ ପ୍ରଥାଜନିତ ପ୍ରତିଫଳ ହେଉଛି ଏହି ପ୍ରକାର ବିବାହର କାରଣ, ଯେଉଁଠି କିଶୋରୀ କନ୍ୟାଟିଏ ଷାଠିଏ ବା ତତୋଽଧିକ ବୟସର ବ୍ୟକ୍ତି ସହିତ ବିବାହ ବନ୍ଧନରେ ଯୁକ୍ତ ହୁଏ । ସତୀ କ୍ଷେତ୍ରରେ ଉପର୍ଯ୍ୟୁକ୍ତ କୌଣସି କାରଣ ନ ଥିଲା । କିନ୍ତୁ ତା'ର ପିତା ଅନାଦି ମିଶ୍ର ଧନୀ ଜମିଦାର ନରହରି ମିଶ୍ରଙ୍କୁ ଜ୍ୱାଇଁ କରିବାକୁ ଯାଇ ତାଙ୍କ ବୃଦ୍ଧ ବୟସ, କୁତ୍ସିତ ରୂପ ଓ ଦ୍ୱିତୀୟ ବିବାହ ପ୍ରବୃତ୍ତିକୁ ବିଚାରକୁ ନେଇନାହାନ୍ତି ବା ଏ ସମ୍ପର୍କରେ କାହାରି ବାରଣ ମାନି ନାହାନ୍ତି । କନ୍ୟାପିତା ଭାବରେ ଏଗାର ବର୍ଷିୟା କିଶୋରୀ କନ୍ୟାଟିର ସୁଖ, ଶାନ୍ତି ଓ ଆନନ୍ଦ ଅପେକ୍ଷା ଧନିକ ଜାମାତା ଲାଭର ସନ୍ତୋଷ ତାଙ୍କୁ ଅନ୍ଧ କରିଦେଇଛି ।

ସତୀ ବାପାମାଆଙ୍କର ଏକମାତ୍ର ଆଦରର କନ୍ୟା ହୋଇଥିବାରୁ ଅନ୍ୟାନ୍ୟ ସମବୟସୀଙ୍କ ଅପେକ୍ଷା ଗାଁରେ ଘୂରିବୁଲିବା ପାଇଁ ଟିକେ ଅଧିକ ସ୍ୱାଧୀନତା ପାଇଥିଲା । ପିଲାଦିନରୁ ନିଜପ୍ରତି ଗାଁରେ ଦେଖି ଆସୁଥିବା ଲୋକନାଥ ବା ତା'ର ପ୍ରିୟ ନାଥନନା ପ୍ରତି ସତୀ ଭିନ୍ନ ଏକ ଆକର୍ଷଣ ଅନୁଭବ କରିଛି, ଯେଉଁଦିନ ପୋଖରୀ ପାଣିରୁ କଇଁଫୁଲ ତୋଳି ସେ ସେଇ ଆର୍ଦ୍ର ବସନରେ ଛୁଟିଆସୁଥିବାବେଳେ ନାଥନନା ସହିତ ସାକ୍ଷାତ ହୋଇଥିଲା । ସେ ଏକ ଅନିର୍ବଚନୀୟ ଆକର୍ଷଣ । କିନ୍ତୁ ସେ ଭଲ ପାଇବା ବା ଆକର୍ଷଣର ପରିଣତି ଯେ ବିବାହ ତାହା ସତୀ ମନରେ ଆସିନାହିଁ । ସେ କେବଳ ଅନୁଭବ କରିଛି ଲୋକନାଥ ପ୍ରତି ତା' ଭିତରେ ଏକ ପ୍ରେମୋଚ୍ଛ୍ୱାସ । ଏ ପ୍ରଣୟକୁ ପରିଣୟରେ

ପରିଣତ କରିବାର ପ୍ରଚେଷ୍ଟା କାହାରି ପକ୍ଷରୁ ମଧ୍ୟ ପ୍ରକାଶ ପାଇନି । ଏତେ ଅଳ୍ପ ବୟସରେ ମନର ଆବେଗକୁ ଠିକ୍ ଭାବରେ ବୁଝିବା ମଧ୍ୟ ସହଜ ନୁହେଁ । ନିଜର ବାହାଘର କଥା ଶୁଣି କିଶୋରୀ ସତୀ ମନରେ ସ୍ୱାଭାବିକ କୌତୁହଳ ସୃଷ୍ଟି ହେଉଛି, 'ଯେମିତି ଗୋଟାଏ ଅମୁହାଁ ଦେଉଳ ଆଖି ଉଢ଼ାଳରେ ସତେକି କେତେ ଅପୂର୍ବ ଦରବ ଠୁଳ ହୋଇଛି ତା' ଭିତରେ' । ତା'ପରେ ପୁଣି ବରର ଧନସମ୍ପତ୍ତିର ବିସ୍ତୃତ ବିବରଣୀ ଶୁଣି ସତୀ ପୁଲକିତ ହୋଇଉଠିଲି । ତା' ପିଲାମନରେ ବରର ପ୍ରାଚୁର୍ଯ୍ୟ ବେଶ୍ ପ୍ରଭାବ ପକାଇଥିଲା । ବାହାଘରେ ଗହଣା ପିନ୍ଧି, କନିଆ ହୋଇ ନଈଁ ନଈଁ ଚାଲିବା ତାକୁ ବହୁତ କୌତୁକ ଲାଗୁଥିଲା । କିନ୍ତୁ ସେସବୁର ଆନନ୍ଦ ଖୁବ୍ ଶୀଘ୍ର ଦୂର ହୋଇଗଲା । ପିତା ବୟସର ଏକ କଦାକାର ବୃଦ୍ଧ ଓ ଦୋଭେଇବର ସହିତ ତା'ର ବାହାଘର ହୋଇଥିଲା । ସଦ୍ୟ ଯୌବନ ସହିତ ପରିଣତ ବାର୍ଦ୍ଧକ୍ୟର ହାତଗଣ୍ଠି ପଡ଼ିଗଲା ଓ ହୋମ ନିଆଁରେ ଦଶଦିଗପାଳଙ୍କୁ ସାକ୍ଷୀ ରଖି ସିଦ୍ଧ କରି ଦିଆଗଲା ସେ ଅପ୍ରାକୃତିକ ସମ୍ପର୍କକୁ । କିନ୍ତୁ ସେ ଗଣ୍ଠିର ଟାଣ କେତେ !

ସତୀର ଏ ପ୍ରକାର ବିବାହଜନିତ ଦୁଃଖରେ ଲୋକନାଥ କଟକ ଚାଲିଯାଇଥିଲା ଓ ପୁଣି ଯେବେ ସେ ଫେରିଲା ସେତେବେଳକୁ ଆଦ୍ୟ ଯୌବନର ସ୍ପର୍ଶରେ ଢଳ ଢଳ ହେଉଥିଲା ନବୀନାଯୁବତୀ ସତୀ । ପ୍ରଗଳ୍‌ଭା କିଶୋରୀ ସତୀର ନାଥନନା ପ୍ରତି ପ୍ରଚଣ୍ଡ ଭଲଲାଗିବା ପରିଣତ ହୋଇଯାଇଥିଲା ଭଲ-ପାଇବାରେ । ତେବେ ଦୁହିଁଙ୍କ ଭିତରେ ଠିଆ ହୋଇଥିଲା 'କିନ୍ତୁ'ର ଏକ ଦୁର୍ବଳ ପ୍ରାଚୀରଟିଏ । ନାଥନନାର ଜନ୍ମଦିନରେ ସତୀ ତାଙ୍କ ଘରକୁ ଯାଇଛି ଓ ଅବସ୍ଥା ଚକ୍ରରେ ଲୋକନାଥର ପ୍ରଥମ ସ୍ପର୍ଶ ଲାଭ କରି ବର୍ଷାରେ ଭିଜା ଭିଜା ଘରକୁ ଫେରି ଲୁଗା ନ ବଦଳାଇ ଶୋଇଯାଇଛି । ସେଇ ଓଦା ଲୁଗାରେ ଲାଗିଥିବା ଲୋକନାଥ ଦେହର ସ୍ପର୍ଶ ତାକୁ ଏତେ ଆମୋଦିତ କରିଛି ଯେ ସତୀର ମନେ ହେଉଛି ସେଇ ତାର ମଧୁଶଯ୍ୟାର ରାତି । କିନ୍ତୁ ତାକୁ ତା' ପରେ ପରେ ଯିବାକୁ ହୋଇଛି ସ୍ୱାମୀ ଘରକୁ ।

ସ୍ୱାମୀ ସହିତ ପ୍ରଥମ ମିଳନ ରାତି । ନବବଧୂର ମନରେ କୌଣସି ଆବେଗ ନାହିଁ, ଆନନ୍ଦ ନାହିଁ । ସତୀ ଭାବୁଥିଲା, "ସେ ଆସିବା ସମୟ ହେଲା । ଆମ ଶାସ୍ତ୍ର ଅନୁସାରେ ମୁଁ ଯାହାଙ୍କର ସ୍ତ୍ରୀ ହୋଇଛି । × × × ବୟସରେ ସେ ମୋ ବାପାଙ୍କ ସାଙ୍ଗରେ ହେବେ । ଏଇଆଙ୍କ ସାଙ୍ଗରେ ପୁଣି ମତେ ସବୁଦିନେ ଘର କରିବାକୁ ପଡ଼ିବ ସମସର ହୋଇ । ଏହି ମୁହଁକୁ ଚାହିଁ ମତେ ପୁଣି ପିଲାଦିନର ସବୁ ସ୍ନେହ ମାୟା ଭୁଲିବାକୁ ହେବ ତ ? ସେତିକିବେଳେ

ମନେପଡ଼ିଗଲା ମୋର ଆଉ ଗୋଟିଏ ଲାବଣ୍ୟ ସିନ୍ଧୁ ଚିରପରିଚିତ ମୁହଁ, ବିଧାତାଙ୍କର ସବୁ ସୁନ୍ଦର ସୃଷ୍ଟି ଯାହା ଉପରେ ସାର୍ଥକ ହୋଇଯାଇଛି । ସେ ମୁହଁ ଆଉ ମୋ ସ୍ୱାମୀଙ୍କ ମୁହଁ ! × × ମନେ ହେଲା ଏମିତି ଭାବିଲେ ମୁଁ ପାଗଳ ହୋଇଯିବି । କିନ୍ତୁ ଏଇ ଚିନ୍ତାରେ ପାଗଳ ହୋଇଯିବା କେତେ ସୁଖକର ମନେକଲି ।'' ତା'ର ଭାବନାରେ ପୂର୍ଣ୍ଣଚ୍ଛେଦ ପକାଇ ପ୍ରବେଶ କଲେ ତାର ବୃଦ୍ଧ ସ୍ୱାମୀ କାମୁକ ନରହରି ମିଶ୍ର, ଯିଏକି ସ୍ତ୍ରୀକୁ କେବଳ ଜାନ୍ତବ କାମନା-ଚରିତାର୍ଥ କରିବାର ପାତ୍ର ବୋଲି ବିବେଚନା କରନ୍ତି । ବଳପ୍ରୟୋଗ କରି ସତୀକୁ ଆଲିଙ୍ଗନ କରିବାବେଳେ ସେ ବାଧା ଦେଇଛି ତାଙ୍କୁ । ଏପରି ଅମେଳ ବିବାହରେ ଇଚ୍ଛା ବିରୋଧରେ ନାରୀଟି ସମାଜର ମୋହରମରା ସ୍ୱାମୀନାମଧାରୀ ପଶୁଟି ନିକଟରେ ନିଜକୁ ସମର୍ପଣ କରିଦେବାକୁ ବାଧ୍ୟହୁଏ । ସେଥିରେ ପ୍ରେମ, ପ୍ରଣୟ ବା ଆବେଗର ସାମାନ୍ୟ ସର୍ତ୍ତ ନ ଥାଏ । ଜଣେ ପାଏ ପଶୁର ତୃପ୍ତି, ଆଉ ଜଣେ ଘୃଣା, ଦୁଃଖ, କ୍ଷୋଭ ଓ ଅପମାନରେ ସଙ୍କୁଳ ହେଉ ହେଉ ଅନ୍ତରରୁ ଛୁଟି ଆସୁଥିବା ହତାଶା ଓ ବ୍ୟର୍ଥତାର ହାବୁକା ହାବୁକା କୋହକୁ ପ୍ରାଣପଣେ ଗୁପ୍ତି ରଖିବାକୁ ଚେଷ୍ଟାକରେ । ଏଥିରେ ଆଉ କୌଣସି ବ୍ୟତିକ୍ରମ ହୁଏ ନାହିଁ··· ଜୀବନ ସେଇ ଅସମତଳ ରାସ୍ତାଦେଇ ଗଡ଼ିଯାଏ ମୃତ୍ୟୁଯାଏ । କିନ୍ତୁ ସତୀର ମନ ନିଜକୁ ଏପରି ଭାବରେ ବଳି ଦେବାକୁ ପ୍ରସ୍ତୁତ ହୋଇନି । ସ୍ୱାମୀତ୍ୱ ନାମରେ ସ୍ୱାମୀର ଧର୍ଷଣ ପ୍ରଚେଷ୍ଟାକୁ ସେ ବାଧାଦେଇଛି । ସ୍ୱାମୀର ଧମକ ଶୁଣିଛି— ''ଏମିତି ହେଲେ ଏକା ଜାଣିଥା ଭାରି ଖରାପ ହେବ । ମୁଁ କହୁଛି ମୋ କଥା ମାନ, ପାଖକୁ ଆ'' । ସତୀ ସେ ଧମକକୁ ଖାତିର କରେନି—ନରହରି ମିଶ୍ରର ସମସ୍ତ ଉଦ୍ୟମକୁ ବ୍ୟର୍ଥ କରି କବାଟ ଫିଟାଇ ବାହାରକୁ ପଳାଇ ଆସିଛି । ସତୀ ଚରିତ୍ରର ଏତିକି ଦୃଢ଼ତା ଫୁଟାଇବାକୁ ଯେ ଔପନ୍ୟାସିକଙ୍କୁ ବେଶ୍ କିଛି ସାହସିକତାର ପରିଚୟ ଦେବାକୁ ହୋଇଛି ଏଥିରେ ସନ୍ଦେହ ନାହିଁ । ହିନ୍ଦୀ ଔପନ୍ୟାସିକ ପ୍ରେମଚନ୍ଦଙ୍କର ନିର୍ମଳା, ଚଣ୍ଡୀପ୍ରସାଦଙ୍କର 'ମନୋରମା', ଭଗବତୀ ପ୍ରସାଦଙ୍କର 'ଅନାଥ ପତ୍ନୀ' ପ୍ରଭୃତି ଉପନ୍ୟାସରେ ଏ ପ୍ରକାର ସମସ୍ୟା ସୃଷ୍ଟି ହୋଇଛି । ନାୟିକା ମନରେ ସ୍ୱାମୀର ବୃଦ୍ଧତ୍ୱ ନେଇ ପ୍ରତିକ୍ରିୟା ସୃଷ୍ଟି ହୋଇଛି, କିନ୍ତୁ ସତୀ ପରି କେହି ପ୍ରତିବାଦ କରିନାହାନ୍ତି । ବିବାହ କରିଥିବା ବ୍ୟକ୍ତି ନିକଟରେ ନିଜକୁ ସମର୍ପଣ ନ କରିବାର ଦୃଢ଼ତା କେବଳ ଆମେ ଦେଖୁ ସତୀ ନିକଟରେ ।

ମାତୃତ୍ୱର ଅନୁଭବ ନାରୀ ପାଇଁ ଭଗବାନଙ୍କର ଏକ ବିଶେଷ ବରଦାନ । କେବଳ ସନ୍ତାନକୁ ଜନ୍ମ ଦେଲେ ଯେ ଜଣେ ନାରୀ ମା' ହୋଇପାରେ

ତା' ନୁହେଁ, ମାତୃତ୍ୱ ତା' ଭିତରେ ଏପରି ଏକ ସହଜ ପ୍ରବୃତ୍ତି ଯେ ତାହା ସ୍ୱତଃ ଜାଗ୍ରତ ହୁଏ । ସତୀ ଘୃଣା କରୁଥିବା ତା'ର ସ୍ୱାମୀର ପୁତ୍ର ନଟକୁ ନିଜ ସନ୍ତାନ ପରି ସ୍ନେହ କରିଛି । ମାତୃହରା ନଟ ସତୀକୁ ପାଇ ତା' ନିଜ ମାଆକୁ ହିଁ ପାଇଛି ଓ ସତୀ ତା' ଶାଶୁଙ୍କ ଭିତରେ ପାଇଛି ତା' ମାଆକୁ ।

ଦାସୀ ସହରଖି ସହିତ ନିଜ ସ୍ୱାମୀର ଅବୈଧ ସମ୍ପର୍କ ସେ ଜାଣିପାରିଛି । ଦାସୀର ମନ୍ତ୍ରଣାରେ ନରହରି ତା'ଠାରୁ ଘରର ଚାବି ନେଇ ଯାଇଛନ୍ତି, ତାକୁ ଅକଥନୀୟ ଯନ୍ତ୍ରଣା ଓ ଅପମାନ ଦେଇଛନ୍ତି । ସତୀ ଜାଣିଥିଲା ପ୍ରେମହୀନ ଦୈହିକ ସାନ୍ନିଧ୍ୟ କେବଳ ତା' ସ୍ୱାମୀକୁ ତୁଷ୍ଟ କରିପାରିବ । ତେଣୁ ସେ ଚାହିଁଥିଲେ ଲମ୍ପଟ ନରହରିକୁ ଅନାୟାସରେ ନିଜର କର୍ତ୍ତୃତ୍ୱରେ ରଖିପାରିଥାନ୍ତା, ଦାସୀ ସହରଖିକୁ ଘରୁ ବିତାଡ଼ିତ କରିଦେଇ ପାରିଥାନ୍ତା । କିନ୍ତୁ ଘରର ମାଲିକାଣୀ ହେବାପାଇଁ ସେ ତା'ର ଆତ୍ମାକୁ ବାଜି ଲଗାଇ ପାରିନି । ପ୍ରେମହୀନ ସମ୍ଭୋଗ-ଠାରୁ ବଳି ମରଣାନ୍ତକ ଯନ୍ତ୍ରଣା ନାରୀପାଇଁ ଆଉ କିଛି ନାହିଁ । ସତୀ ସମସ୍ତ ସୁବିଧା, ସୁଯୋଗ ଓ ସ୍ୱାଚ୍ଛନ୍ଦ୍ୟ ହରାଇଛି ସତ; କିନ୍ତୁ ତା'ର ଦୃଢ଼ତା ପାଇଁ ଅନ୍ତତଃ ସେ ପ୍ରକାର ଯନ୍ତ୍ରଣା ସେ ଭୋଗ କରିନି ।

କପିଳେଶ୍ୱର ମହାଦେବଙ୍କ ନିକଟରେ ପୂର୍ବ ପରିକଳ୍ପିତ ଯୋଜନାନୁଯାୟୀ ସତୀକୁ ଛାଡ଼ିଦେଇ ନରହରି ସଉରଖି ଚାଲିଆସିଛନ୍ତି । ନରହରିଙ୍କର ଉଦ୍ଦେଶ୍ୟ ପୂରଣ ନ ହେବାରୁ ତାଙ୍କ ନିକଟରେ ସତୀର ଆବଶ୍ୟକତା ତୁଟି ଯାଇଥିଲା । ଏକାକିନୀ ମେଳାରେ ଭସୁଥିବା ସତୀ ହଠାତ୍ ତାର ନାଥନନାଙ୍କୁ ଦେଖି ଆଶ୍ରା ପାଇଗଲା । କିନ୍ତୁ ପରଦିନ ସକାଳେ ଘରେ ପହଞ୍ଚି ସ୍ୱାମୀଠାରୁ ପାଇଛି ଅପମାନ ଓ ଚରିତ୍ରହୀନତାର ଅପବାଦ । ସମାଜର ନାରୀପ୍ରତି ଏ ପକ୍ଷପାତ ବିଚାରର ବିରୋଧରେ ମନ ତା'ର ବିଦ୍ରୋହ କରିଉଠିଛି କିନ୍ତୁ କ'ଣ ବା ସେ କରି-ପାରିଥାନ୍ତା । ଲୋକନାଥର ଆଶ୍ରୟ ବ୍ୟତୀତ ତା'ର ଅନ୍ୟ କୌଣସି ଗତି ନଥିଲା । କଟକର ଭଡ଼ାଘରେ ନାଥନନା ପାଖରେ ଥିବାବେଳେ ସେ ଗାଁକୁ ଫେରିଯିବାକୁ ବାରମ୍ବାର କହିବା ସତ୍ତ୍ୱେ ଲୋକନାଥର ବିଳମ୍ବ କରିବାର ଦେଖି ତା' ଭିତରେ ସନ୍ଦେହଟିଏ ମୁଣ୍ଡ ଟେକି ଉଠିଛି ଓ ସେ ସିଧାସଳଖ ଲୋକନାଥ ନିକଟରେ ଅଭିଯୋଗ କରିଛି । କିନ୍ତୁ ପିତାମାତାଙ୍କର ମୃତ୍ୟୁଖବର ଶୁଣିବା ପରେ ସତୀ ବୁଝିପାରିଛି ଯେ ଗାଁରେ ତା'ର କେହି ନାହିଁ ଯାହା ପାଖକୁ ସେ ଫେରିଯାଇ ପାରିବ ।

କଟକ ଘରେ ଥିବାବେଳେ ପଡ଼ୋଶୀ ସ୍ତ୍ରୀଟି ଲୋକନାଥକୁ ତା' ସ୍ୱାମୀ ଭାବି କଥା କହିବାବେଳେ ସେ ପାଇଛି ଅପୂର୍ବ ଆନନ୍ଦ । ଏତେଦିନ ନିର୍ଜନରେ

ଏକାକୀ ରହିବା ପରେ ମଧ୍ୟ ସତୀ ଓ ଲୋକନାଥ କଠିନ ସଂଯମ ଅବଲମ୍ବନ କରିଛନ୍ତି । କିନ୍ତୁ ନାରୀ ଓ ପୁରୁଷର ପରସ୍ପର ପ୍ରତି ସ୍ୱାଭାବିକ ଆକର୍ଷଣକୁ କେତେଦିନ ସମାଜ ନାମରେ, ଶାସ୍ତ୍ର ନାମରେ ଏଡ଼େଇ ଦେଇ ପାରିଥାନ୍ତେ ! ଲୋକନାଥ ଯେଉଁଦିନ ପ୍ରଥମ କରି ସତୀକୁ ଆଲିଙ୍ଗନ କରି ଚୁମ୍ବନଟିଏ ଦେଇଛି ସତୀର ମନେ ହୋଇଛି, ସେଇ ମୁହୂର୍ତ୍ତରେ ଯେତେ ଯେପରି ତା'ର ନାରୀତ୍ୱ ସାର୍ଥକ ହୋଇଗଲା । ବହୁବର୍ଷର ଦାମ୍ପତ୍ୟ ଯେଉଁ ଆନନ୍ଦଧାରାକୁ ସ୍ପର୍ଶ କରିପାରେନା, ଅନୁଭବ କରିପାରେନା, ସେଇ ଆନନ୍ଦର ଧାରା ସତୀର ସମଗ୍ର ସତ୍ତା ଭିତରେ ପ୍ରବାହିତ ହୋଇଯାଇଥିଲା । ମୁହୂର୍ତ୍ତିକ ମଧ୍ୟରେ ଦେଇଯାଇଥିଲା କେତେ କଳ୍ପାନ୍ତ-ରର ଅନୁଭୂତି । ତା' ଜୀବନରେ ନାଥନନା କିଏ ବୋଲି ପ୍ରଶ୍ନ କଲାବେଳେ ବିନାଦ୍ୱିଧାରେ ସହଜ ଉତ୍ତରଟିଏ ଆସିଛି 'ସେ ତା'ର ସବୁକିଛି' । ସତୀ ଭାବିଛି, ''ସଂସାର ଲୋକେ ହଜାରେ ନାହିଁ କଲେ ସୁଦ୍ଧା ସମାଜ ଲକ୍ଷେ ଥର ଅସ୍ୱୀକାର କଲେ ସୁଦ୍ଧା ସେହି ଜଣକୁ ତ ଏ ଜୀବନରେ ନିବିଡ଼ ଭାବରେ ମୋର ବୋଲି ଅନୁଭବ କରିଛି । ଜ୍ଞାନ ହେଲା ଦିନ ଆଜିଯାଏ କେବଳ ତାଙ୍କର ପାଖରେ ସ୍ତ୍ରୀର ସମସ୍ତ ଦେୟ ମନେ ମନେ ଅର୍ପଣ କରିଆସିଛି । କିନ୍ତୁ ତା'ର ଏଇ ହୃଦୟବୃତ୍ତିକୁ ମାନିନେବ କିଏ ? ମଣିଷ ଗଢ଼ା ସମାଜର ଅନ୍ଧ ନିୟମ ! ପୁରୁଷର ଯଥେଚ୍ଛାଚାରର ପାଖରେ ନାରୀତ୍ୱର ମର୍ଯ୍ୟାଦା ସେ ବିସର୍ଜନ ଦେଇପାରିନାହିଁ ବୋଲି ସେ ହେଇଛି ସମାଜ ଆଖିରେ ପତିତା, କୁଳଟା ।

ସମାଜର ନାଲି ଆଖିକୁ ଭୟ କରିନି ଲୋକନାଥ । ସତୀ ପାଇଁ ସମସ୍ତ ଅପବାଦକୁ ସହ୍ୟ କରି ନିର୍ଭୀକ ଭାବରେ ଠିଆ ହୋଇଛି ସେ ଶେଷଯାଏ । ସତୀ ଜାଣିଥିଲା ସାମାଜିକ କଟକଣା ଲୋକନାଥ ଓ ତାକୁ ସ୍ୱାମୀ ସ୍ତ୍ରୀ ଭାବରେ ସ୍ୱୀକୃତି ଦେବନାହିଁ । କିନ୍ତୁ ତାର ନାଥନନା ମଧ୍ୟ ତା'ର ଜୀବନ ଥିବାଯାଏ ଅସହାୟା ସତୀକୁ ପରିତ୍ୟାଗ କରିବ ନାହିଁ । ତାର ପ୍ରିୟତମ ନାଥନନା ପ୍ରତି ସମାଜର ଆକ୍ଷେପ ଓ ଅପମାନ ସହ୍ୟ କରି ନ ପାରି ସତୀ ବାଧ୍ୟ ହୋଇଛି ଗ୍ରହଣ କରିବା ପାଇଁ ଶେଷପନ୍ଥା—ଆତ୍ମହତ୍ୟା ।

ସତୀ ଚରିତ୍ର ଚିତ୍ରଣରେ ଔପନ୍ୟାସିକ ଉପେନ୍ଦ୍ର କୁମାର ଯଥେଷ୍ଟ ଦୃଢ଼ତାର ପରିଚୟ ଦେଇଛନ୍ତି । ସତୀପାଇଁ ତାଙ୍କର ଆନ୍ତରିକ ଶ୍ରଦ୍ଧା ଓ ସମ୍ବେଦନା ସତ୍ତ୍ୱେ ମଧ୍ୟ ତତ୍କାଳୀନ ସାମାଜିକ ପୃଷ୍ଠଭୂମିରେ ଆଉ ଅଧିକ କିଛି କରିପାରିନାହାନ୍ତି । ବାଧ୍ୟହୋଇ ସତୀକୁ ସ୍ରୋତସ୍ୱିନୀର ଗର୍ଭରେ ବିସର୍ଜନ କରିଦେଇଛନ୍ତି ।

**ନେତ୍ରମଣୀ**—ଔପନ୍ୟାସିକ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର କାଳଜୟୀ ଉପନ୍ୟାସ 'ମାଟିର ମଣିଷ'ର ନାୟିକା ନେତ୍ରମଣି, ଗାଁଗଣ୍ଡାର ସାଧାରଣ ଝିଅଟିଏ । ଗ୍ରାମପଧାନର ସାନପୁଅ ଛକଡ଼ିର ହାତଧରି ବାହାହୋଇ ଆସିଛି ଶାଶୁଘରକୁ । ଥିଲାବାଲା ଘରର ଝିଅ ସେ, ବାପଘରର ଧନ ନେଇ ମନରେ ଟିକେ ଗର୍ବ ବି ଥିଲା । ଯେଉଁ ଘରକୁ ବୋହୂ ହୋଇ ଆସିଲା ସେଠି ଥିଲେ ଶାଶୂ ଶଶୁର, ଯା, ଦେଢ଼ଶୁର, ଗୁରେଷ୍ଟି ଝିଆରି ପୁତୁରା ଓ ତା'ର ଦାୟି-ତ୍ୱହୀନ ଫୁଲଫାଙ୍କିଆ ସ୍ୱାମୀ । ଶାଶୂ ଶଶୁରଙ୍କ ମୃତ୍ୟୁ ପରେ ଦୁଇ ଯା'ର ଭିତରେ କଳହ, ଭାଇ ଭାଇ ଭିତରେ ମନାନ୍ତର, ଜମିବଣ୍ଟା ନେଇ ନେତ୍ରମଣିକୁ ହିଁ ଦାୟୀ କରାଯାଇଛି ।

ବିଚାରି ନେତ୍ରମଣି ! ଅଳ୍ପ ବୟସର ଝିଅଟିଏ ବୋହୂ ହୋଇ ଆସିଥିଲା ମନରେ କେତେ ସ୍ୱପ୍ନ କେତେ କଳ୍ପନା ନେଇ । ବାପଘର ଛାଡ଼ି ଆସିଲାବେଳେ ସବୁଝିଅ ଭାବନ୍ତି ସ୍ୱାମୀସହିତ ଘରସଂସାର କରିବେ, ନିଜ ମନମୁତାବକ ଘରଣୀ-ପଣିଆ ଦେଖେଇବେ, ଘରର କର୍ତ୍ତ୍ରୀ ହେବେ । ସେହିପରି ସ୍ୱାଭାବିକ ଇଚ୍ଛାଟିଏ ଥିଲା ନେତ୍ରମଣିର । ଶାଶୂ ବଞ୍ଚିଥିବାଯାଏ ଘରର ସାମ୍ରାଜ୍ଞୀ ହେବା ଅଭିଳାଷଟି ତା'ର ମନରେ ସଂଗୁପ୍ତ ଥିଲା । ତା' ମନ ସହଜଭାବରେ ଶାଶୂକୁ ହିଁ ଘରର କର୍ତ୍ତ୍ରୀ ବୋଲି ମାନିନେଇଥିଲା । ଶାଶୂଙ୍କର ତା'ପ୍ରତି ପ୍ରକାଶ ପାଉଥିବା ଆଦର ଯତ୍ନରେ ବାପ ଘରେ ଛାଡ଼ି ଆସିଥିବା ତା'ବୋଉର ସ୍ମୃତି ମ୍ଳାନ ହୋଇଯାଇ-ଥିଲା । କିନ୍ତୁ ଶାଶୂଙ୍କ ପରେ ହାରିବୋଉ ଓରଫ ତା'ର ବଡ଼ ଜା'ର କର୍ତ୍ତୃତ୍ୱକୁ ସେ ମାନିନେଇ ପାରିଲା ନାହିଁ କାହିଁକି ? କାହିଁକି ତା' ଭିତରେ ଏତେ ଅସନ୍ତୋଷ ତେଜି ଉଠିଲା ? ସେ କଣ ଏକା ସେଥିପାଇଁ ଦାୟୀ ? ହାରିବୋଉ ତା'ଠାରୁ ବୟସରେ ବେଶ୍ ବଡ ଥିଲା । ତା'ର ବଡ଼ଝିଅ ସୁନା ଓ ନେତ୍ରମଣି ପ୍ରାୟ ଥିଲେ ଏକାବୟସର । ହାରିବୋଉ ଗୁରେଷ୍ଟି ସନ୍ତାନର ମା, ତା'ର ଥିଲା ଘର-କରଣା ସମ୍ପର୍କରେ ଦୀର୍ଘ ଅଭିଜ୍ଞତା । ପଧାନ ବୁଢ଼ାବୁଢ଼ୀଙ୍କର ଆଦର୍ଶ ଜୀବନଧାରା ସହ ତାର ଭଲ ପରିଚୟ ଥିଲା । ଏସବୁ ସତ୍ତ୍ୱେ ସାନ ଜା'ଟିକୁ ଆନ୍ତରିକ ସ୍ନେହ ସେ ଦେଇପାରିଲା ନାହିଁ । ବରଂ ପଦେ ପଦେ ତା'ର ଦୋଷତ୍ରୁଟି ପାଇଁ ତାକୁ ଅପମାନିତ କଲା । ସ୍ନେହ ଶ୍ରଦ୍ଧାହୀନ ଶାସନ ଶାସିତକୁ ସାମୟିକ କାଳ ଲାଗି ଅବଦମିତ କରିପାରେ; କିନ୍ତୁ ତା' ମନ ଉପରେ କୌଣସି ସ୍ଥାୟୀ ପ୍ରଭାବ ପକାଇ ପାରେ ନାହିଁ । ତାହା ହିଁ ହେଲା ନେତ୍ରମଣିର । ସେ ହାରିବୋଉକୁ ସମ୍ମାନ କଲା ନାହିଁ, ବରଂ ଭାବିଲା ହାରିବୋଉ ଯେପରି ଗ୍ରାମପଧାନର ଗୋଟିଏ

ପୁଅର ସ୍ତ୍ରୀ, ସେ ମଧ୍ୟ ସେହିପରି ଆଉ ଏକ ପୁଅର ସ୍ତ୍ରୀ । ପାର୍ଥକ୍ୟଟା କ'ଣ ! ଆରମ୍ଭ ହୋଇଗଲା କଳହ, ପାରିବାରିକ ଅଶାନ୍ତି ବଢ଼ିଲା ।

ନେହମଣି ନିଜର ଭବିଷ୍ୟତ ସମ୍ପର୍କରେ ଅନିଶ୍ଚିତତା ଅନୁଭବ କରୁଥିଲା । କାରଣ ତା'ର ସ୍ୱାମୀ ଛକଡ଼ି ଥିଲା ସମ୍ପୂର୍ଣ୍ଣ ଦାୟିତ୍ୱହୀନ ଯୁବକ । କୌଣସି ଘର କାମ ବା ବାହାର କାମରେ ତା'ର ମନ ନଥିଲା । ଯାନିଯାତ୍ରା ଦେଖିବା, ହାଟ ଘାଟରେ ବୁଲିବା ଓ ଘରକୁ ଫେରିଲେ ଝିଆଖି ପୁରୁଷଙ୍କ ସହିତ ଖେଳିବା ବ୍ୟତୀତ ତା'ର ଅନ୍ୟ କାମ କିଛି ନଥିଲା । ଛକଡ଼ିର ପିଲାମାନଙ୍କ ପ୍ରତି ଅଧିକ ସ୍ନେହମମତାକୁ ନେହମଣି ସହିପାରୁ ନ ଥିଲା । ସେ ଭାବୁଥିଲା ତା'ସ୍ୱାମୀଟା ତା'ର ଗୋଟାଯାକ···ସେଠି ଆଉ କାହାରି କିଛି ଅଧିକାର ନାହିଁ । ଏ କ୍ଷେତ୍ରରେ ତା'ର ସଙ୍କୀର୍ଣ୍ଣ ମନର ପରିଚୟ ମିଳିଲେ ବି ନବ ବିବାହିତା ବଧୂର ଏହା ସ୍ୱାମୀସର୍ବସ୍ୱତା ବୋଲି କୁହାଯାଇ ପାରେ । ଛକଡ଼ିର ବଡ଼ଭାଇ ବିରଜୁ ପଧାନ ହିଁ କ୍ଷେତବାଡ଼ି ଭଲ ମନ୍ଦ ସବୁ ବୁଝୁଥିଲା । ସାନ ଭାଇର ଫୁଲ୍‌ଫାଙ୍କିଆ, ପିଲାଳିଆ ସ୍ୱଭାବ ପାଇଁ ଭାଇ ବିରଜୁ କୌଣସି ପ୍ରତିକ୍ରିୟା ପ୍ରକାଶ ନ କଲେ ମଧ୍ୟ ହାରିବୋଉର ଆଚରଣରେ ପ୍ରକାଶିତ ଉପେକ୍ଷା ଭାବ ନେହମଣିର ଦୃଷ୍ଟି ଏଡ଼େଇ ଦେଇ ପାରୁ ନ ଥିଲା । ସବୁ ସ୍ତ୍ରୀ ଚାହାନ୍ତି ନିଜ ସ୍ୱାମୀର ବ୍ୟକ୍ତିତ୍ୱ ଓ ପ୍ରତିଷ୍ଠା । ବଡ଼ ଭାଇର ଦୟାରେ ବଞ୍ଚିଥିବା ସ୍ୱାମୀ ପ୍ରତି ନାରୀର ଶ୍ରଦ୍ଧା ଓ ସମ୍ମାନ କମିଯାଏ । ଏକ ମେରୁଦଣ୍ଡହୀନ ବ୍ୟକ୍ତି ଉପରେ ନିର୍ଭର କରିବାକୁ ତାର ଭୟ ହୁଏ । ନେହମଣି ଦେଖିଛି ବଡ ଜାଆର ପିଲାମାନଙ୍କ ଦିନକୁ ଦିନ ବଢୁଥିବା ଖର୍ଚ୍ଚ ଓ ତାଙ୍କ ଝିଅ-ମାନଙ୍କର ବାହାଘର ଖର୍ଚ୍ଚ ସବୁ ସେଇ କୋଠ ସମ୍ପତ୍ତିରୁ ହେଉଛି । ତା'ର ଧାରଣା ହେଉଛି, ସବୁ ସମ୍ପତ୍ତି ହୁଏତ ଏହିପରି ସରୁ ସରୁ ସରିଯିବ ଓ ଅକର୍ମା ଛକଡ଼ି କୋଉ କୂଳର ହେବନି । ଛକଡ଼ି ସହିତ ତା' ନିଜର ଭବିଷ୍ୟତ ମଧ୍ୟ ଜଡ଼ିତ ଏବଂ ଛକଡ଼ି ତାର ଅନାଗତ ସନ୍ତାନମାନଙ୍କର ଭବିଷ୍ୟତ । ସ୍ୱାମୀର ଦୁର୍ବଳ ବ୍ୟକ୍ତିତ୍ୱ ହିଁ ତା'ର ବର୍ତ୍ତମାନ ଓ ଭବିଷ୍ୟତର ନିରାପତ୍ତାକୁ ବିପନ୍ନ କରି ଦେଇଛି । ନେହମଣି ଦେଖିଛି ଘରେ ଓ ବାହାରେ କୌଣସିଠାରେ ଛକଡ଼ିର କୌଣସି ଗୁରୁତ୍ୱ ନାହିଁ । ତାକୁ ଗୋଟେ ମଣିଷ ଭାବରେ କେହି ବିବେଚନା କରୁ-ନାହାନ୍ତି । ନେହମଣିର ମାନସିକ ସ୍ଥିତି କ୍ରମଶଃ ବିପର୍ଯ୍ୟସ୍ତ ହୋଇଛି, ସେ ନିଜକୁ ପରିବାରର ଜଣେ ବୋଲି ଭାବି ପାରୁନି, ନିଜର ସ୍ଥିତିକୁ ଦୃଢ଼ କରିବାକୁ ସେ ସ୍ଥିର କରିଛି । ନିଜର ଅଧିକାର ସମ୍ପର୍କରେ ଅନ୍ୟମାନଙ୍କୁ ସଚେତନ କରିବାକୁ ଯାଇ ସେ ଘରେ ଅଯଥା କଳହ ସୃଷ୍ଟି କରିଛି । ହାରିବୋଉ ଓ ନେହମଣି ଗାଁର ଦୁଇଟି ସାଧାରଣ ନାରୀ । ଜଣେ ନିଜର କର୍ତ୍ତୃତ୍ୱରୁ ଇଞ୍ଚେ ମାତ୍ର ଛାଡ଼ିବାକୁ ପ୍ରସ୍ତୁତ

ନୁହେଁ । ଆଉ ଜଣେ ନିଜର କିଛି କର୍ତ୍ତୃତ୍ୱ ହାସଲ କରିବାକୁ ଯାହା କିଛି ମୂଲ୍ୟ ଦେବାକୁ ପ୍ରସ୍ତୁତ ।

ବରଜୁ ପ୍ରଧାନ ନିଜ ସ୍ତ୍ରୀକୁ ସବୁ ପ୍ରକାର ଦ୍ୱନ୍ଦ୍ୱ କଳହରୁ ନିବୃତ୍ତ ରଖିବା ପାଇଁ ଅନଶନ, ମୌନବ୍ରତ ପ୍ରଭୃତି ପନ୍ଥା ଅବଲମ୍ବନ କରିଛି । ହାଣ୍ଡିବୋଉର ଚରିତ୍ର ପରିବର୍ତ୍ତନ ହୋଇନି, କିନ୍ତୁ ସେ ସ୍ୱାମୀ କଥାକୁ ମାନିଯାଇ ନୀରବ ହୋଇ-ଯାଇଛି । ନେଣ୍ଟମଣିର ଆହ୍ୱାନର କୌଣସି ପ୍ରତ୍ୟୁତ୍ତର ଦେଇନି । କିନ୍ତୁ ଛକଡ଼ି କରିଛି କ'ଣ ? ନିଜ ସ୍ତ୍ରୀକୁ ପ୍ରଭାବିତ କରିପାରିବା ଭଳି ବ୍ୟକ୍ତିତ୍ୱ ତା'ର ନଥିଲା । ବରଂ ସେ ନିର୍ବିବାଦରେ ମାନି ନେଲା ସ୍ତ୍ରୀର ପରାମର୍ଶ ଓ ହରି ମିଶ୍ରଙ୍କ ମନ୍ତ୍ରଣା । ଘରେ ଉଠିଲା ଭାଗର ପ୍ରଶ୍ନ । ବରଜୁ, ଯିଏ ସାତଖଣ୍ଡ ଗାଁରେ ଏସବୁ ସମସ୍ୟାର ସମାଧାନ କରୁଥିଲା, ତା'ର ଘରେ ସେଇ ସମସ୍ୟାର ସେ ମୁକାବିଲା କରି ପାରିଲାନି । ଘର ମଝିରେ ପାଚେରି ଉଠାଇବାର ସେ ବିରୋଧ କଲା । କିନ୍ତୁ ମନ ଭିତରେ ଉଠି ଯାଇଥିବା ପାଚେରିଟି ଭାଙ୍ଗିବାପାଇଁ ତା'ର ଉଦ୍ୟମ ଉଲ୍ଲେଖନୀୟ ନୁହେଁ । ଘର ମଝିରେ ପାଚେରି ଉଠିବନି ଓ ବିଲ ଭିତରେ ହିଡ଼ ପଡ଼ିବନି, ବାପର ଏଇ ଶେଷ ନିର୍ଦ୍ଦେଶକୁ ମନେହୁଏ ସେ ଆକ୍ଷରିକ ଅର୍ଥରେ ବୁଝିଥିଲା······ଦୁଇ-ଭାଇ ମନମିଳି ଚଳିବାଟା ଥିଲା ଗୌଣ । ସାନଭାଇ ଛକଡ଼ିର ଅନୁପସ୍ଥିତିରେ ବରଜୁ ତା'ର ସ୍ତ୍ରୀ ଓ ପିଲାଛୁଆଙ୍କୁ ନେଇ ଘରଛାଡ଼ି ଚାଲିଗଲା । ନେଣ୍ଟମଣି ବାଧା ଦେଲାନି । କିନ୍ତୁ ସେ ତ କେବେ ଚାହୁଁ ନ ଥିଲା ଦେଢ଼ଶୁର ତାଙ୍କର ପିଲାଛୁଆ ଧରି ଘର ଛାଡ଼ି ଚାଲିଯାନ୍ତୁ, ସେ ତ ଚାହୁଁ ନ ଥିଲା ସମସ୍ତ ସମ୍ପତ୍ତିର ଅଧିକାରୀ ହେବାକୁ, ସେ କେବଳ ଚାହିଁଥିଲା ନିଜ ପାଇଁ ଏକ ସ୍ୱତନ୍ତ୍ର ଘର ଓ ସମ୍ପତ୍ତିରୁ ତାର ପ୍ରାପ୍ୟ ଅଂଶ । ତେଣୁ କାହାରି କଥା ନ ଶୁଣି ବରଜୁ ଘରୁ ଚାଲି ଯାଉଥିବା ବେଳେ ନେଣ୍ଟମଣି ତାଙ୍କୁ କପଟ ବାଧା ଦେଇଥାନ୍ତା । ଏ ଥିଲା ତା ପାଇଁ କର୍ତ୍ତବ୍ୟ ବିରୋଧର ସଙ୍କଟ ମୁହୂର୍ତ୍ତ । ତା'ଛଡ଼ା ଦୀର୍ଘଦିନ ଧରି ରହିଥିବା ମନର ତିକ୍ତତା । ହଠାତ୍ କିଛି ଅନୁଶୋଚନା କରିବାକୁ ପ୍ରସ୍ତୁତ ହୋଇପାରିନି । ଅହଙ୍କାର କହୁଛି, "ମୁଁ ତ କିଛି କହିନି, ସେମାନେ ଯଦି ତାଙ୍କ ମନକୁ ଯାଉଛନ୍ତି ଯା'ନ୍ତୁ ।"

ଔପନ୍ୟାସିକ 'ମାଟିର ମଣିଷ' ଉପନ୍ୟାସରେ ଯେତେଗୁଡ଼ିଏ ଚରିତ୍ର ସୃଷ୍ଟି କରିଛନ୍ତି ସେ ମଧ୍ୟରୁ କିଏ ଭଲ କିଏ ମନ୍ଦ ସେ ବିବେଚନା ଅବାନ୍ତର, କିନ୍ତୁ ଯେଉଁ ଚରିତ୍ର ସେ ସୃଷ୍ଟି କରିଛନ୍ତି ସେମାନେ କେତେ ଦୂର ସ୍ୱାଭାବିକ ଓ ଜୀବନ୍ତ ତାହା ହିଁ ବିଚାର୍ଯ୍ୟ । ନେଣ୍ଟମଣି ଚରିତ୍ର ତାଙ୍କର ଏକ ଅନନ୍ୟ ସୃଷ୍ଟି । ଗାଁ ଗଣ୍ଡାର ଅଶିକ୍ଷିତ ଗ୍ରାମ୍ୟବାଳିକାଟିଏ ଶାଶୁ ଘରେ ଆସି ପରିବର୍ତ୍ତିତ ପରିସ୍ଥିତି, ଆନ୍ତରିକତାହୀନ ବଡ଼

ଜା', ଉଦାସୀନ ଦେଢ଼ଶୁର ଓ ଦାୟିତ୍ୱହୀନ ଦୁର୍ବଳମନା ସ୍ୱାମୀ ଛକଉଡ଼ିକୁ ପାଇ ଯେପରି ବ୍ୟବହାର ଦେଖାଇଛି ସେଥିପାଇଁ ତାକୁ ସମସ୍ତ ଦୋଷ ଦିଆଯାଇ ନ ପାରେ । ନେତ୍ରମଣିର ସମସ୍ତ ଅବଗୁଣ ସତ୍ତ୍ୱେ ତାକୁ ଯଦି ପ୍ରଥମରୁ ଆପଣାର କରିନେବାର ଆନ୍ତରିକ ଚେଷ୍ଟା କରନ୍ତୁ ପଧାନ ପରିବାରରେ ପ୍ରକାଶ ପାଇଥାନ୍ତା; ତେବେ ସିଏ ହୁଏତ ସମସ୍ତଙ୍କୁ ନିଜର କରିନେଇ ପାରିଥାନ୍ତା ।

ଧୋବୀ—ଊନବିଂଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ସର୍ବଭାରତୀୟ ସ୍ତରରେ ଲେଖକମାନେ ନାରୀର ଜୀବନ ଯନ୍ତ୍ରଣା ପ୍ରତି ସମ୍ବେଦନଶୀଳ ହୋଇଛନ୍ତି । ପୌରାଣିକ, ଐତିହାସିକ, ସାମାଜିକ ବା ପାରିବାରିକ ଯେ କୌଣସି ପୃଷ୍ଠଭୂମିରେ କାହାଣୀ ଓ ଚରିତ୍ର ମାଧ୍ୟମରେ କେତେ ସମସ୍ୟା ସମାଧାନର ପନ୍ଥା ନିର୍ଦ୍ଦେଶ କରିଛନ୍ତି । କିନ୍ତୁ ଏହି ସମୟରେ ରଚିତ ଉପନ୍ୟାସ ଗୁଡ଼ିକରେ ପ୍ରାଚୀନ ଭାରତୀୟ ବିଶ୍ୱାସରେ ପତିପତ୍ନୀର ସମ୍ବନ୍ଧକୁ ଜନ୍ମଜନ୍ମାନ୍ତରର ସମ୍ପର୍କ ବୋଲି ସ୍ୱୀକାର କରାଯାଇଥିଲା । ସେମାନେ ବିଧବାର ପୁନର୍ବିବାହକୁ ପ୍ରାୟ ସ୍ୱୀକୃତି ଦେଇ ନାହାନ୍ତି ଏବଂ ପତିର ମୃତ୍ୟୁ ପରେ ପବିତ୍ର ଜୀବନଯାପନକୁ ଆଦର୍ଶ ବୋଲି ମନେ କରାଯାଇଛି । କିନ୍ତୁ ବିଂଶ ଶତାବ୍ଦୀର ପୂର୍ବାର୍ଦ୍ଧରେ ଆର୍ଯ୍ୟସମାଜର ବିଧବା ବିବାହ ସପକ୍ଷରେ ଦୃଢ଼ ଆନ୍ଦୋଳନ ଓ ତା'ର ପ୍ରତିଫଳନ ଉପନ୍ୟାସଗୁଡ଼ିକରେ ଉଲ୍ଲେଖ-ନୀୟ ସ୍ଥାନ ଲାଭ କରିଛି । ଔପନ୍ୟାସିକ କାହ୍ନୁଚରଣ ମହାନ୍ତିଙ୍କର ଶାସ୍ତି, ତୁଣ୍ଡ ବାଇଦ ପ୍ରଭୃତି ଉପନ୍ୟାସରେ ବିଧବା ନାରୀର ଦୁଃଖ ଯନ୍ତ୍ରଣା ଓ, ଅନ୍ତରର ଅଶ୍ରୁଳ କାହାଣୀ ରୂପ ପାଇଛି । କିନ୍ତୁ ସମାଧାନ ସୂତ୍ର ଦିଆଯାଇ ପାରିନି ।

ତାଙ୍କର ବହୁଚର୍ଚ୍ଚିତ ଉପନ୍ୟାସ 'ଶାସ୍ତି'ର ନାୟିକା ଧୋବୀ ଯାହାର ଜୀବନ ଦୀର୍ଘ ବୈଶାଖୀର ତତଲା ମରୁବାଲି । ବିଷ୍ଣୁପୁର ଗାଁର ଚନ୍ଦ୍ରେଇ ସୋଇଁ ମହାଜନର ଏକମାତ୍ର କନ୍ୟା ଧୋବୀ ଓ ବନେଇ ପରିଡ଼ାର ପୁଅ ସନେଇର ପ୍ରେମ ସମ୍ପର୍କ ହିଁ ଉପନ୍ୟାସଟିର ମୁଖ୍ୟ କଥାବସ୍ତୁ । ଧୋବୀ ଓ ସନେଇ କିଶୋର ବୟସରୁ ପରସ୍ପର ପ୍ରତି ଆକୃଷ୍ଟ ହୋଇଥିଲେ ଓ ସମୟ କ୍ରମେ ସେଇ ସାଧାରଣ ଆକର୍ଷଣ ଦୁହିଁଙ୍କ ଅନ୍ତରରେ ପ୍ରେମର ଶତଦଳ କମଳ ରୂପେ ପ୍ରସ୍ଫୁଟିତ ହୋଇ-ଥିଲା । କିନ୍ତୁ ସନେଇ ବାପାଙ୍କର ଜାତ୍ୟଭିମାନ ଦୁଇଟି ପ୍ରେମୀ ହୃଦୟକୁ ମିଳିତ ହେବାକୁ ଦେଲାନି । ଧୋବୀ ଅନ୍ୟ ଜଣେ ବିତ୍ତବଶାଳୀ ଯୁବକକୁ ବିବାହ ବେଦିର ପବିତ୍ର ହୋମାଗ୍ନି ସମ୍ମୁଖରେ ହାତଗଣ୍ଠି ପଡ଼ିବା ବେଳେ, "ଓଢ଼ଣୀ ତଳେ ଧୋବୀର ଆଖିରୁ ଝରିଲା ଲୁହ । ଲୁହର ବାଦଲ ଭିତରେ ସନେଇ ପରିଡ଼ାର ସୁନ୍ଦର ମୁହଁ, ବଳିଲା ବଳିଲା ଦେହ ଆଗରେ ଠିଆ ହେଲା । କେତେ

ବରସ କାଢନ୍ତି କାନ୍ଦଣା ମୁହଁ, ଯେମିତି କଣ କହିବାକୁ ଚାହିଁଛି, କହିପାରୁ ନାହିଁ ।'' ସନେଇର ସ୍ମୃତିରୁ ସମ୍ବଳ କରି ଧୋବୀ ଯାଇଛି ସ୍ୱାମୀର ସଂସାର କରିବା ପାଇଁ । ସୁଖ ମୁହଁରେ ପଡ଼ରହିଏ ପରି ଲାଗି ଯାଉଛି, ସାମାନ୍ୟ ବାଧା ସେ ଦେଇ ପାରିନ ।

ଦୁର୍ଭିକ୍ଷ ତାଡ଼ରେ ବିପର୍ଯ୍ୟସ୍ତ ହୋଇ ଯାଇଛି ସାମାଜିକ ଜୀବନ । ସନେଇ ପରିବାର ବଂଶ ଆଭିଜାତ୍ୟ କ୍ଷୁଧାର ତାଡ଼ନାରେ ନଷ୍ଟଭ୍ରଷ୍ଟ ହୋଇ ଯାଇଛି । ସନେଇ କାଙ୍ଗାଳ ଦଳରେ ମିଶି ଖାଦ୍ୟ ମୁଠାଏ ପାଇଁ ବାର ଦୁଆର ବୁଲୁଛି, ଜାତି ହରାଇଛି । ଦୁର୍ଭିକ୍ଷ ପୀଡ଼ିତ କାଙ୍ଗାଳମାନଙ୍କର ସେବା କରିବାକୁ ଯାଇ ଧୋବୀର ସ୍ୱାମୀ ଓ ଶ୍ୱଶୁର ରୋଗାକ୍ରାନ୍ତ ହୋଇ ମୃତ୍ୟୁବରଣ କଲେ । ଶାଶୁ ଆତ୍ମହତ୍ୟା କଲା ପରେ ଧୋବୀ ବୈଧବ୍ୟର ଅଭିଶାପ ନେଇ ନିଜ ବାପ ଘରକୁ ଫେରି ଆସିଲା ।

ସମୟକ୍ରମେ ସ୍ୱାମୀ ମୃତ୍ୟୁର ଦୁଃଖ ଧୀରେ ଧୀରେ ମନରୁ କମି ଆସିଲା, କିନ୍ତୁ ଆଦ୍ୟ ଯୌବନର ପ୍ରେମର ପୁଷ୍ପଟି ଧୋବୀର ମନକୁ ସୁରଭିତ କରି ରଖିଥିଲା । ଦିନେ ସେ ଜାଣିଲା କାଙ୍ଗାଳ ସନେଇ ମୁମୂର୍ଷୁ ଅବସ୍ଥାରେ ଫେରି ଆସିଛି ଗାଁକୁ । ଧୋବୀର ଅନ୍ତରାତ୍ମାର ବ୍ୟାକୁଳ ଆବେଗ ତାକୁ ମଧ୍ୟ ରାତ୍ରେ ଟାଣି ନେଇଗଲା ସନେଇ ପାଖକୁ । ପତିତ, ଜାତିଚ୍ୟୁତ ସନେଇକୁ ପରମ ଆଦରରେ ଶ୍ରେଷ୍ଠ ପିଲାଟିକୁ ଖୁଆଇବା ପରି ଧୋବୀ ଖୁଆଇ ଦେଲା । ସନେଇ ବଞ୍ଚିଲା ପୁଣି ମୁଣ୍ଡ ଟେକି ଠିଆ ହେଲା । ଧୋବୀର ଅର୍ଥସାହାଯ୍ୟ, ପ୍ରେରଣା ଓ ଭଲ ପାଇବାକୁ ସମ୍ବଳ କରି ସନେଇ ଘର କଲା, ଜାତିରେ ମିଶିଲା । ସନେଇର ଧୋବୀକୁ ନେଇ ମନରେ ଖେଳୁଥିଲା ସ୍ୱପ୍ନ । କିନ୍ତୁ ଭରସି କରି କହିବା ପାଇଁ ସାହସ ପାଉ ନଥିଲା । କିନ୍ତୁ ଶିବରାତ୍ରି ଦିନ ଧୋବୀ ସନେଇ ପାଖକୁ ଆସିଛି, ତା' ବେକର ସୁନାହାର ସନେଇକୁ ଦେଇ କହୁଛି—''ତୁ ଜମିବାଡ଼ି କର, ଗାଁର ଆଉ ପାଞ୍ଚଟଙ୍କା ସଙ୍ଗେ ସମାନ ହ । ସେତିକ ମୋର ଆନନ୍ଦ, ମୋର କେବେ ଯଦି ଦରକାର ପଡ଼େ ମୁଁ ତୋର ହାତ ଭିତରୁ ମୋର ପାଉଣା ଛଡ଼ାଇ ନେବି । ସେତେବେଳେ ତୁ ନାହିଁ କରିପାରିବୁ ନାହିଁ ।'' ପୁଣି ସନେଇର କେତେକ ପ୍ରଶ୍ନର ଉତ୍ତର ସ୍ୱରୂପ କହୁଛି । × × × ''ତୁ ବଡ଼ ହ, ତୋର ଦୁଇ ପାଦରେ ଏମିତି ମୁଣ୍ଡ ଲଗାଇ ତୋ ପ୍ରଶ୍ନର ଉତ୍ତର ଦେବି ।'' ଧୋବୀର ଏହି କଥା ଶୁଣି ସନେଇ ମନରେ ଧୋବୀକୁ ପାଇବାର ଆଶା ଦୃଢ଼ୀଭୂତ ହୋଇଛି ଓ ପାଠକମାନେ ମଧ୍ୟ ଧୋବୀର ଦୁଃଖ ଯନ୍ତ୍ରଣାର ଏକ ପରିସମାପ୍ତିର ଆଶାରେ ଆଶ୍ୱସ୍ତ ହୋଇଛନ୍ତି ।

କିନ୍ତୁ ଔପନ୍ୟାସିକଙ୍କ ମନରେ ଧୋବୀ ପାଇଁ ରହିଛି ଭିନ୍ନ ଯୋଜନା । ସ୍ୱାମୀ ଘରକୁ ଫେରି ତାଙ୍କ ଘରେ ବନ୍ଧକ ଥିବା ପ୍ରଜାଙ୍କର ଜମିବାଡ଼ିର କାଗଜ-ପତ୍ର ତାଙ୍କୁ ଫେରେଇ ଦେଇଛି । ତା' ମନରେ ଧନ ସମ୍ପତ୍ତି ପାଇଁ କୌଣସି ଲୋଭ ନ ଥିଲା । ସେ କେବଳ ଚାହୁଁ ଥିଲା ଗୋଟିଏ ସାଧାରଣ ନାରୀର ଅଭିଳଷିତ ଛୋଟିଆ ଘର, ମନର ମଣିଷ ଓ ତା' ରକ୍ତର ସନ୍ତାନ । ମାତୃତ୍ୱ ଓ ନାରୀତ୍ୱର ସାର୍ଥକତା ପାଇଁ ଧୋବୀର ମନରେ ଥିଲା ସେଇ ଚିରନ୍ତନ ବ୍ୟାକୁଳତା । ଧୋବୀର ବୋଉ ବୁଝିଥିଲେ ଝିଅର ମନକଥା । ସେନେଇ ସମ୍ଭବତ ତା'ର ପୁନର୍ବିବାହର ପ୍ରସ୍ତାବ ଦେଲେ, କିନ୍ତୁ ଚନ୍ଦ୍ରେଇ ସୋଇଁ ତାକୁ ପ୍ରତ୍ୟାଖ୍ୟାନ କଲେ । ସେନେଇ ଦିନେ ଅନ୍ଧାର ବର୍ଷା ରାତିରେ ଛୁଟି ଯାଇଛି ଧୋବୀ ପାଖକୁ, ଦୁହେଁ ବୁଝିଛନ୍ତି ଦୁହିଁଙ୍କର ଅସହାୟତା । ସେନେଇ ଫେରି ଆସିଛି ହତାଶ ମନ ନେଇ ଓ ଧୋବୀ ଆଶା ଓ ଆଶାଭଙ୍ଗର ଯନ୍ତ୍ରଣା ଭିତରେ ସନ୍ତୁଳିତ ହୋଇ ରୋଗାକ୍ରାନ୍ତ ହୋଇ-ପଡ଼ିଛି ।

ପାଗଳୀ କଇଁର ପ୍ରଳାପ 'ସନିଆ ମୋ ବର' ଶୁଣିବା ପରେ ସନିଆ ମନରେ ଭାବାନ୍ତର ସୃଷ୍ଟି ହୋଇଛି ଓ ସେ କଇଁକୁ ସ୍ତ୍ରୀ ରୂପେ ଗ୍ରହଣ କରିଛି । ଧୋବୀର ଶାରୀରିକ ଅବସ୍ଥା ଲକ୍ଷ୍ୟକରି ତା' ବାପା ଚନ୍ଦ୍ରେଇ ସୋଇଁ ଯେତେବେଳେ ସନିଆ ନିକଟରେ ଧୋବୀ ସହ ବିବାହର ପ୍ରସ୍ତାବ ଦେଇଛନ୍ତି ସନିଆ ତାହା ପ୍ରତ୍ୟାଖ୍ୟାନ କରିଛି । ଏଇ ସ୍ଥାନରେ ପ୍ରସଙ୍ଗଟି କିପରି ଅବାନ୍ତର ବୋଧହୁଏ । ଯେଉଁ ଧୋବୀ ଓ ସନିଆ ପରସ୍ପରକୁ ବାଲ୍ୟକାଳରୁ ଭଲ ପାଉଥିଲେ ଓ ଧୋବୀ ଜାତିପତିଙ୍କୁ ଭୟ ନ କରି ପତିତ ସନିଆକୁ ଖାଦ୍ୟ ଦେଇ ମୃତ୍ୟୁମୁଖରୁ ବଞ୍ଚାଇଥିଲା ଓ ଯାହାର ଦାନରେ ସନିଆ ଜାତିରେ ମିଶିପାରିଲା, ଘରଦ୍ୱାର କଲା, ପାଞ୍ଚଜଣରେ ଜଣେ ହେଲା, ସେଇ ସନିଆ ଧୋବୀର ଅସହାୟତା ଜାଣି ମଧ୍ୟ ନିଜର ସୁଖ ବା ଆଦର୍ଶ ପାଇଁ କଇଁକୁ ଗ୍ରହଣ କରିଗଲା । ଧୋବୀର ଦୀର୍ଘକାଳ ଧରି ଏ କୃଚ୍ଛ୍ର ପ୍ରେମସାଧନାର ବା କି ମୂଲ୍ୟ ରହିଲା ! ହୁଏତ ଆଉ କେଇଟି ଦିନ ସନିଆ ଅପେକ୍ଷା କରିଥିଲେ ଚନ୍ଦ୍ରେଇ ସୋଇଁଙ୍କର ସ୍ୱୀକୃତିରେ ଯେ ଦୁହିଁଙ୍କର ବିବାହ ହୋଇପାରିଥାନ୍ତା । କିନ୍ତୁ ତା' ହେଲା ନାହିଁ । ଧୋବୀକୁ ମୃତ୍ୟୁମୁଖକୁ ଠେଲି ଦିଆଗଲା । ଔପନ୍ୟାସିକ କାହ୍ନୁଚରଣ ଧୋବୀ ଚରିତ୍ର ଚିତ୍ରଣରେ ଯଥେଷ୍ଟ ସହାନୁଭୂତି ଓ ଆନ୍ତରିକତା ପ୍ରଦର୍ଶନ କରିଛନ୍ତି । କିନ୍ତୁ ହୁଏତ ବ୍ୟକ୍ତିଗତ ଭାବରେ ସେ ବିଧବା ବିବାହର ସମର୍ଥନ କରୁନଥିବାରୁ ସାମାଜିକ ବାଧା ପ୍ରତିବନ୍ଧକ ନଥିବା ସ୍ଥଳେ ମଧ୍ୟ ସେ ଧୋବୀର ବିବାହ ଦେବା ପାଇଁ କୁଣ୍ଠା ପ୍ରକାଶ କରି କାହାଣୀର ମୋଡ଼ ବଦଳାଇ ଦେଇଛନ୍ତି ଓ ଯୋଗିଲ

ସତର ବର୍ଷର ବିଧବା ଝିଅଟିକୁ ଅଗ୍ନି ଉତ୍ତାପଣ ମଧ୍ୟରେ ମୃତ୍ୟୁମୁଖକୁ ପଠାଇଦେଇ ସବୁ ସମସ୍ୟାର ସମାଧାନ କରିଦେଇଛନ୍ତି ।

**ମାୟା**—ବସନ୍ତ କୁମାରୀ ପଟ୍ଟନାୟକଙ୍କ ଉପନ୍ୟାସ 'ଅମଡ଼ାବାଟ'ର ମାୟା ଏକ ଅନନ୍ୟ ନାରୀଚରିତ୍ର । ମାୟାର ଚରିତ୍ର ଚିତ୍ରଣରେ ଔପନ୍ୟାସିକ କଳ୍ପନା ବା ଅତିରଞ୍ଜନର ସହାୟତା ନେଇନାହାନ୍ତି । ମାୟା ଆମର ଅତି ପରିଚିତା । ସେ ଆମ ଘରର ବା ଆମ ପଡ଼ୋଶୀ ଘରର ଝିଅଟିଏ ପରି ଲାଗେ, ଯାହାକୁ ଆମେ ଭଲ ଭାବରେ ଜାଣିଛୁ ଓ ଚିହ୍ନିଛୁ । ଗୋଟିଏ ଚରିତ୍ରର ଏହି ପ୍ରକାର ସ୍ୱାଭାବିକତା ଶେଷଯାଏ ରକ୍ଷା କରିପାରିବା ରଚୟିତାର ଦକ୍ଷତା ଉପରେ ନିର୍ଭର କରେ । ମାୟା ଚରିତ୍ର ଚିତ୍ରଣରେ ସେହି ଉଚ୍ଚକୋଟୀର କଳାକୁଶଳତାର ପରିଚୟ ମିଳିଥାଏ ।

ସାଧାରଣ ଏକ ମଧ୍ୟବିତ୍ତ ପରିବାରର କର୍ତ୍ତା ପୀତାମ୍ବର ବାବୁଙ୍କର ସ୍ୱୀର-ପୁଅରେ ଏକମାତ୍ର ଝିଅ ମାୟା । ବାପା ବୋଉଙ୍କର ଗେହ୍ଲା ଝିଅ, ବଡ଼ଭାଇ ମୋହନର ଆଦରର ଭଉଣୀ ଓ ସାନ ଭାଇ ସତ୍ୟ, ରଞ୍ଜୁ ଓ ପହଲର ପ୍ରୀତିପ୍ରଦ ଆତଙ୍କଟିଏ ହୋଇଛି ମାୟା । ପ୍ରଥମେ ପାଠର ଟେବୁଲ ଉପରେ ଆଖି ବୁଜି ଲଜେନ୍‌ସର ସ୍ୱାଦ ଚାଖୁଥିବା ମାୟାକୁ ଭେଟନ୍ତି । ଲଜେନ୍‌ସର ସ୍ୱାଦକାରୀ ଗୁଣ ସମ୍ପର୍କରେ ପଚାରୁଥିବା ସାନଭାଇମାନଙ୍କୁ "ବେଶି ବାଜେ ଅଳ୍ପ ଭଲ" କହି ଗୋଟାଏ ଗୋଟାଏ ସେଥିରୁ ସେଇମାନଙ୍କ ହାତରେ ଧରାଇଦେଇ ମାୟା ତା' ନିଜ କାମ କରିଦେବାକୁ ସେମାନଙ୍କୁ ନିର୍ଦ୍ଦେଶ ଦିଏ । କଥା କହିବାରେ ଓ ପରିସ୍ଥିତି ଦେଖି ସ୍ୱର ବଦଳାଇ ଅପରପକ୍ଷକୁ ଆତଙ୍କିତ କରିଦେବାରେ ମାୟାର ଅନ୍ୟ ତୁଳନା ନାହିଁ । ସେ ପାଠ ପଢ଼ୁ ନଥିବାର ଦେଖି ବାପା ରାଗିଯିବାରୁ ତାଙ୍କୁ ତରଳାଇ ଦେବାକୁ ଆଗ୍ରହ ହାତ ଆଖିରେ ମାରି ମାୟା ଲୁହ ଝରାଉ ଝରାଉ ବିକଳହୋଇ କହେ, "ବୋଉ ଯେ କାହିଁକି ମତେ ଏନ୍ତୁଡ଼ି ଶାଳରେ ତଣ୍ଟି ଚିପି ମାରି ନ ଦେଲା···।" ବାସ୍ ତା' କାମ ହୋଇଯାଏ । ମୁହୂର୍ତ୍ତକ ଆଗରୁ ଝିଅର ଡ଼ାହା ମିଛ କଥାରେ କମାଣ୍ଡ ବାନ୍ଧି ଆସୁଥିବା ପୀତାମ୍ବର ବାବୁଙ୍କର ଲହୁଣୀ ପରି କୋମଳ ପିତୃ ହୃଦୟ ପୁଣି ସେହି ଝିଅର ଆଖି ଲୁହର ଉଷ୍ମତାରେ ତରଳି ଯାଏ ।

ମାୟାଠାରୁ ସାତସାନ ପହଲ ମଧ୍ୟ ନିଜ ଭୁଲ କଲେ ମାୟାର ତାଗିଦ୍ ନଜରର ଆଘାତରୁ ବର୍ତ୍ତିପାରେନା । ସାନ ଭାଇମାନେ ସଇସାଟିଏ ପାଇଁ ବଡ଼ଭାଇ ମୋହନର ଦୟାକୁ ହାତ ପାତୁଥିବା ବେଳେ ମାୟା ଜୋର୍ କରି ତା'ର ପ୍ରାପ୍ୟ ଆଦାୟ କରିନିଏ । ମାୟାର ପରୀକ୍ଷା ପାଖ ହୋଇ ଆସିଲେ ଘରର ସମସ୍ତେ ବ୍ୟତିବ୍ୟସ୍ତ ହୋଇପଡ଼ନ୍ତି । ପାଖ ବଖରାରେ କେହି କଥା କହି

ପାରିବେନି, ଦୁଆରେ ଠିଆ ହୋଇ ହସି ପାରିବେନି । ତା' ବୟସୀ ସାମ୍‌ନାଦେଇ ଚାଲିଯାଇ ପାରିବେନି, କାରଣ ଏସବୁ ତା' ପାଠ ପଢ଼ାରେ ବ୍ୟାଘାତ ସୃଷ୍ଟି କରିବ । ମନେହୁଏ ସତେ ଯେମିତି ପୀତାମ୍ବର ବାବୁଙ୍କ ପରିବାରରେ ସେ ଏକଛତ୍ରାଧିପତି ଓ ଅନ୍ୟମାନେ ସମସ୍ତେ ତାର ବଶମ୍ବଦ । ପୂରା ପରିବାର ତା' ମର୍ଜି ଜଗି ଚଳିବାକୁ ବାଧ୍ୟ । ନହେଲେ ଘରେ ଅଦିନ ଝଡ଼ ସୁନିଶ୍ଚିତ । ଏତେ ପ୍ରସ୍ତୁତି ପରେ ପରୀକ୍ଷା ଦେବାକୁ ଗଲାବେଳେ ମାୟା ତା'ର ଘଣ୍ଟାପିନ୍ଧା ହାତଟା ଗାଲରେ ଦେଇ ପଢ଼ା କଥା ଭାବୁ ଭାବୁ ସେ କଥା ଭୁଲିଯାଇ ସେ କେବଳ ଗଣିବାରେ ଲାଗେ କେତେଜଣ ମଣିଷ ତା' ଘଣ୍ଟାକୁ ଚାହିଁଛନ୍ତି । ତା'ର ପରୀକ୍ଷା ସରିଲେ ଘରେ ଚାକର ପୂଝାରୀଙ୍କଠାରୁ ଆରମ୍ଭ କରି ସମସ୍ତଙ୍କର ପରୀକ୍ଷା ସରେ । ତା'ର ବନ୍ଧୁ ବୟସୀକୁ ବାରମ୍ବାର ତା'ରି କଣ୍ଠରେ ଘୋଷିତ ହୁଏ 'ମାୟା ଦାସ ଫାଷ୍ଟକ୍ଳାସ୍‌ଭିଜନ' ଓ ତା'ପରେ ହାତ-ତାଳିରେ ଘୋଷଣାର ସମର୍ଥନ ପ୍ରକାଶ ପାଏ ।

ପୀତାମ୍ବର ବାବୁଙ୍କର ହାଡ଼ଫୁଟି ଭଲ ହେବା ପରେ ମାୟା ଓ ପୀତାମ୍ବର ବାବୁଙ୍କର କଥୋପକଥନରେ ମାୟା ଚରିତ୍ରର ସହଜ, ସୂକ୍ଷ୍ମ ଓ ଆନ୍ତରିକ ଦିଗଟି ଉଦ୍‌ଘାଟିତ । ପୀତାମ୍ବରଙ୍କ ଭାବନାରେ ମାୟା ଚରିତ୍ରର ସେହି ନିଜସ୍ୱ ସୌନ୍ଦର୍ଯ୍ୟଟି ଉଦ୍‌ଘାଟିତ ହୋଇଛି । "ଏଇ ମାୟା—କିଏ କହେ ସେ ଅଣ୍ଡିରାଚଣ୍ଡୀ, କିଏ କହେ କାଳହୁଣ୍ଡି, ଆଉ କିଏ ହୁଏତ କହେ ଉଦ୍ଧତ ।" ଗୋଟାଏ ଜିନିଷକୁ ବିଶ୍ଳେଷଣ କରି ଦେଖିବାର ଶକ୍ତି ଏ ଦେଶର ଲୋକଙ୍କ ପାଖରେ କାହିଁ ? ଏତେ କଷ୍ଟ କରି ଭିତର ଦେଖୁଛି କିଏ ? ବାହାରଟା ଦେଖିନେଇ ସମସ୍ତେ ସନ୍ତୁଷ୍ଟ । ଏଇ ତାଙ୍କର ଝିଅ ମାୟା । କେହି କଣ ତାକୁ ଚହ୍ନିଛି ? ତାଛଡ଼ା ନଇଁ ନାହିଁ ପରି କଥାରେ, ବ୍ୟବହାରରେ ଲୋକଙ୍କର ମୁହଁ ପୋଡ଼ିଯାଏ । କିନ୍ତୁ ତାଙ୍କର ମନେ ହୁଏ ସେ ନିଜେ ବଡ଼ ଭାଗ୍ୟବାନ । ଏମିତି ଝିଅ କେଇଟା ଲୋକଙ୍କର ଭାଗ୍ୟରେ ଅଛି ? ଭିତରର ନୀରବତାକୁ ଯେଉଁ ଝିଅମାନେ ଭଦ୍ରତାର ଢାଙ୍କୁଣୀରେ ଢାଙ୍କି ରଖନ୍ତି ତା' ଅପେକ୍ଷା କ'ଣ ଏହା ଯଥେଷ୍ଟ ଭଲ ନୁହେଁ ?"

ନୂଆ ହୋଇ ଆସିଥିବା ବୋହୂ, କାବେରୀ ଶାଶୁଙ୍କର ଗୋଡ଼ଧୁଆ ପାଣି ପିଇବାକୁ ଚାହୁଁଥିବା ଜାଣି ବୋହୂପଣିଆର ଏ ଦୟନୀୟ ଦିଗଟି ସମ୍ପର୍କରେ ସଚେତନ ହୋଇଉଠିଥିଲା ମାୟା । ତଥାପି କାବେରୀର ଏ ପ୍ରକାର ଆଚରଣକୁ ତା'ର ସ୍ପଷ୍ଟବାଦୀ ମନ ଗ୍ରହଣ କରିପାରି ନଥିଲା । ସେ କହି ଉଠିଲା, "ଯାଃ ଅତି ଭକ୍ତି ଚୋରର ଲକ୍ଷଣ" ଏବଂ ବୋହୂର ଜିନିଷପତ୍ର ତଦାରଖ କରୁଥିବା ସ୍ତ୍ରୀଲୋକ-

ମାନଙ୍କ ଆଗରେ ବୋଉକୁ ପାଦଧିଆ ପାଣି ପିଇବା ନେଇ ବିରକ୍ତି ପ୍ରକାଶ କରିଛି । ଯଦୁବୋଉ ମାସ୍ତ୍ରା କଥା ଶୁଣି କହିଛନ୍ତି—"ଏ ସହରବାଲୀ ଝିଅଖଣ୍ଡକୁ କୋଉଠି ବାହାକରିବୁ ମହାବୋଉ ?" ମାସ୍ତ୍ରାର ସ୍ପଷ୍ଟବାଦୀ ସ୍ୱଭାବକୁ ମେରୁଦଣ୍ଡହୀନ ଭଲ ବୋହୂର, ଭଲ ଝିଅର ସଜ୍ଞାରେ ବିଶ୍ୱାସୀ ମହିଳାସମାଜର ମାନିନେବାକୁ ସାମର୍ଥ୍ୟ ନ ଥିଲା । ମାସ୍ତ୍ରାର ଥିଲା ପୁଣି ପ୍ରଚଣ୍ଡ ରସବୋଧ । ନିଜ ଭାଉଜର ସୁନ୍ଦର ରୂପରେ ସେ ମୁଗ୍ଧ ହୋଇ ଯାଇଥିଲା ଓ ଅନ୍ୟ ଏକ ନାରୀର ସୌନ୍ଦର୍ଯ୍ୟର ପ୍ରଶଂସା କରିବାରେ ତା'ର ସାମାନ୍ୟ କୁଣ୍ଠା ନ ଥିଲା । ତେଣୁ ଭାଉଜକୁ କହିଛି "ନା, ନା ତମେ ପ୍ରକୃତରେ ସୁନ୍ଦର···ହସିଲେ ଭଲ ଦିଶ, ରୁଷିଲେ ବି ଭଲ ଦିଶ ।" ପୁଣି ସେଇ ମାସ୍ତ୍ରା ଭାଉଜର ଆଚରଣରେ ଆନ୍ତରିକତାର ଅଭାବ ଦେଖି କ୍ଷୁବ୍ଧ ହୋଇଉଠିଛି । ପହିଲିର ପାଉଡର ବୋଳା ମୁହଁକୁ ଦେଖି ଭାଉଜକୁ ଆକ୍ଷେପ କରିଛି, 'ଭାଉଜ ପହିଲି ମୁହଁରେ ଘିମିରି ଉଠିବାର ବାଟ ବନ୍ଦ କରି ଦେଇ ଆଉ ଦେହ ହାତ ଯେଉଁଠି ଘିମିରି ଉଠିଛି ସେତକ କ'ଣ ଭୁଲରେ ଛାଡ଼ିଦେଲ ?" ଘରେ ନିଜର ପୂର୍ବ ଆଦର କମିଯିବାର ଲକ୍ଷ୍ୟକରି କୂଟନୀତିର ଆଶ୍ରୟ ନେବାକୁ ବାଧ୍ୟ ହୋଇଛି । କାବେରୀ ସକାଳେ ଶାଶୁ ଶ୍ୱଶୁରଙ୍କ ପାଇଁ ରଖିଥିବା ପାଣି ଖର୍ଚ୍ଚ କରିଦେବା, ମସଲା ବାଟିବାର ରହସ୍ୟ ଫିଟାଇଦେଇ ସେ ସମସ୍ତଙ୍କ ଆଗରେ କାବେରୀ ସ୍ୱରୂପ ପଦାରେ ପକାଇ ଦେବାକୁ ଚେଷ୍ଟା କରିଛି ।

ମାସ୍ତ୍ରାର ସ୍ୱାଧୀନ ଆଚରଣ ଦେଖି କାବେରୀର ଅନୁତାପ ହୋଇଛି । ସେ ଭାବିଛି ସେ ମିଛୁଟାରେ ବାହାହେଲା । ଏଇ ମାସ୍ତ୍ରା କେତେ ସ୍ୱାଧୀନ, ଯାହା ଖୁସି କରିଦେଇ ଯାଉଛି, କେହି ପଦେ କହିବାକୁ ନାହିଁ । ମାସ୍ତ୍ରା ପରି ନଣନ୍ଦର ଜାଲା ସହୁଥିବାରୁ ସେ ନିଜକୁ ଅନ୍ୟ ବୋହୂମାନଙ୍କ ଅପେକ୍ଷା ଅଧିକ ସହିଷ୍ଣୁ ମନେ କରିଛି । କିନ୍ତୁ ସେଇ କାବେରୀ ଗାଁରୁ ଆସିଥିବା ଖୁଡ଼ି, ବଡୁବୋଉ, ମାଳଦେଇ ପ୍ରଭୃତିଙ୍କ ଆଗରେ କାଠଗଡ଼ାରେ ଠିଆହୋଇ ବୋହୂପଣିଆର ପରୀକ୍ଷା ଦେଉଥିବା ବେଳେ ଏବଂ ସେମାନଙ୍କ ପ୍ରଶ୍ନବାଣରେ ଜର୍ଜରିତ ହେଉଥିବା ସମୟରେ ମାସ୍ତ୍ରାର ସେମାନଙ୍କ ପ୍ରତି ଆକ୍ରମଣାତ୍ମକ ଉକ୍ତିରେ ରକ୍ଷା ପାଇଯାଇ ଅନୁଭବ କରିଥିଲା ଯେ ସେ ଘରକୁ ଆସିବା ପରଠାରୁ ମାସ୍ତ୍ରାକୁ ଏତେ ଭଲ ସେ ଆଗରୁ କେବେ ପାଇ ନ ଥିଲା । ଏଥିରୁ ମାସ୍ତ୍ରାର ଖେଳୁଆଡ଼ ମନୋଭାବ ବା sportsmanship ଜଣାଯାଏ ।

ମାସ୍ତ୍ରା ଚରିତ୍ରର ଦୃଢ଼ତା, ସ୍ପଷ୍ଟବାଦିତା ଅନେକ ସ୍ଥଳରେ ପ୍ରକାଶିତ ହୋଇଛି । ନିଜ ସମ୍ପର୍କରେ କୌଣସି ବାଜେ ଅଭିଯୋଗର ସଫେଇ ଦେବାକୁ ତା'ର ଆତ୍ମସମ୍ମାନ ବାଧା ଦିଏ । ଘରକୁ ରାତିରେ ଫେରିବାର ବିଳମ୍ବ ଦେଖି

କାବେରୀର ପ୍ରରୋଚନାରେ ମୋହନର ଚାଗିଦା ଶୁଣି ମାସ୍ଟାର ତୀବ୍ର ପ୍ରତକ୍ରିୟା ପ୍ରକାଶ ପାଇଛୁ । କାବେରୀ ଉଦ୍ଦେଶ୍ୟରେ କହୁଛୁ "ମଣିଷ ନିଜ ମୁହଁଟାକୁ ହିଁ ଦର୍ପଣରେ ଦେଖେ । ତମେ ବୃଦ୍ଧଆଟାକୁ ନିଜପର ଭାବୁଛ କାହିଁକି ? ସମସ୍ତେ ତମପରି ହୋଇନାହାନ୍ତି ।" ମାସ୍ଟାର ବେଖାତିର ଭାବରେ ଅପମାନିତ ହୋଇଛୁ ମୋହନ, ସ୍ତବ୍ଧ ହୋଇଛୁ କାବେରୀ । ପୀତାମ୍ବର ବାବୁ କାହାକୁ କଣ କହିବେ ଭାବିଛନ୍ତି, କାରଣ ମାସ୍ଟା ଯେଉଁ ଧରଣର ପିଲା, ତାକୁ ପ୍ରାୟ ସମସ୍ତେ ଭୁଲ ବୁଝିବେ । ତାକୁ ସେ ନିଜେ ଭଲ କରି ଚିହ୍ନିଛନ୍ତି । ତା'ଉପରେ ତାଙ୍କର ଅଗାଧ ବିଶ୍ୱାସ । ଏଥିରେ ପିତାର କନ୍ୟା ପ୍ରତି ସ୍ନେହଜନିତ ଅନ୍ଧପ୍ରତ୍ୟୟ ନୁହେଁ । ବରଂ ମଣିଷ ଚିହ୍ନିବାରେ ଦୃଢ଼ ଆତ୍ମବିଶ୍ୱାସ ପ୍ରକାଶ ପାଇଛି ।

ମାସ୍ଟାର ବାହାଘର ପ୍ରସ୍ତାବ ସବୁ ଭାଙ୍ଗିଯିବାରେ ମାସ୍ଟା ଥିଲା ମୁଖ୍ୟତଃ ଦାୟୀ । ବାହା ହେବ ନାହିଁ ବୋଲି କିଛି ନା କିଛି ଉପାୟ ବାହାର କରି ସେ ପ୍ରସ୍ତାବ ଭାଙ୍ଗିଦିଏ । କିନ୍ତୁ ଯେଉଁଦିନ ଓକିଲ-ପାତ୍ରର ବିଧବା ମା' ପାତ୍ରୀ ଦେଖିବାକୁ ଆସି ପହଞ୍ଚିଲେ, ମାସ୍ଟାର ବେଶଭୂଷା ଓ ଦୃଢ଼ ଆଚରଣ ଯାହା ଅନ୍ୟ-ମାନଙ୍କୁ ବିଦା କରିବାରେ ଅଧିପତି ସାହାଯ୍ୟ କରୁଥିଲା, ସେ ସବୁ ତାଙ୍କୁ ଭଲ ଲାଗିଲା । ସେ ଜାଣନ୍ତି ଏଗୁଡ଼ିକ ମେଘ ବରଷେ ନାହିଁ । ପ୍ରକୃତରେ ସେ କିଛି ଭୁଲ ଭାବି ନ ଥିଲେ । କଣେ କଣେ ମଣିଷଙ୍କୁ ପ୍ରଥମରୁ ଦେଖିଲେ ହଠାତ୍ ଭଲ ଲାଗେ, ଆଉ କଣ କଣଙ୍କୁ ପ୍ରଥମେ ଖରାପ ଲାଗେ । ଅଧିକାଂଶ ସ୍ଥଳରେ ଦେଖା-ଯାଏ ପ୍ରଥମ ଥର ଧାରଣା ହିଁ ଠିକ୍ । ବାହାଘର ହୋଇଯିବା ପରେ ମାସ୍ଟାର ବୋହୂଙ୍କ ମନରେ ଝିଅକୁ ନେଇ କେତେ ଉତ୍କଣ୍ଠା । ସେ କ'ଣ ସତରେ ବୋହୂ ପଣିଆ କରିବ ! ଝିଅଠାରୁ ଅନ୍ତତଃ ମୌଖିକ ପ୍ରତିଶ୍ରୁତିଟିଏ ପାଇଲେ ତାଙ୍କୁ ଶାନ୍ତି ଲାଗିଲା । ପୀତାମ୍ବର ବାବୁଙ୍କର ତାଙ୍କର ଅଲଅଳି ଝିଅ ମାସ୍ଟା ପାଇଁ ବିଦାୟ ବେଳାରେ ଥିଲା ମାତ୍ର ପଦଟିଏ କଥା—'ତୁ ମୋର ଝିଅ, ଏକଥା ଯେମିତି ଭୁଲିବୁ ନାହିଁ । ସୁନାରେ ଅଛୁ ଜାଣିଲେ ମୁଁ ମନରେ ଶାନ୍ତି ପାଇବି ।'

ଶାଶୁ ଘରେ ପହଞ୍ଚିବାର ଅଳ୍ପ ସମୟ ପରେ ମାସ୍ଟାର ଅନ୍ତର୍ଭେଦୀ ଦୃଷ୍ଟି ଅନ୍ୟମାନଙ୍କ ସମ୍ପର୍କରେ ବେଶ୍ ଏକ ଧାରଣା କରିନେଲା । ସମ୍ପୂର୍ଣ୍ଣ ଭିନ୍ନ ପରିବେଶ ଓ ଅଚିହ୍ନା ମଣିଷମାନଙ୍କ ଭିତରେ ମାସ୍ଟାର ବିଦ୍ରୋହୀ ମନ ଆହତ ଅଭିମାନରେ ଗୁମୁରି ଉଠୁଥିଲା । ବାପଘରେ ସକାଳେ ତାକୁ ନିଦରୁ ଉଠାଇବା ପାଇଁ ଭୟରେ କେହି ସାହସ କରୁଥିଲେ, ଅଥଚ ଏଠି ରାତି ଥାଉରୁ ସେ କୂଅ ମୂଳରେ ଗାଧୋଇବାକୁ ବାଧ୍ୟ । ମାସ୍ଟା ଜାଣେ ତାକୁ କେହି କେବେ କୌଣସି କଥାରେ ବାଧ୍ୟ କରି ପାରିବେ ନାହିଁ । କିନ୍ତୁ ଦୋଉର ଶୁଖିଲା ମୁହଁ, ତା'ର

ଦାଅ ପ୍ରତିଶ୍ରୁତି ଭିତରେ ତା'ର ଅନ୍ତରାତ୍ମା ଚିତ୍କାର କରୁଥିଲା 'ତୁ ମତେ ଛାରଖାର କରିଦେଲୁ, ମତେ କଣ ଚିହ୍ନି ନ ଥିଲୁ, କାହିଁକି ଏଠି ଆଣି ପୂରେଇଲୁ ? ମୁଁ ତୋର କି କ୍ଷତି କରିଥିଲି !' ଏତିକିରେ ମାୟାର ଅସୁବିଧାର ଶେଷ ହୋଇନାହିଁ । ବରଂ ପ୍ରତି ପଦେ ପଦେ ଶାଶୂଙ୍କର ଦାଆ ଅପମାନକୁ ତାକୁ ନୀରବରେ ସହ୍ୟ କରିବାକୁ ପଡ଼ିଲା । ହାତଗଣ୍ଠି ବେଳେ ଝିଙ୍କା ଦବାନବା କଥା ଶୁଣି ଯେଉଁ ଝିଅ ବେଦୀରୁ ଉଠି ଯାଉଥିଲା, ସେଇ ଝିଅ ଅତି ସାଧାରଣ କଥା କଥାରେ ଶାଶୂଙ୍କର କୁତ୍ସିତ ଇଙ୍ଗିତକୁ ସହ୍ୟ କରିଯିବା ବିଶ୍ୱାସ ହୁଏ ନାହିଁ । କିନ୍ତୁ ବାପା ବୋଉଙ୍କୁ ଦେଇଥିବା ପ୍ରତିଶ୍ରୁତିର ମୂଲ୍ୟ ଦେବା ପାଇଁ ମାୟା ପରି ଜିଭରେ ବାଡ଼ବତା ନ ଥିବା ଝିଅଟି ଜୀବନର ଅସ୍ତିତ୍ୱକୁ ମଧ୍ୟ ଭୁଲିଯାଇ ପାରିଛି, ଭାବିଲେ ତା'ର ଦୃଢ଼ ମନୋବଳର ପରିଚୟ ମିଳିଥାଏ । ତଥାପି ସେ ମଣିଷ ତ ! ଜ୍ୱର ଦେହରେ ସକାଳୁ ଉଠି ଗୁ' ନ କରି ଥିବାରୁ ଶାଶୂଙ୍କର ଗଞ୍ଜଣା ଶୁଣି ପ୍ରତିବାଦ କରିଛି ଭାଷାରେ ନୁହେଁ, ଆଚରଣରେ । ଚୁପ୍‌ଚାପ୍ ଶୋଇବା ଘରକୁ ଚାଲି ଆସିଛି । ସବୁ ଅଶାନ୍ତି ଭିତରେ ବହି ଖଣ୍ଡେ ତା'ର ପରମ ସାଥୀ । କିନ୍ତୁ ତାକୁ ସେ ପଢ଼ିବାକୁ ଶାଶୂଙ୍କର ବାରଣ ଅଛି । କାରଣ ତାଙ୍କର ଧାରଣା ବହି ପଢ଼ିଲେ କାଳେ ଘର କାମରେ ଖିଲାପ ହେବ ···କାଳେ ତାଙ୍କ ପୁଅଠାରୁ ଅଧିକ ପଢ଼ିଦେବ । କିନ୍ତୁ କାମ ନ ଥିଲେ ଚୁଲି ମୁହଁକୁ ଚାହିଁ ବସିବାକୁ ହେବ । ମାୟା ଜାଣିଥିଲା ବାପଘର ଓ ଶାଶୁଘର ଭିତରେ କେତେ ଫରକ । ରାନ୍ଧିବାକୁ ଯାଇ ହାତରେ ଫୋଟକା ହେଲେ ସେ ଆଖିରୁ ଲୁହ ଗଡ଼ାଏ ନାହିଁ । କାରଣ ସେ ଜାଣେ ଏଠି ଆଖି ଲୁହର କୌଣସି ମୂଲ୍ୟ ନାହିଁ ।

କିନ୍ତୁ ତା' ସହନପଣିଆର ଯଥାର୍ଥ ମୂଲ୍ୟ ମିଳିଥିଲା ଯେତେବେଳେ ଜଣାଶୁଣା ବନ୍ଧୁବାନ୍ଧବ ସମସ୍ତେ ମାୟାର ଘରକରଣାର ପ୍ରଶଂସା କରୁଥିଲେ ଓ ସେ ସମ୍ବାଦ ଶୁଣି ପୀତାମ୍ବର ଓ ମଥୁ ବୋଉଙ୍କର ଅନ୍ତର ପରମ ସନ୍ତୋଷରେ ପୂର୍ଣ୍ଣ ହଉଥିଲା । ସ୍ୱାଭାବିକ ଅବସ୍ଥା ଅପେକ୍ଷା ଏକ ବିଶେଷ ବା ଜଟିଳ ଅବସ୍ଥାରେ ହିଁ ମଣିଷ ଚରିତ୍ରର ପ୍ରକୃତ ସ୍ୱରୂପ ଉଦ୍‌ଘାଟିତ ହୁଏ । ସେଇ ପ୍ରକାର ଏକ ଜଟିଳ ଅବସ୍ଥା ସୃଷ୍ଟି ହୋଇଛି ମାୟାର ଜୀବନରେ । ସବୁବେଳେ ତା' ଉପରେ ଚଡ଼୍ ଚଡ଼୍ ହେଉଥିବା ଶାଶୂ ବୁଢ଼ୀ ରୋଗଗ୍ରସ୍ତ ହୋଇ ମୃତ୍ୟୁର ଆଶଙ୍କାକୁ ଦୂର କରିବା ପାଇଁ ମାୟାର ସାନ୍ନିଧ୍ୟ ପ୍ରତି ମୁହୂର୍ତ୍ତରେ ଚାହିଁଛନ୍ତି ଓ ତା'ର ଆନ୍ତରିକ ସେବା ଯତ୍ନରେ ଜଣେ ମଧ୍ୟ ତଟସ୍ଥ ହୋଇ ଭାବନ୍ତି—'ଏଇ ବୋହୂ ଯାହାକୁ ସେ ମୁହଁ ଉପରେ ପଦେ ଆଦରର କଥା କହିନାହାନ୍ତି, ସେ ପୁଣି ଏତେ ସେବା କରିବ ସେ ଭାବି ନ ଥିଲେ । 'ଶାଶୂଙ୍କ ଚିକିତ୍ସା ପାଇଁ ଅର୍ଥାଭାବ

ଜାଣିବା ପରେ ନିଜ ଗହଣା ସ୍ୱାମୀ ହାତକୁ ବିନା କୁଣ୍ଠାରେ ଟେକି ଦେଇଛି । ଶାଶୁଙ୍କ ସେବା ଓ ଘର କାମରୁ ଟିକେ ଅବସର ପାଇ ବିଶ୍ରାମ ନେବାବେଳେ ପାଇଛି ପ୍ରତାପର ଚିଠି, 'ବାପାଙ୍କର ଦେହ ବହୁତ ଖରାପ । ତତେ ଦେଖିବାକୁ ଖୋଜୁଛନ୍ତି । ବୋଉ ଖାଲି କାନ୍ଦୁଛି···' ଆଉ ଅଧିକ ପଢ଼ି ପାରିଲାନି । ମାୟାର ଆଖିରୁ ଝରିଗଲା ଲୁହର ଝରଣା । ତା' ବାପା ତାକୁ କିପରି ମୃତ୍ୟୁ ଶଯ୍ୟାରେ ଆକୁଳ ଭାବରେ ଖୋଜି ହେଉଥିବେ ଅନୁଭବ କରି ତା'ର ଅନ୍ତରାତ୍ମା ଛଟପଟ ହୋଇଉଠିଲା ଧାଇଁ ଯିବାକୁ ସେଇ ମୁହୂର୍ତ୍ତରେ । ପିତାର ମମତାଭରା ଗୋଡରେ ମଥା ରଖି ତାର କନ୍ୟା ଆତ୍ମାଟି ଏତେ ଦିନର ପୁଞ୍ଜୀଭୂତ ଅବୁଝା ଯନ୍ତ୍ରଣାକୁ ଆଖି ଲୁହରେ ଭସାଇ ଦେବାକୁ ଖୋଜୁଥିଲା ବେଳେ ତେଣେ ନିଃସ୍ୱନ ପିତୃଳ କନ୍ୟାର ସ୍ନେହ ସ୍ପର୍ଶରେ ପରମ ଶାନ୍ତିରେ ପରଲୋକ ଗମନ କରିବାକୁ ଅପେକ୍ଷା କରୁଥିଲା ପିତାର ବ୍ୟାକୁଳ ଆତ୍ମା । ସେଥିପାଇଁ ଦୁଇଟି ଅଭିନ୍ନ ଆତ୍ମା ପରସ୍ପରକୁ ଗଭୀର ଭାବରେ ଆକର୍ଷଣ କରୁଥିଲେ । କିନ୍ତୁ ମାୟା କରିବ କ'ଣ ! ଏକ ପାଖରେ ମୃତ୍ୟୁ ଶଯ୍ୟାରେ ତା'ର ଅତି ଆଦରର ବାପା, ଯେଉଁ ଗ୍ରେଟିଆ ନାମଟି ଭିତରେ ତା'ର ବାଲ୍ୟ, କୈଶୋର ଓ ପ୍ରାକ୍ ଯୌବନର ସମସ୍ତ ମମତାଭରା ମଧୁର ସ୍ମୃତି ଜଡ଼ିତ ରହିଛି ଓ ଏ ପାଖରେ ତା'ର ଶାଶୁ ଯିଏ କି ସେ ବାହା ହୋଇ ଆସିବା ପରଠାରୁ କେବଳ ଓରହାଣ୍ଡି ତାକୁ ପଦେ ପଦେ ଲାଞ୍ଛିତ ଅପମାନିତ କରିଛନ୍ତି ଅଥଚ ଆଜି ଅସହାୟ ରୁଗ୍ଣ ଅବସ୍ଥାରେ ତାକୁହିଁ ଏକମାତ୍ର ଭରସା କରି ପଡ଼ିଛନ୍ତି । ଏକ ପାଖରେ ସ୍ନେହ ମମତାର ଆକର୍ଷଣ ଅନ୍ୟ ପାଖରେ କର୍ତ୍ତବ୍ୟର ଆହ୍ୱାନ । କେଉଁ ଡୋରଟିକୁ ଛିଣ୍ଡାଇବ ସେ । ମାୟାର ଅତ୍ୟନ୍ତ ବିକଳ ମାନସିକ ଅବସ୍ଥା ଯାହା ବୁଝି ହୁଏ କିନ୍ତୁ ବୁଝାଇ ହୁଏନା । ମନେହୁଏ ଶେଷରେ ସେ ମମତାର ଡୋରଟିକୁ କାଟି ଦେଇଥିବ ଏବଂ ମନେ ମନେ ଅଭିମାନ କରି ସେଇ ବାପାଙ୍କ ଉଦ୍ଦେଶ୍ୟରେ କହିଥିବ "କ'ଣ କରିବି, କେମିତି ମୁଁ ଭୁଲିଯିବି ଯେ ମୁଁ ତୁମର ଝିଅ ବୋଲି । ମୋର ବିଶ୍ୱାସ ତୁମର ସେଇ ପଦକ କଥା ଭୁଲିନାହିଁ ବୋଲି ହିଁ ତୃପ୍ତିରେ ତୁମେ ଆଖି ବୁଜିବ ।"

ସଚ୍ଚୋଜିନୀ—ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ 'ଦାନା ପାଣି'ର ନାୟିକା ସରୋଜିନୀ । ସ୍ୱାମୀ ବଳୀଦତ୍ତର ଦାନା ପାଣିର ପଶା ପାଲିରେ ବ୍ୟବହୃତ ହୋଇଥିବା ଗୋଟି ସରୋଜିନୀ କ୍ରମେ ପରିଣତ ହୋଇଛି ରାଣୀ ମହୁମାଛିରେ, ଯାହା ଚାରି ପାଖରେ ଅନେକ ଭିଡ଼···ଅନେକ ଗୁଞ୍ଜନ, ତା'ର ମନ ପାଇବା ପାଇଁ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା ।

କିରଣୀ ବଳୀଦତ୍ତର ନବ ବିବାହିତା ପତ୍ନୀ ସରୋଜିନୀ । ଉଚ୍ଚତାରେ ସେ ସ୍ୱାମୀଠୁଁ ଚାରି ଆଙ୍ଗୁଳ ବେଶି, ସ୍ୱାସ୍ଥ୍ୟରେ ସେ ଡଉଲ ଡାଉଲ, ସ୍ୱାମୀର ଧାର ମୁହଁକୁ ତାର ବଡ଼ ଗୋଲ ମୁହଁ, ବଡ଼ ବଡ଼ ଦାନ୍ତ । ନିଜ ବିଷୟରେ ତା'ର ଧାରଣା—ତା'ର ସବୁ ବଡ଼ ବଡ଼ । ଶାରୀରିକ ସ୍ତରରେ ସ୍ୱାମୀ ସହିତ ଯେପରି ଅମେଳ ମାନସିକ ସ୍ତରରେ ତା'ଠାରୁ ବହୁତ ବେଶି । ଦାନାପାଣିର ସନ୍ଧାନ ଓ ତହିଁରେ ଜୟୀ ହେବାର ଅଭିଳାଷ ନେଇ ସଦାସର୍ବଦା ଚିନ୍ତିତ ବଳୀଦତ୍ତ । କିନ୍ତୁ ସେଥିଲାଗି ସରୋଜିନୀର କୌଣସି ଉଦ୍‌ବେଗ, ଉତ୍କଣ୍ଠା ବା ଦୁଶ୍ଚିନ୍ତା ନାହିଁ । ତା' ଭିତରେ ଅଛି କେବଳ ଏକ ଯୁବତୀ ନାରୀର ସେଇ ଆଦିମ କ୍ଷୁଧା—ଯାହାର ଅପରିତୃପ୍ତିରେ ତା' ମନରେ ଦେହରେ ପ୍ରଚଣ୍ଡ ଅସ୍ଥିରତା । ନିଜ ଅଜାଣତରେ ପଡ଼ୋଶୀ ଘର ଝରକା ଆରପଟେ ବ୍ୟାୟାମରତ କଲେଜ ଛାତ୍ର ପ୍ରତି ତା'ର ଦୃଷ୍ଟି ଆପେ ଆପେ ଆକର୍ଷିତ ହୋଇଯାଏ । ସ୍ୱାମୀକୁ ତୁଷ୍ଟ କରିବାକୁ ନିଜକୁ ଅଜାଡ଼ିଦିଏ କିନ୍ତୁ ନିଜେ ତୁଷ୍ଟ ହୋଇପାରେନା । ଯୌନ ମିଳନର ଅତୃପ୍ତି ତା' ମନରେ ଭରିଦିଏ ଅଶାନ୍ତି—"ଦିନଯାକର କାମର କ୍ଳାନ୍ତି ଓ ସନ୍ତ୍ରର ଭବିଷ୍ୟତ ଯୋଜନାରେ ବଳୀଦତ୍ତ ଯେତେବେଳେ ସୁଖରେ ଶୋଇ ଘୁଙ୍ଗୁଡ଼ି ମାରୁଥାଏ ସରୋଜିନୀ ନାଗୁଣୀ ପରି ସଁ ସଁ ଦୀର୍ଘଶ୍ୱାସ ମାରୁଥାଏ, ଛଟପଟ ହେଉଥାଏ, ବାରମ୍ବାର ଉଠିପଡ଼ି ହଲଚଲ ହୁଏ, ସୁଷୁପ୍ତ ସ୍ୱାମୀ ଆଡ଼କୁ ଚାହିଁଲା ବେଳକୁ ତା' ମନରେ ନଥାଏ ଜକ୍ ଜକ୍ ପିତଳର ପତ୍ନ ପରମ-ଗୁରୁ ବ୍ରତର ଗୁଇ । ଗୋଲମାଳିଆ ଆଉଟା ମନରୁ କଟକଟ ଆଖିବାଟେ ଝରିପଡେ ବିଷାକ୍ତ ହିଂସ୍ରକ ଦୃଷ୍ଟି । ମନରେ ମେଘଗୁଡ଼ଲେ, ଦେହରେ ନଦୀ ହୁଏ । ସକାଳକୁ ପୁଣି ସେ ହସି ହସି ଘରକରଣାକୁ ଆଶାୟୀ ହୋଇ ପରଖେ ।" ସେଇ ସ୍ୱାମୀ କିନ୍ତୁ ତାର ସହକର୍ମୀ ଏଙ୍କଟରାଓ ସ୍ତ୍ରୀର ଘରକରଣା, ବେଶଭୂଷା ଓ ଚାଲିଚଳଣ ସମ୍ପର୍କରେ ଯେତେବେଳେ ପ୍ରଶଂସା କରେ ସରୋଜିନୀର ଈର୍ଷା ହୁଏ, ସ୍ୱାମୀ ମୁହଁରେ ଅନ୍ୟ ସ୍ତ୍ରୀର ପ୍ରଶଂସା ସେ ସହିପାରେନା ।

ଯେଉଁଦିନ ଅଫିସର ମହାପାତ୍ର ବଳୀଦତ୍ତ ଆସିବା ପୂର୍ବରୁ ତା' ଘରକୁ ଆସିଛନ୍ତି ଓ ପାଣି ଗ୍ଲାସେ ପିଇଯାଇଛନ୍ତି, ତାଙ୍କର କଥା ଓ ଢଙ୍ଗରଙ୍ଗରୁ ସରୋଜିନୀ ବୁଝିଛି ସେ ଗୋଟିଏ ଅଶାନ୍ତ ପୁରୁଷର ଛବି, ଦୁଃଖୀ, ଦରିଦ୍ର, ପିପାସୁ । ପୁରୁଷର ଏଇ ଅଭାବବୋଧ ବୁଝିବା ପାଇଁ ନାରୀମନର ସୂକ୍ଷ୍ମ ଅନୁଭୂତି ହିଁ ଯଥେଷ୍ଟ । ସରୋଜିନୀ ମନରେ ଭାବାନ୍ତର ସୃଷ୍ଟି ହୋଇଛି । ଘର ଓଳାଇବା, ଜିନିଷପତ୍ର ସଜାଡ଼ି ରଖିବା, ଖେଇଖେଇ କରିବା ଓ ସ୍ୱାମୀର ଫେରିବା ବାଟକୁ ଚାହିଁରହିବାର ଯନ୍ତ୍ରବତ କାମ ଭିତରେ ସେ କ୍ରମଶଃ ଅଶାନ୍ତ ହୋଇଉଠିଛି ।

ଭୁମାଗ୍ରୀ ଜୀବନର ସ୍ୱପ୍ନ ତା'ର ରୂପ ନେଇ ପାରନ୍ତ । ବଳୀଦତ୍ତର ହାବଭାବ ତା'ର ପ୍ୟାଣ୍ଟକୋଟ ଓ ତା'ର ପ୍ରମୋସନର ବଡ଼ିମା ତା'ର ଯୁବତୀ ମନର ଆକାଂକ୍ଷାକୁ କୌଣସି ପ୍ରକାରେ ମେଣ୍ଟାଇ ପାରନ୍ତ । ମୁଣ୍ଡରେ ଜକ୍‌ଜକ ସୁନ୍ଦର ଟୋପା, ହାତରେ ଝଡ଼ୁ, ଜଗତର କାଚ ବଜର ହେଉ ଆଶୀର୍ବାଦ ଓ କାନ୍ଧ ଉପରେ ପଡ଼ପରମଗୁଛୁର ବ୍ରୁଚ ଲଗାଇ ସରୋଜିନୀ ଅଜଣା ଦୁଃଖରେ ସକେଇ ସକେଇ କାନ୍ଦେ ।

ଅଫିସର ହେବାପରେ ବଳୀଦତ୍ତ ନୂଆ କ୍ୱାଟରକୁ ଆସିଛି । ସେଠି ସିଅନ ନିତାଇର ମା' ଡାକ ଶୁଣି ସରୋଜିନୀ ଭାବିଲା ପ୍ରଥମକରି କେହି ତା' ପାଖରେ ଆତ୍ମସମର୍ପଣ କରୁଛି । ଅନନୁଭୂତ ମାତୃତ୍ୱରେ ପୂରିଉଠିଛି ତା'ର ମନ, ମୁହଁ ଉଜ୍ଜ୍ୱଳ ହୋଇଉଠିଛି । ଅଫିସର ବଳୀଦତ୍ତଙ୍କୁ ସାକ୍ଷାତ କରିବାପାଇଁ ଆସିଛନ୍ତି ତା'ର ଅଫିସର ଆଉ ଜଣେ ଉପରିସ୍ଥ ରଣଜିତ । ବାମ ହାତରେ ଟେନିସ୍‌ବ୍ୟାଟ ଧରି ସୁପୁରୁଷ ରଣଜିତବାବୁ ବଳୀଦତ୍ତ ଘରେ ବସି ଚା' ପିଇଛନ୍ତି । ଆତ୍ମୀୟତା କରିଛନ୍ତି ଓ ନିଜ ଘରକୁ ବଳୀଦତ୍ତ ଓ ସରୋଜିନୀଙ୍କୁ ଆସିବାପାଇଁ ନିମନ୍ତ୍ରଣ ଜଣାଇଛନ୍ତି । ସରୋଜିନୀ ମୁଗ୍ଧ ହୋଇଛି । ସେ ଜାଣେ ନାହିଁ ମଣିଷର ପ୍ରଥମବୃତ୍ତି ଆଦିମବୃତ୍ତି ଶିକାର । ସରୋଜିନୀ ତା' ଅଜଣାତରେ ଟାଣି ହୋଇଯାଇଛି ଶିକାରୀ ପାଖକୁ । ବଳୀଦତ୍ତ ସ୍ତ୍ରୀକୁ ବୁଝାଇଛି ତା'ର ବଦଳିବା ଦରକାର । ଦାନାପାଣିର ସିଡ଼ି ପାହାଚରେ ଉପରକୁ ଉଠିବା ପାଇଁ ତା' ସହିତ ସରୋଜର ମଧ୍ୟ ପରିଶ୍ରମ ଦରକାର । ସହଧର୍ମୀ କେନାର ଝିଅ ଶ୍ରୁତ୍ରାଙ୍ଗିନୀର ନାଚ ଓ ପ୍ରାଚୀ କୋଣାର୍କ ବୁଲିବାର ଉଦାହରଣ ଦେଇ ଉପରିସ୍ଥଙ୍କୁ ପ୍ଲିକ୍ କରିବାରେ ସ୍ତ୍ରୀ କିପରି ଏକ ଆୟୁଧ ହୋଇପାରେ ତା'ର ସୂଚନା ଦେଇଛି । ସେଥିପାଇଁ ନିଜକୁ ପ୍ରସ୍ତୁତ କରିବାକୁ ହେବ ଏବଂ ସେ ପ୍ରସ୍ତୁତ ହେଉଛି ଆଧୁନିକ ଧରଣର କିଛି ଆଦାବକାଯ୍‌ଦା ଓ କିଛି ଇଂରେଜୀ ପଢ଼ା । ସରୋଜିନୀ ଖୁବ୍ ଶୀଘ୍ର ଏସବୁ ଆୟତ୍ତ କରିନେଇଛି । ସ୍ୱଳ୍ପ ଶିକ୍ଷିତା ଗ୍ରାମ୍ୟଯୁବତୀ ସରୋଜିନୀ ଆଧୁନିକା ନାରୀ ସରୋଜରେ ବଦଳି ଯାଇଛି, କିନ୍ତୁ ତା' ସହିତ ସମତାଳରେ ବଦଳି ପାରିନି ବଳୀଦତ୍ତ । ତା'ର ମନେ ହୋଇଛି, "ଦର୍‌ଫୁଟା ପଦ୍ମ ଫୁଲଟି ପରି, ଓଠରେ ହାଲ ହାଲ ହସକୁଆ, କଥାରେ କଥାଯୋଖି ରହସ୍ୟ କରେ, ହଲଉଛି ଦର୍‌ହଫୁଟା ପଦ୍ମଫୁଲ । ଚହଲା ପାଣିରେ ନିଜ ଛାଇ ଦେଖି ଛଇରେ ଫୁଲେଇ ହେଉଛି । ଆଉ କିଏ ସେ,—ଉବୁଟୁବୁ ଡଙ୍ଗାରେ ଚଢ଼ି ପଦ୍ମତୋଳାଳି ଯେତେଥର ନାଆପେଲି ହାତ ବଢ଼େଇଛି ସେତେଥର ହାତ-ପାହାନ୍ତକୁ ଅଳ୍ପ ଦୂରକୁ ରହି ପଦ୍ମଫୁଲ ମୁଣ୍ଡ ଟୁଙ୍ଗାରୁଛି ।" କିନ୍ତୁ ବଳୀଦତ୍ତର

ତଥାପି ଚେଷ୍ଟା ପଣ୍ଡିତ । ହୁଏତ ଜାଣିଶୁଣି ନ ଜାଣିବା ପରି ରହିଛନ୍ତି ଉପରକୁ ଚଢ଼ିବାର ଅଦ୍ଭୁତ ନିଶାରେ ।

ରଣଜିତ ବାବୁଙ୍କର ଉଚ୍ଚାଧୁନିକା ଭଉଣୀ ମିଲ୍‌ର ସାହଚର୍ଯ୍ୟରେ ସରୋଜିନୀ ମଧ୍ୟ ସେହି ପ୍ରକାର ଜୀବନକୁ ଅନାୟାସରେ ଗ୍ରହଣ କରି ନେଇଛି । ବିଭିନ୍ନ ମହିଳା ସଙ୍ଗଠନର ନେତୃତ୍ୱ ନେଇଛି, ବସ୍ତିରେ ସ୍ୱାସ୍ଥ୍ୟରକ୍ଷା କାର୍ଯ୍ୟକ୍ରମ ପାଇଁ ଚାନ୍ଦା ସଂଗ୍ରହ କରୁଛି, ତାର କାର୍ଯ୍ୟକ୍ଷେତ୍ରର ପରିଧି ବହୁତ ବଢ଼ିଯାଇଛି । ଘର ପାଇଁ ଆଉ ସମୟ ପାଉନି । ତା'ର ଚାନ୍ଦା ଓ ସାଙ୍ଗଠନିକ କାର୍ଯ୍ୟକ୍ରମପ୍ରତି ବଳୀଦତ୍ତ କୌଣସି ପ୍ରକାର ଆଗ୍ରହ ପ୍ରକାଶ କରନ୍ତି, ବରଂ ଏତେ ଶୀଘ୍ର ସରୋଜିନୀ ଏତେ ଉପରକୁ ଉଠିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଛନ୍ତି,—"ସତରେ କହନ୍ତି ମାଇକିନିଆ ଝିଅ ବଡ଼ ଅଦ୍ଭୁତ ।" ସରୋଜିନୀ ବିରକ୍ତ ହୋଇଛି । ବଳୀଦତ୍ତ ପ୍ରତି ଅବଜ୍ଞା ଭାବରେ ମନେକରୁଛି "ଲୋକଟା ତାର ଦୟା ପାଇବାକୁ ବି ଅଧମ ।'

ରଣଜିତ ବାବୁଙ୍କ ସହ ମିଳାମିଶା କରିବାକୁ ପ୍ରଥମରୁ ସରୋଜିନୀକୁ ବଳୀଦତ୍ତ ନିଜ ସ୍ୱାର୍ଥ ହାସଲ ଲାଗି ଉତ୍ସାହିତ କରିଛି । ତା'ପରେ ଶେଷ ହୋଇ ଯାଇଛି ବଳୀଦତ୍ତର ଭୂମିକା । ରଣଜିତଙ୍କୁ ଶିକାର କରିବାକୁ କଷ୍ଟ ହୋଇନି । ସରୋଜିନୀର ଆକାଂକ୍ଷା ଅପୂର୍ଣ୍ଣ ରହିନି । ତା'ପରେ ଆସିଛନ୍ତି କମ୍ପାନୀର ସବୁଠାରୁ ବଡ଼ ଅଫିସର ମିଷ୍ଟର ଶର୍ମା; ଯାହାଙ୍କର କଲମର ଗୋଟିଏ ଗାର ଉପରେ ନିର୍ଭର କରେ ତାଙ୍କର ଅଧସ୍ତନ କର୍ମଚାରୀଙ୍କର ସମସ୍ତ ସୁଖ ସୌଭାଗ୍ୟ ଏବଂ ସେଇ ସୌଭାଗ୍ୟର ପଛରେ ମୋହଗ୍ରସ୍ତ ହୋଇଛୁଟୁଥିବା ବଳୀଦତ୍ତ ପାଇଁ ଆସିଛି ସୁବର୍ଣ୍ଣ ସୁଯୋଗ । ପତ୍ନୀ ଜରିଆରେ ଉପରିସ୍ଥଙ୍କୁ ଆୟତ୍ତ କରିବାର କୌଶଳ ସଫଳତାର ସହ ଉପଯୋଗ କରିଛି । ଶର୍ମା ସରୋଜିନୀର ନିକଟେଇ ଆସିଛନ୍ତି । ଦୂରକୁ ଘୁଞ୍ଚିଯିବାକୁ ବାଧ୍ୟ ହୋଇଛନ୍ତି ରଣଜିତ୍ ବାବୁ । ଗ୍ରୀଉନେଇଟା ବେଳେ ଟେନିସ୍ କୋର୍ଟରେ ଗୋଟେ ପାଖେ ଶର୍ମା ଓ ସରୋଜିନୀ, ଅପରପକ୍ଷରେ ରଣଜିତ୍ ଓ ଶ୍ୟାମବାବୁ । ରଣଜିତ୍ ବାଧ୍ୟ ହୋଇ ଖେଳୁଥିଲେ ମଧ୍ୟ ଈର୍ଷାରେ ଜଳିଯାଉ-ଥିଲେ । ସରୋଜିନୀ ସହିତ ଆଉ କାହାର ଘନିଷ୍ଠତାକୁ ସେ ବରଦାସ୍ତ କରିପାରୁ ନଥିଲେ ।

ଦିନେ ରାତିରେ ସକଲତ୍ରିଓ୍ୱାଲଙ୍କ ଘରେ ଗୋଟିଏ ନାମୀ ସମାଜ ଭୋଜିର ଆୟୋଜନରେ ଅତି ଯତ୍ନରେ ପରିପାଟି କରି ବେଶ ହୋଇ ଆସିଥିଲା ସରୋଜିନୀ, ସାଥିରେ ବଳୀଦତ୍ତ । କିନ୍ତୁ ଭୋଜିରେ ମନ ଲାଗୁନି...ଶର୍ମା, ରଣଜିତ୍ କେହି ନାହାନ୍ତି । ତା'ର ମୂଲ୍ୟ ବଢ଼ାଇବାକୁ ଆଉ କାହାର ଆଗ୍ରହ ନାହିଁ । ଏକ

( ୨ )

ଅଜଣା ଆତଙ୍କରେ ଗୁଡ଼ି ଭିତରଟା ତା'ର ଥରିଉଠୁଛି । ମନ ଉଡ଼ିଯାଉଛି ମୃତ୍ୟୁର ଦୁନିଆକୁ । ବାରମ୍ବାର ସେ ଫେରି ଆସୁଛି, ନିଜକୁ ପ୍ରତ୍ୟୟ ଦେଇଛି··· ସବୁ ଠିକ୍ ଅଛି । ସ୍ବରଆଡ଼େ ଜୀବନ; ମୃତ୍ୟୁ କାହିଁ ? ତା'ର ମନେ ପଡ଼ିଲା ଶର୍ମା ଓ ରଣଜିତ୍ ଦୁହେଁ ଯାଇଛନ୍ତି ଶିକାରକୁ···ହୁଏତ କେବଳ ତାର ମନୋରଞ୍ଜନ ପାଇଁ, ତାକୁ ନିଜ ନିଜର ବାହାଦୁରି ଦେଖେଇବା ପାଇଁ । ସରୋଜିନୀ ପୁରୁଷ ଜାତିର ବିଚାର କରୁଛି । ଏକାଧିକ ପୁରୁଷର ଘନିଷ୍ଠ ସଂପର୍କରେ ଆସିଥିବା ସରୋଜିନୀ ନିଜର ଅଭିଜ୍ଞତାରୁ କଳୁଛି ସେମାନଙ୍କର ବଳ କୌଶଳ । ତା'ର ମନେହେଉଛି ଏ ପୁରୁଷଜାତି, ସମସ୍ତେ ସମାନ । ପିଲାଦିନର ସେମାନଙ୍କର ମା' ସଂସ୍କାର ଆଉ ମନରୁ ମେଣ୍ଟେ ନାହିଁ, ସ୍ତ୍ରୀଲୋକ ଦେଖିଲେ ମନେ ପଡ଼ିଯାଏ । "ପୁରୁଷ ପିଲା ପୁରୁଷ ହୁଏ ନାହିଁ । ହୁଏ ସ୍ତ୍ରୀ ଲୋକର କାନରେ ବନ୍ଧା ଖେଳନା କଣ୍ଢେଇ, ଯେତେ ବାଉଁଶଫୁରୁସି କାଟିଲେ ସୁଦ୍ଧା ଭ୍ରମର ବଳ ଜାଣେ କୁହନ୍ତି ।" ସରୋଜିନୀର ମନେ ହୋଇଛି ପୁରୁଷକୁ ନ ଜାଣିଥିବା ଯାଏ ତା' ସଂପର୍କରେ କିଛି ହେଲେ କୌତୂହଳ ଥାଏ, ଚିହ୍ନିଲେ ଜଣାଯାଏ ସମସ୍ତେ ଏକା ପରି, କୌଣସି ବ୍ୟତିକ୍ରମ ନାହିଁ, ବୈଚିତ୍ର୍ୟ ନାହିଁ । ମନ ଖିଆଲରେ ସେମାନଙ୍କୁ ଖେଳେଇ ହୁଏ । ସେଥିରେ ବାହାଦୁରି ନାହିଁ, ବାହା ଟେକିଦେଲେ ତାଙ୍କର ଆଖିରେ ବନ୍ଧନ ଲଗାଇ ହୁଏ, ଗୌରବ ନାହିଁ, ଖାଲି ଜ୍ବାଳା ।"

ସରୋଜିନୀର ଭାବାନ୍ତର ହୁଏ । କାହିଁକି ତେବେ ଏ ଖେଳ ସେ ଖେଳି-ଚାଲିଛି, ଯେଉଁଥିରେ କେବଳ ଜ୍ବାଳା । ବିଗତ ଦିନର ସରଳ ସତେଜ ଗାଉଁଲି ସରୋଜିନୀ ତା'ଭିତରେ ଚେଇଁ ଉଠିଛି. ଯିଏକି ଦରିଦ୍ରତା ଭିତରେ ବି ପାଇଥିଲା ବଞ୍ଚିବାର ପଡ଼୍ ସୁବାସ । ସବୁ ମନେ ହେଉଛି ଫାଙ୍କା, ଅର୍ଥହୀନ; ସେ ଚାଲିଯାଇ ପାରୁନି କାହିଁକି ! ସାମାଜିକ ଅନୁଷ୍ଠାନରେ ତାକୁ ବସିବାକୁ ହେଉଛି କଣ୍ଢେଇଟିଏ ପରି, ଚାଲିଯିବାର ଉପାୟ ନାହିଁ । ସାମାଜିକତା ରକ୍ଷା କରିବାକୁ ବାଧ୍ୟ ।

ଶିକାରରୁ ଫେରିଛନ୍ତି ସମସ୍ତେ । ବ୍ୟସ୍ତ ବିବ୍ରତ । ସାଙ୍ଗରେ, ଗୁଳିମାଡ଼ରେ ଶର୍ମାଙ୍କ ରକ୍ତାକ୍ତ ଶରୀର । ରଣଜିତ୍ କହୁଛନ୍ତି ଗୁଳିବାଜିବା ଥିଲା ସଂପୂର୍ଣ୍ଣ ଆକସ୍ମିକ । ଶର୍ମାଙ୍କର ଅଚେତନ ଶରୀର ଭିତରେ ସାମାନ୍ୟ ପ୍ରାଣସ୍ପନ୍ଦନ, ସେ ବକବକାଉ ଥିଲେ । "କହିଦେବ ବଳୀଦତ୍ତ ଦାସଙ୍କୁ, ମୁଁ ଭୁଲି ନାହିଁ, ଲେଖି ଦେଇଛି ତାଙ୍କ ପାଇଁ । ମୋର ଲେଖାରେ ସେ କମ୍ପାନୀର ବଡ଼ ସାହେବ ହେବେ, ମୋର ଲେଖାରେ ତାଙ୍କର ପ୍ରମୋସନ । କହିବନା ? ଫେରି ତୁମେ ଆସିବ ନିଶ୍ଚୟ ।" ସରୋଜିନୀର ଦେହ ଦାନ ବଳୀଦତ୍ତର ପ୍ରମୋସନର କାରଣ ହୋଇଛି । ସରୋଜିନୀ ବୁଝିଛି ଶର୍ମାର ମୃତ୍ୟୁକାରଣ କ'ଣ ହେଇପାରେ, ତା'ର ମନେହୋଇଛି

ସମସ୍ତେ ଯେପରି ବୁଝିଯାଇଛନ୍ତି ସେ ରହସ୍ୟ, ସେଥିପାଇଁ ତାର ଘର ଆଡକୁ ଏତେ ଚୂଲ ଚୂଲ ଚାହୁଁଛନ୍ତି । ନିଜ ସପକ୍ଷରେ ଯୁକ୍ତି ପ୍ରସ୍ତୁତ କରୁଛି···କିନ୍ତୁ ଜୀବନଟା ବେଳକୁ ବେଳ ମନେହେଉଛି ଜ୍ୱଳାଜ୍ୱଳ ନରକ ଯନ୍ତ୍ରଣା ।

କିନ୍ତୁ ଯେଉଁଦିନ ସେ ଅନୁଭବ କଲା ଯେ ତା'ଭିତରେ ଖଣ୍ଡ ଖଣ୍ଡ ସ୍ୱପ୍ନ-ସବୁ ଏକାଠି ହୋଇ ବାସ୍ତବରୂପ ନେଇଛି, ସେଇଦିନ ଜୀବନ ପ୍ରତି ଓ ଜଗତ ପ୍ରତି ତା'ର ସମସ୍ତ ତିକ୍ତତା ବଦଳିଯାଇଛି ଅମୃତତ୍ୱରେ । ସେ ଅନୁଭବ କରୁଛି ଯେ ଏକ ସୃଜନମୟୀ ନାରୀ । ସୃଜନକ୍ଷମତାରେ ସେ ଗରୀୟସୀ । ଆପଣାକୁ ନେଇ ସେ ପରିପୂର୍ଣ୍ଣା ହୋଇଉଠିଛି । ତା' ଜୀବନରେ ଆଉ କାହାର ଆବଶ୍ୟକତା ନାହିଁ । "ଆଜି ଶାମୁକାରେ କାହାଣୀ ସ୍ୱାଇଜର ବର୍ଷାବିନ୍ଦୁ ପଡ଼ିଛି, ଶାମୁକା ଗୁକ ହୋଇଛି । କେତେ ମେଘ ଆସିଛନ୍ତି, କେତେ ମେଘ ଗାଲିଛନ୍ତି, ଯାଇଛନ୍ତି, କି ଯାଏ ତାର ?' ଶର୍ମା, ରଣଜିତ୍ ଆହୁରି କେତେ କ୍ରମଶଃ ଅସ୍ପଷ୍ଟ ହେଇଯାଉଛନ୍ତି ତା' ଆଖିରେ, ମନରେ । ଅନ୍ତରରେ ଅନୁଶୋଚନା ନାହିଁ, ଦ୍ୱିଧା ନାହିଁ । ଗର୍ଭାଧାନର ଆନନ୍ଦରେ ମାଟି ପରିଚୟ ଲୋଡେ ନାହିଁ....ସର୍ବେଶ୍ୱରୀ ନିଜ ଭିତରେ ନିଜେ ପରିପୂର୍ଣ୍ଣ ହୋଇଉଠିଛି । ତା ଭିତରେ ମୁଣ୍ଡ ଟେକିଛି ଏକ ନୂତନ ବ୍ୟକ୍ତିତ୍ୱ ।

ଶର୍ମାଙ୍କର ଗାଡ଼ି କିଣିଛି ବଳୀଦଉ ଦାସ । ସର୍ବେଶ୍ୱରୀ ବହୁବାର ଆଗରୁ ବସିଥିବା ସେଇ ଗାଡ଼ିର କୋମଳ ଆରାମଦାୟକ ପଛସିଟ୍‌ରେ ଆଉଜି ବସିଛି । ଗାଡ଼ି ଗଡ଼ି ଚାଲିଛି ଆଗକୁ ଆଗକୁ । ଶର୍ମାର ମୃତ୍ୟୁ ଓ ରଣଜିତ୍‌ର ଚାଲିଯିବା ପରେ ସର୍ବେଶ୍ୱରୀର ବେଳେ ବେଳେ ମନେହେଉଥିଲା ସବୁ ଯେପରି ସରିଯାଇଛି । କିନ୍ତୁ ହଠାତ୍ ସେ ସଚେତନ ହୋଇଉଠିଛି ନିଜ ସମ୍ପର୍କରେ, "ଭୋଗର ଉପକରଣ ଏହି ସାରା ଦୁନିଆଁ, ଅଥଚ ଭୋଗ ଦକ୍ଷତା କେବଳ ନିଜଠି । ତେଣୁ ଶର୍ମା ଯାଉ, ରଣଜିତ୍ ଯାଉ, ଜମିଉର ଇନ୍ଧନ ଯୋଗୁ ବସୁଧା ପୂର୍ଣ୍ଣଥିବ ସବୁବେଳେ ଯେତେକାଳ ନିଜେ ସେ ଥିବ ଅଗ୍ନିସମା ।" ଭିତରେ ଜମାଟ ବାନ୍ଧି-ଆସୁଥିବା ଜଡ଼ତାର ସ୍ତରଗୁଡ଼ିକ ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିଛି । ସର୍ବେଶ୍ୱରୀ ଅନୁଭବ କରୁଛି ସ୍ୱାଧୀନତାର ଏକ ଅନନ୍ୟ ସ୍ୱାଦ । ବଳୀଦଉ ତାର ବଂଶ-ରକ୍ଷାକାରିଣୀ ଭାବରେ ସର୍ବେଶ୍ୱରୀର ସମସ୍ତପ୍ରକାର ଯତ୍ନ ଓ ଅଫିସ୍‌ର କର୍ତ୍ତ୍ରୀ ଭାବରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇବା ବେଳେ ସର୍ବେଶ୍ୱରୀ ପୁଣି ସେହି ସ୍ୱାଧୀନତାର ସ୍ୱାଦ ଚାଖିବା ପାଇଁ ରଣଜିତ୍ ସାଙ୍ଗରେ ବାହାରକୁ ଚାଲିଯାଇଛି ।

ଗାଁର ସ୍ୱଳ୍ପ ଶିକ୍ଷିତା ସରୋଜିନୀ କୁମାରୀ ମନର କେତେ ସ୍ୱପ୍ନ ନେଇ ଆସିଥିଲି ବଳୀଦତ୍ତର ସ୍ତ୍ରୀ ହୋଇ, କିନ୍ତୁ ସେ ସ୍ୱପ୍ନ, ସେ ଆକାଂକ୍ଷା ପୂରଣ କରିବାର ସାମର୍ଥ୍ୟ ନ ଥିଲି ବଳୀଦତ୍ତର । ଯୌନ ମିଳନର ଅସନ୍ତୋଷ ନାରୀପୁରୁଷ ଉଭୟଙ୍କୁ ବିଚଳିତ କରେ । ନିଜର କାମନା ପୂରଣ ପାଇଁ ଅନ୍ୟ ପଥ ଖୋଜିବୁଲନ୍ତି ଉଭୟେ । ଏମିତି ଖୋଜି ବୁଲୁଥିବା ନାରୀ ସରୋଜିନୀ ନିକଟକୁ ପଥସବୁ ଆପେ ଆପେ ଲମ୍ବି ଆସିଛି । 'ଦାନାପାଣି'ର ସିଡ଼ିଚଢ଼ା ନିଶାରେ ସ୍ୱାମୀ ବଳୀଦତ୍ତ ସେ ପଥସବୁ ପରିଷ୍କାର କରି ସ୍ତ୍ରୀକୁ ଆଗେଇ ଯିବାର ସୁବିଧା କରିଦେଇଛି । ଥରେ ସେ ପଥରେ ପାଦରଖିବା ପରେ ସରୋଜିନୀ ଓରଫ୍ ସରୋଜ ଆଉ ପଛକୁ ଫେରିବାର ଅବସର ପାଇନି···ଯେତେ ଯେତେ ଆଗକୁ ଗଲେ ବି ସେ ପଥ ସରିବାର ନୁହେଁ । ଏଇ ପଥଚାଲିବାର ଆଦିମ-ନିଶାରେ ସରୋଜିନୀ ଅନେକ କିଛି ଛାଡ଼ିଯାଇଛି ପଥଧାରରେ ।

ପୂର୍ବକଥିତ ମୌଳିକ ସତ୍ତ୍ୱରେ ଏହି ପ୍ରତ୍ୟେକ ନାରୀଚରିତ୍ର ଅନ୍ତରଙ୍ଗ ଓ ବହିରଙ୍ଗ ଭଙ୍ଗୀରୁ ମନୋହାରୀ । ନାନ୍ଦନିକ ଦୃଷ୍ଟିରୁ ପ୍ରତ୍ୟେକଟିର ବିନୋଦନ-ବିଳାସ ରହିଛି । ଅନ୍ୟ ପକ୍ଷରେ ଶିକ୍ଷଣୀୟ ବିଷୟର ବିଚାର କଲେ ଦେଖାଯିବ ଯେ ଏହାର କୌଣସି ନିର୍ଦ୍ଦେଶ ବା ସ୍ପଷ୍ଟ ଅଭିବ୍ୟକ୍ତି ନାହିଁ । କିନ୍ତୁ ଲକ୍ଷଣା କିମ୍ବା ବ୍ୟଞ୍ଜନାଧର୍ମରୁ ନିର୍ଣ୍ଣିତ ତାହା ହୋଇପାରେ ଏବଂ ଏହି ନିର୍ଣ୍ଣୟ ପାଠକର ହୃଦୟରେ ସ୍ୱତଃ ଅଙ୍କିତ ହୁଏ । ଅନ୍ୟଥା ଏ ଅଙ୍କନ ସମ୍ପର୍କରେ ଆର୍ଟିଷ୍ଟ ପାବ୍‌ଲୋ ପିକାଶୋଙ୍କ ସହାୟକ ବିବେଚନା କଳାଗତ ଅନୁଭବରୁ ଯଥାର୍ଥ ମନେହୁଏ "Art is a lie that makes us realize truth, at least the truth that is given us to understand. The artist must know the manner whereby to convince others of the truthfulness of his lies."

ପିକାଶୋଙ୍କ ବକ୍ତବ୍ୟ ଯେ—କଳା ହେଉଛି ଏକ ମିଥ୍ୟା, ଯାହା ମାଧ୍ୟମରେ ଆମେ ସତ୍ୟକୁ ଉପଲବ୍ଧି କରିପାରୁ । କଳାକାର ବା ସାହିତ୍ୟିକ ଏପରି କୁଶଳୀ ହେବା ଆବଶ୍ୟକ ଯେଉଁଥିରେ କି ସେମାନଙ୍କର ଉପସ୍ଥାପିତ ମିଥ୍ୟା ସତ୍ୟ ବୋଲି ପାଠକର ମନେହେବ । ତେଣୁ ଉପନ୍ୟାସରେ ବର୍ଣ୍ଣିତ ହୋଇଥିବା ଚରିତ୍ରମାନେ ଔପନ୍ୟାସିକର କଳ୍ପନାପ୍ରସୂତ ହେଲେ ବି ପାଠକର ମନେହେଉଥିବ ସତେ ଯେମିତି ସେ ସେମାନଙ୍କୁ ଜାଣିଛି, ଚିହ୍ନିଛି ।

ଫକୀରମୋହନଙ୍କର ଅଧିକାଂଶ ଚରିତ୍ର ତାହାଙ୍କ ମନୋନୁଅନ୍ତି । ଅଥଚ ତାହାଙ୍କୁ ମହାନ୍ତଙ୍କ ଚରିତ୍ରଗୁଡ଼ିକ ସତ୍ୟପର ଲାଗିଆସୁଥିବା ବେଳେ ହଠାତ୍ ପୁଣି ମିଛ ମିଛ ହୋଇଯାନ୍ତି । ଶାନ୍ତି ଭି ଯୋଗ୍ୟ ଏକ ବଳିଷ୍ଠ ନାରୀଚରିତ୍ର ହେଲେ ମଧ୍ୟ ଔପନ୍ୟାସିକଙ୍କ ମାନସିକ ଶିଳ୍ପବୋଧ ଚରିତ୍ରର ସ୍ୱାଭାବିକ ପରିଣତିରେ ବାଧା ସୃଷ୍ଟି କରିଛି ।

ଆଲୋଚିତ ପ୍ରତ୍ୟେକଟି ନାରୀଚରିତ୍ର ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ବଳିଷ୍ଠ ଓ ସାର୍ଥକ, କେହେହେଲେ ନିଜ ନିଜ ଭୂମିକାରେ ଏ ପ୍ରତ୍ୟେକ ଗୋଟିଏ ଗୋଟିଏ ଆର୍କିଟାଇପ୍ ହୋଇପାରନ୍ତି ।



# ମନୋଜ ଦାସଙ୍କ ଗଳ୍ପମାନସ

ସାହିତ୍ୟ ଯୁଗାଶ୍ରୟୀ । ଯୁଗର ରୁଚି ଓ ସଙ୍କେତ ବହନ କରି ସାହିତ୍ୟର ପ୍ରକାଶ ଓ ବିକାଶ ହୋଇଥାଏ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଯୁଦ୍ଧର ନିର୍ମମ ପରିଣତି । ବିଜ୍ଞାନର ଅନ୍ଧ ଅନୁଧାବନ, ସାମାଜିକ, ଆର୍ଥନୀତିକ ତଥା ସାଂସ୍କୃତିକ କ୍ଷେତ୍ରରେ ବିବିଧ ପରିବର୍ତ୍ତନ ବ୍ୟକ୍ତିର ଚିନ୍ତା, ଧାରଣା, କଳ୍ପନାକୁ ବହୁଭାବରେ ପ୍ରଭାବିତ କରିଛି । ସେହି ପ୍ରଭାବର ଫଳ ସ୍ୱରୂପ ସାହିତ୍ୟ କ୍ଷେତ୍ରରେ ଏକ ଉନ୍ନତ ଓ ଜଟିଳ ଭାବଚିନ୍ତାର ପ୍ରସାର ସଙ୍ଗେ ସଙ୍ଗେ ସାହିତ୍ୟର ପାଠକ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି ।

ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା ଗଳ୍ପର ଅବଦାନ ସର୍ବାଧିକ । ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କଠାରୁ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ ଗଳ୍ପ ସାହିତ୍ୟରେ ସାମାଜିକ ନୈତିକ ବ୍ୟଙ୍ଗ-ବିଦ୍ରୂପ ହାସ୍ୟ ଓ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଆଦି ବିଶେଷ ଭାବରେ ପ୍ରକାଶ ପାଇଛି । କିନ୍ତୁ ୧୯୫୦ ପରେ ପରେ ଗଳ୍ପସାହିତ୍ୟ ବହୁ ଶାଖାଉପଶାଖା ନେଇ ସମୃଦ୍ଧ ହେବା ସଙ୍ଗେ ବିଭିନ୍ନ ପ୍ରକାର ଜୀବନାଦର୍ଶ ଓ ଜୀବନବୋଧର ଧାରା ଦ୍ୱାରା ପ୍ରଭାବିତ ହେଲା । ଏହି ସମୟରେ ସାହିତ୍ୟରେ ଦେଖାଗଲା ମୁଖ୍ୟତଃ ଦୁଇଟି ଧାରା । ସମାଜଚେତନା ଓ ବ୍ୟକ୍ତି-ଚେତନା । ଦୁହେଁ ପରସ୍ପରର ବିରୋଧୀ ନ ହେଲେ ମଧ୍ୟ ସମାଜସଚେତନ ଗଳ୍ପରେ ହୁଏତ ସାମାଜିକ ଆଦର୍ଶବାଦ, ସମାଜର ଗୋଷ୍ଠୀ ଚେତନା, ସମାଜକୁ ମିତ୍ର ବା ଶତ୍ରୁ ଭାବରେ ଗ୍ରହଣ କରିବାର ପ୍ରବଣତା ଏବଂ ମଣିଷର ସମସ୍ତ ପ୍ରକାର ସୁଖ ଦୁଃଖ ଓ ଆନନ୍ଦ-ନିରାନନ୍ଦ ପାଇଁ ସମାଜକୁ ଦାୟୀ କରିବାର ଭାବ ପ୍ରକାଶ ପାଉଥିବାବେଳେ ବ୍ୟକ୍ତିଚେତନାରେ ଲେଖକ ବ୍ୟକ୍ତିକୁ ହିଁ ସମାଜ ନିରପେକ୍ଷ ସ୍ୱତନ୍ତ୍ର ସତ୍ତା ରୂପେ ଗ୍ରହଣ କରିଥାଏ । ବ୍ୟକ୍ତିର ଅତି ବ୍ୟକ୍ତିଗତ ଗୋପନ ଅନୁଭୂତି, ବ୍ୟକ୍ତିଗତ ଓ ସାମାଜିକ ଭାବାଦର୍ଶ ମଧ୍ୟରେ ସଂଘାତ ଓ ସଂଘର୍ଷଜନିତ ସୂକ୍ଷ୍ମ ଓ ଜଟିଳ ପରିସ୍ଥିତିମାନ ଏବଂ ଆଧୁନିକ ଗଳ୍ପଲେଖକର ସ୍ୱୀୟ ଜୀବନ ସାଧନାରେ ଆପଣାର ବ୍ୟକ୍ତିତ୍ୱନିର୍ଭର ବହୁ ସମ ଓ ବିଷମ ଅନୁଭୂତିର ଉଦ୍‌ଘାଟନ ଗଳ୍ପର ଆଙ୍ଗିକ ଓ ଆତ୍ମିକକୁ ଯଥାସମ୍ଭବ ନିୟନ୍ତ୍ରିତ ଓ ରୂପାୟନ କରୁଛି ।

ଏହି ବ୍ୟକ୍ତିକେନ୍ଦ୍ରିକ ନୂତନ ଧାରା ଆଧୁନିକ ଓଡ଼ିଆ ଗଳ୍ପସାହିତ୍ୟରେ ପ୍ରଥମେ ଆରମ୍ଭ କଲେ କଥାକାର ରାଜକିଶୋର ରାୟ । କିନ୍ତୁ ଏ ଧାରାର ଯଥାଯଥ ପ୍ରୟୋଗରେ ସଫଳତା ଅର୍ଜନ କଲେ ଗୋପୀନାଥ ମହାନ୍ତି । କିନ୍ତୁ ଏ ଯାବତ୍ ଗଳ୍ପରଚନାର ଅଭିମୁଖ୍ୟ ଥିଲା ବହୁ ବୈଚିତ୍ର୍ୟ ମଧ୍ୟରେ ବି କେବଳ ନୈତିକ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ବ୍ୟକ୍ତିର ବ୍ୟକ୍ତିତ୍ୱ ବିଶ୍ଳେଷଣ । ଆଧୁନିକ ଓଡ଼ିଆ ଗଳ୍ପସାହିତ୍ୟ ପାଇଁ ଏକ ସୁଦୃଢ଼ ପରମ୍ପରା ପ୍ରସ୍ତୁତ ହୋଇ ଯାଇଥିଲେ ମଧ୍ୟ ୧୯୫୦ ପରଠାରୁ ଗାଳ୍ପିକମାନେ ସେହି ପରମ୍ପରାକୁ ନେଇ ସନ୍ତୁଷ୍ଟ ରହିପାରି ନ ଥିଲେ । ସେମାନେ ସମାଜ ଓ ବ୍ୟକ୍ତିକୁ ଆଉ ପୃଥକ୍ ଦୁଇଟି ବିରୋଧୀ ସତ୍ତାରୂପେ ବିବେଚନା କଲେ ନାହିଁ । ସେମାନଙ୍କ ମଧ୍ୟରୁ ଅଖିଳମୋହନ ପଟ୍ଟନାୟକ, କିଶୋରୀଚରଣ ଦାସ, ବାମାଚରଣ ମିତ୍ର, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁକୁମାର ଆଚାର୍ଯ୍ୟ ଓ ରବି ପଟ୍ଟନାୟକ ପ୍ରଭୃତି ଗାଳ୍ପିକମାନେ ନୁହନ୍ତି ପୁରାପୁରି ବ୍ୟକ୍ତିଚେତନାନିଷ୍ଠ ବା ସମାଜଚେତନାନିଷ୍ଠ । ବରଂ ସେମାନେ ଅଧିକ ଆତ୍ମନେପଦୀ ବା ଆତ୍ମସଚେତନ । ଏହି ଆତ୍ମସଚେତନ ଅନୁଭୂତିରେ ବହିର୍ବିଶ୍ୱ କେବଳ ଲେଖକ ଆଗରେ ଏକ ବିଚ୍ଛିନ୍ନ ଅବ୍‌ଜେକ୍ଟ ରୂପେ ପ୍ରତୀୟମାନ ହୁଏ ନାହିଁ; ଏହା ଲେଖକର ଜୀବନାନୁଭୂତି ଓ ଜୀବନାଦର୍ଶ ସଙ୍ଗେ ଏକୀଭୂତ ହୋଇଯାଏ । ଏହି ନୂତନ ପର୍ଯ୍ୟାୟର କାବ୍ୟଦୃଷ୍ଟିରେ ହାସ୍ୟଅଶ୍ରୁ, ରୋଦନ-ରସିକତା, ମିଳନ-ବିଚ୍ଛେଦ ଓ ଦେହ-ଆତ୍ମା ଏଗୁଡ଼ିକ ପରସ୍ପରଠାରୁ ବିଚ୍ଛିନ୍ନ ନ ହୋଇ ପ୍ରତ୍ୟେକ ପ୍ରତ୍ୟେକକୁ ସହାୟକ ହେବାରେ ସାହାଯ୍ୟ କରିଥାନ୍ତି । ତେଣୁ ବର୍ତ୍ତମାନର ଗାଳ୍ପିକ ନିଜପ୍ରତି ଓ ବିଶ୍ୱପ୍ରତି ଅଧିକ ସହନଶୀଳ, ସମ୍ବେଦନଶୀଳ ଓ ବିଶ୍ୱସ୍ତ ।

ଏହି ପୃଷ୍ଠଭୂମିରେ କଥାଶିଳ୍ପୀ ମନୋଜ ଦାସଙ୍କୁ ବିଚାର କଲେ ଜଣାଯାଏ ତାଙ୍କର ସୃଷ୍ଟିରଚନା ପଶ୍ଚାତ୍ତରେ ଏକ ସୁଦୃଢ଼ ସମୁଚ ପୃଷ୍ଠଭୂମି ରହିଥିଲେ ବି ସେ ନିଜସ୍ୱ ସ୍ୱକୀୟତାରେ ଖୁବ ଉଜ୍ଜ୍ୱଳ ଓ ଉନ୍ନତ । ଇଂରାଜୀ ସାହିତ୍ୟରେ ସୁପଣ୍ଡିତ ଓ ପାଶ୍ଚାତ୍ୟ କାବ୍ୟାଦର୍ଶରେ ତାଙ୍କର ସାହିତ୍ୟିକ ରୁଚି ନିର୍ଜିତ ହୋଇଥିଲେ ହେଁ ଗଳ୍ପ ରଚନାରେ ସେ ଭାରତୀୟ ପରମ୍ପରା ଉପରେ ହିଁ ସୌଧ ନିର୍ମାଣ କରିଛନ୍ତି । ସେ କୌଣସି କ୍ଷେତ୍ରରେ ପରମ୍ପରାକୁ ଜାବୁଡ଼ି ଧରି ନାହାନ୍ତି ବରଂ ପରମ୍ପରାକୁ ସାଙ୍ଗରେ ନେଇ ଆଗେଇ ଚାଲିଛନ୍ତି । ସେଥିପାଇଁ ଭାରତୀୟ ପାରମ୍ପାରିକ କାହାଣୀ ସଙ୍ଗେ ଆଧୁନିକ କଥାକୁ ଏପରି ଭାବରେ ସେ ଯୋଡ଼ି ଦେଇଛନ୍ତି ଯାହାକି ପ୍ରାଚୀନ ପ୍ରଚଳିତ ମିଥ୍ ସଙ୍ଗେ ବର୍ତ୍ତମାନର ବାସ୍ତବତାକୁ ସମନ୍ୱିତ କରି ଦେଇଛି । ଫଳରେ ପ୍ରାଚୀନ କାହାଣୀର ସ୍ୱପ୍ନ ଓ ଆଧୁନିକ ଜୀବନର ବାସ୍ତବ କଥା ଏକ

ଅପୂର୍ବ ମିଳନରେ ସମ୍ମିଳିତ ହୋଇଛନ୍ତି । କାହାଣୀ ମାନଙ୍କ ମଧ୍ୟରୁ କେତେକ ପ୍ରଚଳିତ କିମ୍ବଦନ୍ତୀରୁ ଗୃହୀତ ଏବଂ କେତେକ ତାଙ୍କର ନିଜସ୍ୱ କଳ୍ପନାରୁ ସୃଷ୍ଟ । ମନେହୁଏ ପୃଥିବୀର ମିଥ୍ ଏନ୍‌ସାଇକ୍ଲୋପେଡ଼ିଆ ମନୋଜ ଦାସଙ୍କର ନଖ ଦର୍ପଣରେ ରହିଛି । କିନ୍ତୁ ସେହିସବୁ ଲୋକ ପ୍ରଚଳିତ କିମ୍ବଦନ୍ତୀ ଓ କାହାଣୀମାନ ତାଙ୍କ ପରି ପ୍ରତିଭାଧର କଥାଶିଳ୍ପୀଙ୍କର ଚେତନାରେ ଏକ ଅଭିନବ ଆଧୁନିକ ଛନ୍ଦ, ରୁଚି ଓ ଚିନ୍ତା ଉପଯୋଗୀ ଏକ ବିଚିତ୍ର ରସ ପାକରେ ସିଦ୍ଧ ହୋଇ ନୂତନ ଅର୍ଥ ଦ୍ୟୋତନା ଓ ବ୍ୟଞ୍ଜନାରେ ସମୃଦ୍ଧ ହୋଇ ଉଠିଛନ୍ତି ।

ତାଙ୍କର 'କଥା ଓ କାହାଣୀ'ରେ ସ୍ଥାନିତ ଗଳ୍ପଗୁଡ଼ିକର ରଚନାକାଳ ୧୯୪୯ରୁ ୧୯୭୦ ମଧ୍ୟରେ । ପରବର୍ତ୍ତୀ କାଳରେ 'ଲକ୍ଷ୍ମୀର ଅଭିସାର', ଆବୁ ପୁରୁଷ ଓ ଅନ୍ୟାନ୍ୟ କାହାଣୀ, ଧୂମ୍ରାଭ ଦିଗନ୍ତ ଓ ଅନ୍ୟାନ୍ୟ କାହାଣୀ, ଅବଲୋକିତ କାହାଣୀ, ଚତୁର୍ଥ ବନ୍ଧୁ ଓ ମନୋଜ ପଞ୍ଚବିଂଶତି ପ୍ରଭୃତି ଗଳ୍ପ ସଂକଳନମାନ ପ୍ରକାଶ ପାଇଛି । ଏଗୁଡ଼ିକରେ ପ୍ରକାଶିତ ହୋଇଥିବା ପ୍ରତିଟି ଗଳ୍ପ ସ୍ୱତନ୍ତ୍ର ଆଲୋଚନାର ଅପେକ୍ଷା ରଖେ । କିନ୍ତୁ ଏଠାରେ ନିର୍ବାଚିତ କେତୋଟି ଗଳ୍ପ ସମ୍ପର୍କରେ ସୂଚନା ଦିଆଯାଉଛି ।

'କଥା ଓ କାହାଣୀର' ପ୍ରଥମ ଗଳ୍ପ 'ଅପହୃତ ଟୋପିର ରହସ୍ୟ'ରେ ଗାଳ୍ପିକ ଦର୍ଶାଇଛନ୍ତି ତଥାକଥିତ ରାଜନୀତିଜ୍ଞମାନେ ଦେଶ ଓ ଜାତି ପାଇଁ କୌଣସି ତ୍ୟାଗ, ଶ୍ରମ ଓ ସାଧନା ନ କରି ମଧ୍ୟ ସ୍ତାବକମାନଙ୍କର ପ୍ରଶଂସା ଗାନରେ ଆତ୍ମପ୍ରସାଦ ଲାଭ କରି ନିଜକୁ ଏକ ମହାନ୍ ବ୍ୟକ୍ତିତ୍ୱର ଅଧିକାରୀ ମନେକରୁଥିବା ବେଳେ ଏକ ମର୍କଟୀୟ କୌତୂହଳର ଶିକାର ହୋଇ ନିଃସହାୟ ଭାବରେ କିପରି ନିଜର ଦାସ୍ତୁମାସ୍ତୁ ସ୍ୱରୂପକୁ ଆବିଷ୍କାର କରି ଚକିତ ହୋଇ ଉଠନ୍ତି । ମନ୍ତ୍ରୀଙ୍କର ଆଚରଣର ଏକ ବ୍ୟଙ୍ଗାତ୍ମକ ଚିତ୍ର ଦେବାକୁ ଯାଇ କଥାକାର ବର୍ଣ୍ଣନା କରିଛନ୍ତି । 'ମନ୍ତ୍ରୀଙ୍କୁ ତାଙ୍କ ନୋଠରୀ ଭିତରେ ସେ ଅଞ୍ଚଳର ବୃହତ୍ତମ କାଚ ଗ୍ଲାସଟିରେ ଉଷ୍ମ ସର୍ବତ ପରଷା ଯାଇଥାଏ । ସେ ତାକୁ ଧୀରେ ଧୀରେ ପିଉଁ ପିଉଁ ଦଧି ତଥା ଭାବପ୍ରବଣତାର ସଂଯୋଗରେ କଣ୍ଠ ଅଧା ଅବରୁଦ୍ଧ ହୋଇ ଆସୁଥିବା ସତ୍ତ୍ୱେ କହିଲେ, "ବୁଝିଲ ମହାଜନଗଣ, ହାଃ ହାଃ ଯାହା ଦେଖାଯାଉଛି ହାଃ ହାଃ ଦିନ ଆସିବ ଯେତେବେଳେ ହାଃ ହାଃ ଲୋକେ ମୋ ଦେହରୁ ଲୁଗାପଟା ବା.ହ ଃ ହାଃ କାଢ଼ି ନେଇ ଯିବେ । ହାଃ ହାଃ ଏବଂ ହାଃ ହାଃ । ମୋତେ ହୁଏତ ଉଲଗ୍ନ ହୋଇ ବୁଲିବାକୁ ପଡ଼ିବ । ହାଃ ହାଃ କିନ୍ତୁ କ'ଣ କରାଯାଏ ହାଃ ହାଃ ଲୋକଙ୍କ ଭଲ ପାଇବାକୁ ତ ଆଉ ଦବାଇ ଦିଆ ଯାଇପାରେ ନା ।" ଭାରତର ସାଂପ୍ରତିକ ରାଜନୈତିକ ଜୀବନର ନଗ୍ନିକ ପ୍ରତିନିଧିତ୍ୱ କରୁଥିବା ଉକ୍ତ ଗଳ୍ପଟି

କ୍ରିଟେନର ପ୍ରସିଦ୍ଧ କାହାଣୀ ସଂକଳନ [ମ୍ୟାକମିଲାନ, ଲଣ୍ଡନ ଓ ସେଣ୍ଟମାର୍ଟିନ ପ୍ରେସ, ନ୍ୟୁୟର୍କ ପ୍ରକାଶିତ ଇଂରାଜୀ ସଂକଳନ 'WINTER'S TALES''ରେ ପ୍ରକାଶିତ ହୋଇଥିଲା ।

''ଲୁଭ୍ରର୍ଭା ପର୍ବତରେ ଏକ ଦ୍ୱିପ୍ରହର'' ଗଳ୍ପରେ ଗାଲ୍ପିକଙ୍କର ବର୍ଣ୍ଣିତ ଲୁଭ୍ରର୍ଭା ପର୍ବତ ବୋଲି କୌଣସି ପର୍ବତ ନାହିଁ ବା ଅବିକଳ ତଦନୁରୂପ ଘଟଣା କେଉଁଠାରେ ସଂଘଟିତ ହୋଇ ନ ଥିଲା । କିନ୍ତୁ ଲଭ୍ରର୍ଭା ପର୍ବତର କାହାଣୀ ଖାଲି କେଉଁ ଏକ ଊଷର ଭୂଖଣ୍ଡରେ ବା ପତିତ ଜମିରେ ଗାଲ୍ପିକଙ୍କର ହୃଦୟସ୍ଥ ସଂଜାତ ରସରେ ସ୍ନାତ ହେବାପାଇଁ ଅପେକ୍ଷା କରି ପଡ଼ି ରହିଥିଲା । କିନ୍ତୁ ପାଠକ ସେଠି ଦେଖିବାକୁ ପାଇଲା ନିଜର ସୀମା, ସାମର୍ଥ୍ୟ ଓ ଶକ୍ତି ସମ୍ପର୍କରେ ସମ୍ପୂର୍ଣ୍ଣ ଅଚେତନ ରହି ବିଚରା ମଣିଷଟି ପର୍ବତକୁ ଟେକି ଧରିବାକୁ ନିଷ୍ଫଳ ଆସ୍ଫାଳନ ଓ ବୃଥା ଅହମିକା ପ୍ରଦର୍ଶନ କରି କପରି ସେହି ମିଥ୍ୟା ଅହଙ୍କାରର ସ୍ତୂପ ତଳେ ଶ୍ୱାସରୁଦ୍ଧ ହୋଇ ମୃତ୍ୟୁ ବରଣ କରେ । ଅଥଚ ବାବା ଚକ୍ରଧାରୀ ପରି ସରଳ ନିଷ୍କପଟ ବ୍ୟକ୍ତିଟି କୌତୁକ ଓ କୌତୂହଳ ତାଡ଼ିତ ଏକ ବେଦରଦୀ ଜନତାର କରତାଳିପୁଷ୍ଟ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ବା ଆକ୍ରାନ୍ତ ହୋଇ ଏକ ନିଃସହାୟ ମୃତ୍ୟୁ ବରଣ କରୁଥିବା ବେଳେ ଗାଲ୍ପିକ ତାକୁ ସେହି ବ୍ୟୂହ ମଧ୍ୟରୁ ତା'ର ଜୀବନ ସମେତ ଆତ୍ମପୁରୁଷଟିକୁ ଉଦ୍ଧାର କରିଛନ୍ତି ।

'ତରୁଣଗିରିର ତପସ୍ୱୀ ଓ ସାତ ଜଣ ପ୍ରବୀଣ'ଙ୍କ ଘଟଣାରେ ବିସ୍ତୃତିବନ୍ତ, ବହୁ ଅଭିଜ୍ଞତାଲବ୍ଧ ପ୍ରୌଢ଼ମାନଙ୍କ ମନରେ ଜୀବନ ପ୍ରତି ବିରକ୍ତି କ୍ଳାନ୍ତ, ଅବଦମିତ ଯୌନ କାମନା ସୃଷ୍ଟି କରିଛି ଅଲୌକିକ ସିଦ୍ଧି ପାଇଁ ଚରମ ବ୍ୟାକୁଳତା । କିନ୍ତୁ ସିଦ୍ଧିକୁ ନେଇ ନିଜର ଜଘନ୍ୟ ଲାଳସାର ପରିତୃପ୍ତି ପାଇଁ ଯେଉଁ ଅପଚେଷ୍ଟା କରାଯାଇଛି ତାହାଦ୍ୱାରା ସୃଷ୍ଟି ହୋଇଛି ସେମାନଙ୍କ ଜୀବନର ଚରମ ବିପର୍ଯ୍ୟୟ । ଛଦ୍ମ ବାବାଙ୍କର ଅଲୌକିକ ଶକ୍ତି ସଂସ୍କୃତ ଜଳବିନ୍ଦୁ ଆଖିରେ ପକାଇ ମଣିଷର ନଗ୍ନରୂପ ଦେଖିବାର ବ୍ୟାକୁଳତାରୁ ସେମାନେ ନିୟମ ରକ୍ଷା କରିପାରିଲେ ନାହିଁ । ଫଳରେ ''ଚତୁର୍ଦ୍ଦିଗସ୍ଥ ନରନାରୀ ଏଥର କେବଳ ଯେ ବସ୍ତ୍ରହୀନ ଦେଖାଗଲେ ତାହା ନୁହେଁ ଦେଖାଗଲେ ମାଂସ ଚର୍ମହୀନ ମଧ୍ୟ । ଅର୍ଥାତ୍ ସେମାନଙ୍କ ଚତୁର୍ଦ୍ଦିଗରେ ନାଚୁଥିଲେ ଯୋଡ଼ା ଯୋଡ଼ା କଙ୍କାଳ । ଟେବୁଲମାନଙ୍କରେ ମଦ ପରିଷୁଥିଲେ କଙ୍କାଳମାନେ । ସେମାନେ ଚିତ୍କାର କରି ବାହାରି ଆସିଲେ ରାସ୍ତାକୁ । ଦେଖିଲେ ରାଜପଥରେ ଆତଯାତ ହେଉଛନ୍ତି ଶହ ଶହ କଙ୍କାଳ ।''

"ବିଷକନ୍ୟାର କାହାଣୀ"ରେ ଦେହଜୀବୀ ସ୍ତ୍ରୀର ବଞ୍ଚିବା ପାଇଁ ଏକ ସଂଘାତମୟ ଜୀବନର ବାସ୍ତବ ଚିତ୍ର ଦେଇଛନ୍ତି ଗାଳ୍ପିକ । ସହସ୍ରଶଯ୍ୟାର ନାୟିକା ସ୍ତ୍ରୀର ହୃଦୟବୃତ୍ତିକୁ କେହିବି ଚିହ୍ନିବାର ଚେଷ୍ଟା କରିନି । କଥା-କାରଙ୍କର ସମ୍ବେଦନଶୀଳ ହୃଦୟ ସ୍ତ୍ରୀ ପ୍ରତି ପାଠକ ମନରେ ଘୃଣା ବା ବିତୃଷ୍ଣା ପରିବର୍ତ୍ତେ ସହାନୁଭୂତି ସୃଷ୍ଟି କରିଛି । ଏଥିରେ ଯୌନାବେଗର ଚିତ୍ର ଥିଲେ ବି ଏହା କୌଣସି ପ୍ରକାର ଅଶ୍ଳୀଳତା ପ୍ରକାଶ ନ କରି ସାମାଜିକ ଜୀବନର ଏକ ନିଚ୍ଛକ ସତ୍ୟକୁ ହିଁ ଉଦ୍‌ଘାଟିତ କରିଛି ।

ବିଶ୍ୱଯୁଦ୍ଧଜନିତ ସାମାଜିକ ଜୀବନରେ ଘଟିଥିବା ପରିବର୍ତ୍ତନ ପ୍ରାୟ କଥାକାରମାନଙ୍କ ରଚନାରେ ଦେଖିବାକୁ ମିଳେନାହିଁ । ମନୋଜ ଦାସଙ୍କର ପ୍ରଥମ ପ୍ରକାଶିତ ଗଳ୍ପ 'ସମୁଦ୍ରର କ୍ଷୁଧା' ଏ ଦୃଷ୍ଟିରୁ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ଉକ୍ତ ଗଳ୍ପରେ ସାହେବୀ ସୈନ୍ୟମାନଙ୍କର ଯୌନକ୍ଷୁଧା କିପରି ମାନବିକତାର ଗଳାରୁଦ୍ଧ କରିଦେଇଛି ତା'ର ଏକ ମାର୍ମିକ ଚିତ୍ର ସେ ପ୍ରଦାନ କରିଛନ୍ତି । ସ୍ୱାମୀ ଯୁଦ୍ଧରୁ ଫେରିଆସିଥିବାର ମିଥ୍ୟା ସମ୍ବାଦ ପାଇ ତାକୁ ସାକ୍ଷାତ୍ କରିବା ପାଇଁ ସମୁଦ୍ରକୂଳର ସେହି ପରିତ୍ୟକ୍ତ ଜୀର୍ଣ୍ଣ ଘରକୁ ବ୍ୟାକୁଳ ହୋଇ ଦଉଡ଼ି ଆସିଥିବା ଶୁଭ୍ରାକୁ ଦେଖି ସେଠାରେ ଉପସ୍ଥିତ ଥିବା ସାହେବଙ୍କର ମନେ ହୋଇଛି, 'ଏ ରଷ୍ଟିକ ଜାଗାରେ ବି ଏ ବିଜିନେସ୍ ଚାଲେ ? କିନ୍ତୁ ଶୁଭ୍ରା ଯେଉଁ ମୁହୂର୍ତ୍ତରେ ସାହେବର ଉଦ୍ଦେଶ୍ୟ ବୁଝିପାରି ସେଠାରୁ ପଳାଇ ଯିବାକୁ ଚାହିଁଛି ଆଉ ଉପାୟ ପାଇନି । ବିଚରା ତା'ର ଶ୍ରେଷ୍ଠ ଶିଶୁଟି ସବୁ କିଛି ବୁଝି ନ ପାରି ସେ ଅଭାବିତ ପରିସ୍ଥିତିରେ ଭୟରେ ଚିତ୍କାର କରି କାନ୍ଦି ଚାଲିଥିବାର ଦେଖି, "ଦୁଇ ହାତରେ ସବୁର ଗଳା ଧରି ସାହେବ କିଛି ସମୟ ତାକୁ ଶୂନ୍ୟରେ ଝୁଲାଇ ରଖିଲେ, ତା'ପରେ ଶରୀରର ସମସ୍ତ ଶକ୍ତି ହାତ ପାପୁଲି ଦୁଇଟିରେ ଠୁଳ କରି ସେ ବେରୁଦ୍ୟମାନ ସବୁର ଗଳା ଚିପି ଧରିଲେ । ଆଖିଡ଼ିମା ଦି'ଟା ଫାଟିଗଲା ଭଳି ହୋଇ ବାହାରକୁ ବାହରି ଆସିଲା । ସାହେବ ଗୋଟାଏ ତୃପ୍ତିସୂଚକ ଶବ୍ଦକରି ଭଙ୍ଗା ଝରକା ଦେଇ ସବୁର ନିଃସାଡ଼ ଦେହକୁ ଫୋପାଡ଼ି ଦେଲେ । ଟପ୍ କରି ଶବ୍ଦଟାଏ ହେଲା ।" ସାହେବୀ ସୈନ୍ୟମାନଙ୍କର ପାଶବିକତା ଓ ଶୁଭ୍ରାର ଅସହାୟତାର ଚିତ୍ର ଏତେ ମାର୍ମିକ ଯେ ଏହି ଗଳ୍ପଟି ଥରେ ପଢ଼ିଥିବା ପାଠକର ମନ ସେଇ ନିଷ୍ଠୁର ବାସ୍ତବତାର ଗ୍ରାସରୁ ମୁକ୍ତ ହେବା ଜୀବନବ୍ୟାପୀ ସମ୍ଭବ ନୁହେଁ । ପାଠକର ସ୍ମୃତିରେ ଯେତେବେଳେ ଜାଗିଉଠୁଥିବ ଶୁଭ୍ରାର ଶିଶୁପୁତ୍ର ସବୁର ସାହେବ ହାତରେ ମୃତ୍ୟୁର ଦୃଶ୍ୟ, ମଣିଷର ନିର୍ମମତା ଓ ପାଷାଣ୍ଡ କ୍ରିୟାର ପରିଣତି ତାକୁ ବିଚଳିତ କରିପକାଉଥିବ ।

ତାଙ୍କର ଅନ୍ୟତମ ବହୁ ଚର୍ଚ୍ଚିତ ଗଳ୍ପ 'ଆରଣ୍ୟକ'ରେ ମିଷ୍ଟର ଓ ମିସେସ୍ ମିଟି, ମିଷ୍ଟର ଓ ମିସେସ୍ ଘୃକୋଡ଼ଙ୍କର ପ୍ରଭୂତ ମଦ୍ୟପାନ ଓ ଯୌନାବେଗର ଚିତ୍ର ଗାଳ୍ପିକ ପ୍ରଦାନ କରିଥିଲେ ବି ତାଙ୍କର ଉଦ୍ଦେଶ୍ୟ ସାମାଜିକ ଭାବସତ୍ୟକୁ ଉଦ୍‌ଘାଟିତ କରିବା । ଗଳ୍ପରେ ମିସେସ୍ ମିଟିଙ୍କର ଯୌନ ଆବେଦନ ପ୍ରତି ନିସ୍ପୃହ ଶ୍ୟାମଳର ଉପେକ୍ଷା ଭାବ ପାଇଁ ତାକୁ ଶିକାର ହେବାକୁ ପଡ଼ିଛି ଘୃଣିତ ଅଭିଜାତବର୍ଗୀୟ ବ୍ୟକ୍ତିଙ୍କର ପ୍ରମତ୍ତ କ୍ରୋଧର । ରକ୍ତାକ୍ତ ଓ ସଂଜ୍ଞାହୀନ ଶ୍ୟାମଳକୁ ସଦ୍ୟ ଶିକାର ହୋଇ ଆସିଥିବା ମୃତ ବାଘ୍‌ଟା ପାଖରେ ଫୋପାଡ଼ି ଦିଆଯାଇଛି । ରାତିରେ ପ୍ରଚୁର ମଦ୍ୟପାନ କରି ଜାଳିଥିବା ଅଗ୍ନିକୁଣ୍ଡରେ ମୃତ ବାଘ୍‌ଟାକୁ ପକାଇ ତା'ର ମାଂସ ଚେକା ଚେକା କରି କାଟି ଖାଇଛନ୍ତି ସେମାନେ । କିନ୍ତୁ ସକାଳେ ନିଶା ଛାଡ଼ିଯିବା ପରେ ଶ୍ୟାମଳର ଅବସ୍ଥା କ'ଣ ହେଲା ଜାଣିବା ପାଇଁ ସେ ପଡ଼ିଥିବା ଘରକୁ କେହି ଯାଇପାରିନାହାନ୍ତି । କାରଣ ଗତରାତିରେ ନିଶାଗ୍ରସ୍ତ ଅବସ୍ଥାରେ ସେମାନେ କ'ଣ କରିଛନ୍ତି କାହାରି ସ୍ମରଣରେ ନ ଥିଲା । ଗାଳ୍ପିକ ଏହି ଅବସ୍ଥାଟିର ବ୍ୟଙ୍ଗାତ୍ମକ ବର୍ଣ୍ଣନା କରିଛନ୍ତି ଏକ ରୋମାଞ୍ଚକ ନାଟକୀୟ ଭାବରେ ।

"ଧର ଯଦି କୋଠରୀ ଭିତରେ ଶ୍ୟାମଳ ବଦଳରେ ବାଘ୍‌ଟାକୁ ଦେଖ ?"
ଦୀର୍ଘ ସମୟ ଧରି ବିରାଜ କଲା ଏକ ମୃତ୍ୟୁ ଶୀତଳ ସ୍ତବ୍ଧତା । ତାପରେ ଜଣେ କିଏ କହିଲେ, "କଚେନ୍ ଗାର୍ଡ଼ନକୁ ଯାଇ ଦେଖିବା ଚାଲ, ବାଘ୍‌ଟାର ବହୁ ଅଂଶ ନଷ୍ଟେ ଏବେ ବି ସେଠାରେ ପଡ଼ିଛି ।"

"ହାଃ, ହାଃ, କଦାପି ନୁହେଁ ।" ଉଭୟ ମିସେସ୍ ମିଟି ଓ ମିସେସ୍ ଘୃକୋଡ଼ ଚିତ୍କାର କଲେ, "ସେଠାରେ ଯାହା ପଡ଼ିଥିବ ତାହା ଯଦି ବାଘ୍‌ଟାର ହୋଇ ନ ଥିବ ?"

ଭାରତୀୟ କଥାସାହିତ୍ୟରେ ମଣିଷର ଏପରି ଏକ ଆରଣ୍ୟକ ସ୍ଥିତିର ଉପର୍ଯ୍ୟୁକ୍ତ ଶକ୍ତିଶାଳୀ ଅଭିବ୍ୟକ୍ତି ବିରଳ । ବିହଙ୍ଗ, ମହିମବତୀ ଓ ରାୟବାହାଦୁରଙ୍କ ନିଶରେ ସାମନ୍ତବାଦୀ ଚରିତ୍ରର ଯେଉଁ ରୂପ ସେ ଦେଇଛନ୍ତି ସେଥିରେ ରକ୍ଷଣଶୀଳତା ବା ପରମ୍ପରାକୁ ଜାବୁଡ଼ି ଧରିବାର ମୋହ ପରିବର୍ତ୍ତେ ଚରିତ୍ର-ଗୁଡ଼ିକର ଅସହାୟତା ମୁଖ୍ୟତଃ ସ୍ଥାନ ପାଇଛି । ଏହି ଚରିତ୍ରମାନେ କ୍ରମେ ଅନ୍ତର୍ମୁଖୀ ହୋଇଛନ୍ତି ଆତ୍ମମଣିଷଟିକୁ ଆବିଷ୍କାର କରିବାପାଇଁ । ବାବୁଲପୁରର ଷଣ୍ଢ, ତିନୋଟି ମହାର୍ଘ ଭେଟ୍ ଓ ପ୍ରତ୍ୟାବର୍ତ୍ତନ ଗଳ୍ପରେ ହାସ୍ୟରସ ମାଧ୍ୟମରେ ଚରିତ୍ରଗୁଡ଼ିକର ଅସହାୟ ବ୍ୟକ୍ତିସତ୍ତାଟିର ଏକ ମାର୍ମିକ ରୂପ ସେ ପ୍ରକାଶ କରିଛନ୍ତି ।

(୩)

ବ୍ୟକ୍ତି ପ୍ରତି, ସମାଜ ପ୍ରତି ମନୋଜବାବୁଙ୍କର ଯେଉଁ ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ ପାଇଛି ତାହା ନିଜକୁ ବଡ଼ ଭାବି ଅନ୍ୟକୁ ନ୍ୟୁନ ଦେଖାଇବା ନୁହେଁ । ବରଂ ତାହା ତାଙ୍କର ସ୍ନେହ ଓ ସହାନୁଭୂତିରୁ ଉଦ୍ଭୂତ ହୋଇଥିବାରୁ ତାଙ୍କର ବ୍ୟଙ୍ଗ ଦ୍ୱାରା ମଣିଷର ଅନ୍ତଃସ୍ୱରୂପଟି ଉଦ୍‌ଘାଟିତ ହୋଇଯାଏ ପାଠକ ନିକଟରେ । ସେଥିପାଇଁ ଏହି ଧରଣର ଗଳ୍ପ ପାଠକ ପଢୁଥିବାବେଳେ ଆମୋଦ ଅନୁଭବ କରୁଥିଲେ ବି ତା' ସହିତ ମଣିଷର ଅସହାୟତାକୁ ମଧ୍ୟ ବୁଝିପାରେ । ନିଜକୁ ଦେଖିପାରେ ଚରିତ୍ରର ସ୍ଥାନରେ । ତେଣୁ କାହାର ଦୁର୍ବଳତା ପାଇଁ ସେ ପରିହାସ କରିବ ! ମନୋଜ ଦାସ ସାମାଜିକ ରାଜନୀତିକ ସ୍ଥିତିସ୍ଥାପକତାର ସମାଲୋଚନା କଲେ ବି ଓ ସାମ୍ପ୍ରତିକ କାଳରେ ଘଟୁଥିବା ସାମଗ୍ରିକ ଅବକ୍ଷୟିତା ପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ପ୍ରକାଶ କରୁଥିଲେ ବି ସେ ବିଶ୍ୱାସ ରଖନ୍ତି ଯେଉଁ ପ୍ରକାର ସମାଜ ବ୍ୟବସ୍ଥା ରହିଛି, ଯେଉଁ ପ୍ରକାର ସ୍ଥୂଳତା ଆମର ସାମାଜିକ ସ୍ତରରେ ଜମି ରହିଛି ଏହାର ନିଶ୍ଚିତ ପରିବର୍ତ୍ତନ ହେବ । କିନ୍ତୁ ସାମାଜିକ ସ୍ତର ବା ସମଷ୍ଟିଗତ ସ୍ତରରେ ପରିବର୍ତ୍ତନ ହେଲେ ବି ବ୍ୟକ୍ତି ମଣିଷର ମୂଳଗତ ଦୁଃଖ-ଯନ୍ତ୍ରଣା, ବେଦନାନିପୀଡ଼ନ, ହତାଶା, ବ୍ୟର୍ଥତାବୋଧର ପରିବର୍ତ୍ତନ ସମ୍ଭବ ହେବ ନାହିଁ । କାରଣ ବ୍ୟକ୍ତିଚେତନାର ସ୍ତର ସବୁବେଳେ ସମଷ୍ଟିଗତ ଚେତନାର ସ୍ତରଠାରୁ ଊର୍ଦ୍ଧ୍ୱରେ ଥାଏ । ଗାଳ୍ପିକ ଅନୁଭବ କରିଛନ୍ତି ଯେ ବ୍ୟକ୍ତି ସମାଜ ପାଇଁ ସୃଷ୍ଟି ହୋଇନାହିଁ, ବ୍ୟକ୍ତି ପାଇଁ ହିଁ ସମାଜର ସୃଷ୍ଟି । ଯେଉଁ ସମାଜରେ ବ୍ୟକ୍ତିକୁ ନିକୃଷ୍ଟ କରି ଦିଆଯାଏ ଓ ସମାଜର ବହୁ ବାହ୍ୟିକ ଶୃଙ୍ଖଳ ମନୁଷ୍ୟର ଆତ୍ମାରେ, ମନରେ ଓ ପ୍ରାଣରେ ଲଦି ଦେଇ ତା'ର ଅନ୍ତଃସତ୍ତ୍ୱାକୁ ଖର୍ବ କରିବାକୁ ଚେଷ୍ଟା କରାଯାଏ, ସେଠାରେ ମଣିଷ ଜୀବନର ପ୍ରକୃତ ଲକ୍ଷ୍ୟ ହଜି ଯାଇଥାଏ । ସମାଜ ଉଦ୍ଦେଶ୍ୟ ହୋଇପାରେ ନାହିଁ; ଉପାୟ ବା ଯନ୍ତ୍ରମାତ୍ର ହୋଇଥାଏ । ଶ୍ରୀ ଅରବିନ୍ଦଙ୍କ ଦର୍ଶନ ଅନୁସାରେ କଥାକାର ମନୋଜ ମନେକରନ୍ତି ମଣିଷ ଏକ ପରିବର୍ତ୍ତନଶୀଳ ସତ୍ତା । ପ୍ରକୃତିର ବିବର୍ତ୍ତନରେ ମଣିଷ ଶେଷ ସୃଷ୍ଟି ନୁହେଁ । ତା'ର ଅପୂର୍ଣ୍ଣତା ହିଁ ତା'ର ସମସ୍ତ ପ୍ରକାର ଦୁଃଖ, ଯନ୍ତ୍ରଣା ଓ ସମସ୍ୟାର ମୂଳସୂତ୍ର । ତେବେ ତା'ର ଏହି ବର୍ତ୍ତମାନ ଚେତନାର ରୂପାନ୍ତର ନିଶ୍ଚିତ ଭାବରେ ଘଟିବ ଓ ଏକ ପୂର୍ଣ୍ଣାଙ୍ଗ ମହତ୍ତ୍ୱପୂର୍ଣ୍ଣ ଜୀବନ ବଞ୍ଚିବାର ସାମର୍ଥ୍ୟ ମଣିଷ ହାସଲ କରିବ ।

ମନୋଜ ଦାସଙ୍କ ଗଳ୍ପରେ ଶିଶୁ ଓ କିଶୋର ଚରିତ୍ରର ଉଲ୍ଲେଖନୀୟ ପ୍ରକାଶ ଓ ବିକାଶ ଲକ୍ଷ୍ୟ କରାଯାଏ । ମଣିଷ ଜୀବନର ଶିଶୁ ଓ କିଶୋର ଅବସ୍ଥା ଏକ ନିଷ୍ପାପ ସରଳ ବିଶ୍ୱାସରେ ଭରା ସମୟ । ଶିଶୁ ଅତି ସହଜ ସରଳ

ସ୍ୱଭାବରେ ହିଁ ଜଗତକୁ ଗ୍ରହଣ ଓ ତଦନୁରୂପେ ପ୍ରକାଶ ମଧ୍ୟ କରେ । ଏ ପ୍ରକାର ଉପସ୍ଥାପନ ସମ୍ପର୍କରେ ଗାଲ୍ସୱର୍ଦ୍ଦିଙ୍କର ମତ ଉଲ୍ଲେଖ କରାଯାଇପାରେ, "ଶିଶୁ ଜୀବନ ପ୍ରତି ମୋର ଶ୍ରଦ୍ଧାର କାରଣ, ପ୍ରତି ଶିଶୁ ଜୀବନକୁ ନୂଆ କରି ଆରମ୍ଭ କରିବା ଢଙ୍ଗରେ ପ୍ରକୃତିର ଏକ ନୂଆ ପ୍ରଚେଷ୍ଟା । ଶିଶୁର ମାନସ ନିଷ୍କପଟ, ପ୍ରାୟତଃ ସୁନ୍ଦର । ପୁଣି ଶିଶୁ କନ୍ୟା ଭିତରେ ମୁଁ ଖାଲି ଶିଶୁର ଗୌରବ ଦେଖେ ନାହିଁ ଅଧିକନ୍ତୁ ଦେଖିପାଏ ଏକ ସଦ୍ୟଜାତ ମାତୃତ୍ୱର ସ୍ନେହସ୍ନିଗ୍ଧ ଝଲକ ।"

'ଶେଷ ବସନ୍ତର ଚିଠି' ଗଳ୍ପରେ କିଶୋରୀ ଶାନା ପ୍ରତିଦିନ ଅପେକ୍ଷା କରିଚାଲିଛି ତା'ର ମା'ଙ୍କ ପାଖରୁ ଚିଠିଟିଏ ପାଇବା ପାଇଁ । ସେଇ ଉତ୍କଣ୍ଠିତ ଭାବରେ ଅପେକ୍ଷମାଣ ଝିଅଟି ପ୍ରତି ଶ୍ରଦ୍ଧାଶୀଳ ହୋଇ ଗୃହିଁ ରହୁଥିଲେ ଜଣେ ବୟସ୍କ ବ୍ୟକ୍ତି । ଏମିତି ଅପେକ୍ଷାରେ ଦିନମାସ ବିତିଯାଇଛି; ଶାନା ପାଇଁ ଚିଠିଟିଏ ଆସିନି । ଅଥଚ ଦିନେ ଶାନା ଘରର ଦରୱାନ ଶାନା ପାଖକୁ ତା' ମା' ଦେଇଥିବା ଚିଠିଟି ନେଇ ଆସି ସହୃଦୟ ଉକ୍ତ ବୟସ୍କ ଭଦ୍ରବ୍ୟକ୍ତିଙ୍କ ଘରେ । ସେ ଜାଣିବାକୁ ପାଇଲେ ଏ ଚିଠି ସୁଦୂର ହସ୍ପିଟାଲରୁ ଲେଖିଥିଲେ ଶାନାର ମା' ଶାନା ପାଖକୁ, ଯିଏ ଏବେ ଆଉ ଇହଜଗତରେ ନାହାନ୍ତି । କିନ୍ତୁ ତାଙ୍କ ନିକଟକୁ ଶାନା ଯେ ଚିଠିଟି ପଠାଇବାର କାରଣ ସେ ଦରୱାନଠାରୁ ବୁଝିଲେ ସେ ତାଙ୍କୁ ଏକୁଟିଆ ବାରଣ୍ଡାରେ ଠିଆହୋଇ ରହୁଥିବାର ଦେଖି ଦେଖି ଶାନା ଅନୁଭବ କରିଛି ସେ ମଧ୍ୟ ତା' ପରି ଖୁବ୍ ଦୁଃଖୀ ଓ ତାଙ୍କ ମା'ଙ୍କ ଚିଠିକୁ ଅପେକ୍ଷା କରୁଛନ୍ତି । ଟିକି ଝିଅଟିର ଅନ୍ତର ଏହି ବୁଢ଼ା ମଣିଷଟି ପ୍ରତି ଏକ ଅଦ୍ଭୁତ ମମତ୍ୱବୋଧ ଅନୁଭବ କରିଛି ଓ ନିଜର ଥିବା ଏକମାତ୍ର ଚିଠିଟିକୁ ତାଙ୍କୁ ସାନ୍ତ୍ୱନା ଦେବାପାଇଁ ପଠାଇ ଦେଇଛି । ଆନନ୍ଦ ବିହ୍ୱଳ ଲେଖକ ନିଜର ଅଜ୍ଞାତସାରରେ ଚିତ୍କାର କରି ଉଠିଛନ୍ତି, "ଶାନା, ଟିକି ମା'ଟି ମୋର ।"

'ଅଦେଖା ପ୍ରିୟତମ' ଗଳ୍ପରେ ଟିକି ଝିଅଟିର ହସଟିକକ ଭିତରେ ସ୍ୱାଓ ହଠାତ୍ ଆବିଷ୍କାର କରିପକାଇଛନ୍ତି ଏକ ଅବଚେତନର ସଂଗୁପ୍ତ ରହସ୍ୟ । କାରଣ ସେଇ ଟିକି ଝିଅଟି ତାଙ୍କର ପ୍ରଶ୍ନ "କହତ ମା...ମାନେ...ଇଏ ମାନେ ତୁ କାହିଁକି ମତେ ଅନାଇ ହସିଲୁ ?"ର ଉତ୍ତର ଦେବାକୁ ଯାଇ କହିଥିଲା, "କାହିଁକି ! ତମେ ତ ସେଇ ସେତେ ଦୂରରୁ ମୋତେ ଅନାଇ ହସି ହସି ଆସୁଥିଲ, ସେଇଥି ପାଇଁ ।" ହସର ମୂଳ ଉତ୍ସଟିକୁ ନିଜ ଭିତରେ ଆବିଷ୍କାର କରିବା ପରେ ସ୍ୱାଓଙ୍କର ମନେହୋଇଛି କେତେଗୋଟି ଗଛ, କେତେଗୋଟି ଚଢ଼େଇ ଓ ଅଦୂରର ନଈପଠା ସମସ୍ତେ ଯେମିତି ତାଙ୍କୁ ଚାହିଁ ହସୁଛନ୍ତି ।

'ଲକ୍ଷ୍ମୀର ଅଭିସାର' ଓ 'ସୀତା ପାଇଁ ବର' ଗଳ୍ପ ଦୁଇଟିରେ ଶିଶୁ-ମନସ୍ତତ୍ତ୍ୱର ସୁନ୍ଦର ପ୍ରଖ୍ୟାପନ କରିବା ସଙ୍ଗେ କଥାକାର କହିଛନ୍ତି । ପ୍ରତ୍ୟେକ ଅଧ୍ୟାତ୍ମ ସାଧକଙ୍କୁ ଭଗବତ ପ୍ରାପ୍ତି ନିମନ୍ତେ ଲକ୍ଷ୍ମୀର ପଥରେ ହିଁ ଯିବାକୁ ହୁଏ । ବୃଦ୍ଧ, ପ୍ରୌଢ଼ ବା ଯୁବକ ହୁଅ । ଜ୍ଞାନୀ, ମାନୀ, ଗୁଣୀ ହୁଅ ପଛକେ ଏପରିକି ପୂର୍ଣ୍ଣାଙ୍ଗ ଯୋଗସାଧକ ହେଲେ ମଧ୍ୟ ନିଜର ଇଷ୍ଟଙ୍କ ସହିତ ସମ୍ପର୍କ ଲକ୍ଷ୍ମୀର ସୀତାର ସମ୍ପର୍କ ପରି ହେବା ଦରକାର । ହୁଏତ ଆମର ଲକ୍ଷ୍ମୀଆମ୍ମା ଅନ୍ତବାହ୍ୟମୁଦ୍ୱନାଗ୍ରସ୍ତ ପରପ୍ରେକ୍ଷୀର ନିଷ୍ଠୁର କୃପାରେ ବୁଦ୍ଧି ହୋଇ ନିଜର ଦେହ ଓ ଜୀବନକୁ ବିସର୍ଜନ ଦେଇପାରେ କିନ୍ତୁ ତାହା ବାହ୍ୟ ।

'ଧୂମ୍ରାଭ ଦିଗନ୍ତ' ଗଳ୍ପରେ ସହରରୁ ଆସିଥିବା କିଶୋରୀ ଲିଲି ସହିତ ତିନିଜଣ ଗ୍ରାମୀଣ କିଶୋରଙ୍କର ସୃଷ୍ଟି ହୁଏ ଅନାବିଲ ବନ୍ଧୁତା । ଏକ ଦୁର୍ଘଟଣାରେ ଲିଲିର ଆକସ୍ମିକ ମୃତ୍ୟୁ ହୋଇଯାଏ । ତା' ସହିତ ଥିବା ଏହି ତିନୋଟି ବାଳକ ଲିଲିର ମୃତ୍ୟୁଜନିତ ଗଭୀର ବିଷାଦ ଓ ଅପରାଧବୋଧରୁ ସେମାନଙ୍କ ଜୀବନର ଦୀର୍ଘ ପର୍ଯ୍ୟାୟରେ ମଧ୍ୟ ନିଜକୁ ମୁକ୍ତ କରିପାରିନାହାନ୍ତି । ସେମାନଙ୍କ ମଧ୍ୟରୁ ଜଣେ କିଶୋର ହିଟ୍ଟୁ ତା'ର ବୃଦ୍ଧାବସ୍ଥାରେ ଲିଲିର ସ୍ମୃତିରେ ମନ୍ଦିରଟିଏ ନିର୍ମାଣ କରିଛି, ଅନ୍ୟଜଣକ ହାଡୁ ତା' କାହାଣୀ ପୁସ୍ତକରେ ଲିଲିକୁ ପଦ୍ମକନ୍ୟା ଭାବରେ ଚିତ୍ରିତ କରି ନିଜ ଭୁଲର ପ୍ରାୟଶ୍ଚିତ୍ତ କରିବାକୁ ଚେଷ୍ଟା କରିଛି ଓ ଶେଷଜଣକ ଅନ୍ୟ ଦୁଇଜଣଙ୍କ ପରି ଲିଲି ପାଇଁ କିଛି ନ କରିପାରିବାର କ୍ଷୋଭରେ ନୀରବ ଅଶ୍ରୁପାତ କରୁଥିବାର ଦେଖି ହାଡୁ କହିଛି, "ତୋ ଭଳି ମୁଁ କାନ୍ଦି ପାରିଥାନ୍ତି ହେଲେ, ସତୁରି ବର୍ଷ ବୟସରେ ଅଶ୍ରୁପାତ ସହଜ ନୁହେଁ, ଜାଣୁ !"

ବୟସ୍କ ମଣିଷଟିଏ ନିଜର କୈଶୋରର ସ୍ମୃତିଚାରଣ କରି କେବଳ ନିଜର ଅତୀତ ଘଟଣା ପ୍ରତି କୌତୂହଳାକ୍ରାନ୍ତ ମାନସିକତା ପ୍ରକାଶ କରେନି ବରଂ ନିଜ ଅନ୍ତଃସତ୍ତ୍ୱରେ ନିହିତ ହୋଇଥିବା ସରଳତା ଓ ପବିତ୍ରତାର ସ୍ତରକୁ ଉପଲବ୍ଧି କରିପାରେ । ଉକ୍ତ ସଂକଳନରେ ସ୍ଥାନିତ 'ପ୍ରାପ୍ତବୟସ୍କର ପଞ୍ଚତନ୍ତ୍ର' ନାମକ ତିନୋଟି କାହାଣୀ ସହସ୍ରାଧିକ ବର୍ଷତଳେ କାହାଣୀକାର ବିଷ୍ଣୁଶର୍ମାଙ୍କ ରଚିତ ପଞ୍ଚତନ୍ତ୍ରର କାହାଣୀ ଉପରେ ଆଧାରିତ ହୋଇଥିଲେ ମଧ୍ୟ ଏଥିରେ ଲେଖକଙ୍କର କଥନଭଙ୍ଗୀ, ଘଟଣା ଓ ଚରିତ୍ର ପ୍ରତି ଗଭୀର ଅନ୍ତର୍ଦୃଷ୍ଟି, ମନନଧର୍ମୀ ବିଶ୍ଳେଷଣ, ବୁଦ୍ଧିଦୀପ୍ତ ଶ୍ଳେଷ, ବିଦଗ୍ଧ ବାକ୍‌ବିଳାସ ଲକ୍ଷ୍ୟ କରାଯାଏ । ଏହି କାହାଣୀଧର୍ମୀ ଗଳ୍ପର ଆଙ୍ଗିକରେ କଥାକାର ଯେଉଁ ଚମତ୍କାର ଭାଷାଶୈଳୀର ପ୍ରୟୋଗ କରିଛନ୍ତି ତା'ର ଏକ ଦୃଷ୍ଟାନ୍ତ ନିଆ-

ଯାଇପାରେ, "ପୁନର୍ବାର କାଠି ମଝିରେ ଦାନ୍ତ ବସାଇବା ପୂର୍ବରୁ କଚ୍ଛପ ଗଦ୍‌ଗଦ କଣ୍ଠରେ କହିଲା, "ଇତିହାସରେ ପ୍ରଥମ କଚ୍ଛପ-ମହାକାଶଗୃଷ୍ଟ ଭାବରେ ମୋ' ନାମ ଅମର ରହିବ।—ହଂସମାନେ ଏଥର ଅପେକ୍ଷାକୃତ ଅଧିକ ସ୍ୱାଚ୍ଛନ୍ଦ୍ୟ ଓ ଆତ୍ମବିଶ୍ୱାସ ସହକାରେ ଊର୍ଦ୍ଧ୍ୱକୁ ଉଠିଲେ । ପବନ ଥିଲା ଅନୁକୂଳ, ଆକାଶ ମେଘମୁକ୍ତ । ତେବେ ସୂର୍ଯ୍ୟାସ୍ତ ସମସ୍ତ ହୋଇଥିବା ହେତୁ କାଗଜ ଉପରେ ସ୍ୟାହି ବିଛି ହୋଇଗଲାଭଳି ଆକାଶବ୍ୟାପୀ ବିଛି ହୋଇ ରହିଥିଲେ ପକ୍ଷୀମାନେ । ଘରଚଟିଆ ଓ ବତାଶୀ ଭଳି ସାଧାରଣ ପକ୍ଷୀମାନେ ସେ ଅକଳ୍ପନୀୟ ଦୃଶ୍ୟରେ ବିମୂଢ଼ ପାଲଟିଯିବା ସ୍ଥଳେ ଯାଗ ଓ ଚିଲ ଜାତୀୟ ସମ୍ଭ୍ରାନ୍ତ ପକ୍ଷୀମାନେ ଉଦ୍‌ବେଗ ପ୍ରକାଶ କରିବା ଶୁଣାଯାଏ । ନିଗିଣାବାଦୀ ଭାବରେ ଜଣାଶୁଣା ଗୋଟିଏ କାଉ କହିଲା, "ଆକାଶର ଭବିଷ୍ୟତ ଅନ୍ଧକାର ବୋଲି ମୁଁ କାହିଁ କେତେ ଦିନରୁ ଭବିଷ୍ୟତବାଣୀ କରିଆସୁଛି । କଚ୍ଛପ ଦ୍ୱାରା ଏ ଆକାଶ ବିଜୟ ସେହି ଅବଶ୍ୟମ୍ଭାବୀ ପରିଣତିର ଆରମ୍ଭ ମାତ୍ର ।" ଏସବୁ ଗଳ୍ପରେ ପ୍ରାଚୀନ କାହାଣୀମାନଙ୍କର ଆଙ୍ଗିକ ଓ ଆତ୍ମିକ ସ୍ୱରୂପର ଉଦ୍ଭାସନ ଥିବାସ୍ଥଳେ ଏଗୁଡ଼ିକ ଆଧୁନିକ ମଣିଷ ଜୀବନରେ ଏକ ନୂତନ ତଥା ଚିରନ୍ତନ ଅର୍ଥ ନେଇ ରୂପାନ୍ତରିତ ହୋଇସାରିଛନ୍ତି ।

'ଧୂମ୍ରାଭ ଦିଗନ୍ତ ଓ ଅନ୍ୟାନ୍ୟ କାହାଣୀ' ଓ 'ଆଦ୍ୟ ପୁରୁଷ ଓ ଅନ୍ୟାନ୍ୟ କାହାଣୀ ପ୍ରଭୃତିରେ ସ୍ଥାନିତ ଅଧିକାଂଶ ଗଳ୍ପରେ କଥାକାରଙ୍କର ଆଧୁନିକ ଉତ୍ତରଣର ସୂଚନା ସ୍ପଷ୍ଟ । ତାଙ୍କର 'ବ୍ୟାଘ୍ରାଘ୍ରେଷଣ' ଗଳ୍ପଟିର ଦୃଷ୍ଟାନ୍ତ ନିଆଯାଉ । ଏଥିରେ କଳ୍ପିତ ରାଜପୁତ୍ର ଚରିତ୍ରଟି ସରଳତା ନିଷ୍ପାପତାର ପ୍ରତୀକ । ଯିଏ କି ସାଂସାରିକ ଛଳକପଟଠାରୁ ଦୂରରେ ନିର୍ଜନ ପରିବେଶରେ ଅଧ୍ୟୟନରତ ସୁକୁମାର ବ୍ୟକ୍ତିତ୍ୱ-ଟିଏ । କିନ୍ତୁ ଚତୁର ଧୂର୍ତ୍ତ ବ୍ୟକ୍ତିମାନଙ୍କର ପୂର୍ବକଳ୍ପିତ ଯୋଜନାର ସେ ଶିକାର ହୋଇ ଶେଷରେ ବାଘପିଠିରେ ବସିବାକୁ ବାଧ୍ୟ ହୁଅନ୍ତି ଓ ପରିଣତି ଅନୁମେୟ । ଏହି କାହାଣୀ ଘଟଣାକ ଭାବରେ ସତ୍ୟ ନ ହୋଇପାରେ; କିନ୍ତୁ କାହାଣୀର ରୂପକ କଳ୍ପନାରେ ମନେ ହେଉଛି ମଣିଷର ସମସ୍ତ ସୁକୁମାର ବୃତ୍ତିକୁ ହିଂସ୍ର ପାଶବିକତା ପଙ୍ଗୁ କରିଦିଏ । ଧ୍ୱଂସ କରିଦିଏ ।

ତାଙ୍କର ଅନ୍ୟତମ ବିଶେଷ ଉଲ୍ଲେଖଯୋଗ୍ୟ ଗଳ୍ପ 'ଆଦ୍ୟପୁରୁଷ'ରେ ଧନତାନ୍ତ୍ରିକ ମନୋଭାବ, ରାଜନୈତିକ କପଟତା ଓ ବ୍ୟକ୍ତିଗତ ସଫଳତା ପାଇଁ ମଣିଷର ଅସାଧୁ ଉଦ୍ୟମ ପ୍ରତି ଲେଖକଙ୍କର ଯେପରି ତୀକ୍ଷ୍ଣ ବ୍ୟଙ୍ଗ ପ୍ରକାଶ ପାଇଛି ସେହିପରି ଆଧ୍ୟାତ୍ମିକ ଚେତନାର କ୍ଷୀୟମାଣତା ପ୍ରତି ମଧ୍ୟ ଦୃଢ଼ ଆସ୍ଥା ପ୍ରକାଶ ପାଇଛି । 'ଆଦ୍ୟପୁରୁଷରେ ଜଣେ ଭାରତୀୟ ମିଷ୍ଟର ଶର୍ମାଙ୍କ ମୁଣ୍ଡରେ ଦେଖା

ଦେଇଛି ଏକ ଅଦ୍ଭୁତ ଆବୁ । ତା'ର ଆକାର ପ୍ରକାର ଅଭିନବ । ଏପରି ଆକୃତିର ଆବୁ ପୂର୍ବରୁ ଆଉ କାହା ମୁଣ୍ଡରେ ଥିବା କଥା କେହି ଜାଣି ନ ଥିଲେ । ଏହି ବୃହଦ୍‌କାୟ ଆବୁକୁ ମୁଣ୍ଡରେ ବହନ କରି ସେ ଅନେକ ବୃହଦ୍‌କାୟ ଦାୟିତ୍ୱମାନ ମଧ୍ୟ ବହନ କରିପାରୁଥିବାରୁ ସେ କାର୍ଯ୍ୟ କରୁଥିବା କମ୍ପାନୀ ତାଙ୍କୁ ଆବୁ ଅପରେସନ୍ କରି ଆସିବା ପାଇଁ ଆମେରିକା ପଠାଇଛନ୍ତି । ସେ ଆମେରିକାରେ ପହଞ୍ଚିବା ପରେ ଘଟଣାର ଗତି ବିଚିତ୍ର ମୋଡ଼ ନେଇଛି । ପୃଥିବୀର ଶ୍ରେଷ୍ଠ ଆବୁଧାରୀ ମଣିଷ ଭାବରେ ତାଙ୍କୁ ସେଠାକାର ଦୂର ଦର୍ଶନରେ ପ୍ରଦର୍ଶିତ କରା-ଯାଇଛି । ପରେ ପରେ ବିଭିନ୍ନ ବ୍ୟବସାୟୀ ସଂସ୍ଥା ସେମାନଙ୍କ ଦ୍ରବ୍ୟମାନଙ୍କର ଅଧିକ ବିକ୍ରୟ ପାଇଁ ମି: ଶର୍ମାଙ୍କୁ ବିଜ୍ଞାପନରେ ବ୍ୟବହାର କରିଛନ୍ତି । ଫଳରେ ମିଃ ଶର୍ମା ପ୍ରଚୁର ଅର୍ଥ ଲାଭ କରିଛନ୍ତି ଓ ଅବସ୍ଥାକ୍ରମେ ସେଠାକାର ରାଜନୀତି ସହିତ ସଂପୃକ୍ତ ହୋଇ ପଡ଼ିଛନ୍ତି । ତା'ର ପରିଣତି ହୋଇଛି ଭୟାନକ । ନିଜର ପ୍ରାଣରକ୍ଷା କରିବାକୁ ସେ ଫେରି ଆସିଛନ୍ତି ଭାରତବର୍ଷକୁ । କିନ୍ତୁ ଏଠି ପହଞ୍ଚିବା ପରେ ବି ତାଙ୍କର ଚରିତ୍ରବୃତ୍ତିରେ କୌଣସି ପରିବର୍ତ୍ତନ ହେଲା ନାହିଁ । ବରଂ ଆବୁକୁ ପୁଞ୍ଜି କରି ସେ ନିର୍ବାଚନ ରଣାଙ୍ଗନରେ ଓହ୍ଲାଇ ପଡ଼ିଲେ ଓ ଜିତିଲେ ମଧ୍ୟ । କିନ୍ତୁ ପୁଣି ଥରେ ନିର୍ବାଚନର ସମ୍ମୁଖୀନ ହେବାବେଳେ ଭୋଟରମାନଙ୍କ ଉପରେ ଆବୁର ପ୍ରଭାବ ସମ୍ପର୍କରେ ସନ୍ଦିହାନ ହୋଇ ସେ ଅଲୌକିକ ଶକ୍ତିର ସହାୟତା ନେବା ପାଇଁ ତାଙ୍କ ବୋଉଙ୍କର ଗୁରୁଙ୍କ ପାଖକୁ ଯାଇଛନ୍ତି । ଗୁରୁଙ୍କ ଆଶୀର୍ବାଦରୁ ଯେତେବେଳେ ମିଃ ଶର୍ମାଙ୍କ ମୁଣ୍ଡରୁ ଆବୁଟି ଉଭେଇ ଯାଇଛି ସେତେବେଳେ ସେ କିଛି କାଳ ପାଇଁ ବିମୂଢ଼ ହୋଇ ଯାଇଛନ୍ତି । ଏକ ଅଦ୍ଭୁତ ନ୍ୟୂନତାବୋଧରେ ସେ ପୀଡ଼ିତ ହୋଇଛନ୍ତି । ତାଙ୍କର ମନେ ହୋଇଛି ଯେଉଁ ଆବୁ ପାଇଁ ସେ ଏପର୍ଯ୍ୟନ୍ତ ଏତେ ବେଶି ପ୍ରାଧାନ୍ୟ ପାଇଛନ୍ତି, ତାକୁ ବାଦ୍ ଦେଲେ ହୁଏତ ତାଙ୍କ ଅସ୍ତିତ୍ୱର କିଛି ଅର୍ଥ ରହିବ ନାହିଁ । କିନ୍ତୁ ପରମୁହୂର୍ତ୍ତରେ ନିଜର ଆବୁଶୂନ୍ୟ ଅବସ୍ଥାକୁ ଏକ ଅଲୌକିକ ଘଟଣା ଭାବରେ ପ୍ରଚାର କରି ପୁଣି ଥରେ ନିର୍ବାଚନରେ ଜିତିବାକୁ ଚାହୁଁଥିବା ଶର୍ମାଙ୍କୁ ତାଙ୍କ ବୋଉ ସତର୍କ କରେଇ କହିଲେ, "ବାପା ! ପୁଣି ଭୁଲ କରନା । ଗୁରୁଙ୍କ ଆଶୀର୍ବାଦ ତୋତେ ଆବୁମୁକ୍ତ କରିବା ପାଇଁ । ସେ ଆବୁମୁକ୍ତ ବ୍ୟାପାରକୁ ଜାହିର କରି, ବଜାର କରି ସେଥିରୁ ଲାଭ ଉଠାଇବା ପାଇଁ ତାହା ଉଦ୍ଦିଷ୍ଟ ନୁହେଁ । ତୋ'ର ଏଇ ଆବୁମୁକ୍ତ ଭିତରେ ମୁଁ ସ୍ୱପ୍ନ ଦେଖୁଛି ସାରା ଜଗତ ହୁଏତ ଦିନେ ଆବୁତାନ୍ତ୍ରିକ ରାଜନୀତି ତଥା ଆବୁତାନ୍ତ୍ରିକ ବ୍ୟବସାୟ କବଳରୁ ମୁକ୍ତ ହେବ । ମୋତେ ଏଇ ସ୍ୱପ୍ନ ଦେଖିବାକୁ ଦେ ବାପା ।' ଏହି ଗଳ୍ପ ସଂପର୍କରେ ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି ହିତବାଦ ପତ୍ରିକାର ସମୀକ୍ଷକ ଶ୍ରୀ ଏଲ.

ଏନ୍. ଗୁପ୍ତ । ସେ କହିଛନ୍ତି—'His one of the most barbed and yet the gentle a satire on some ludicrous and absurd aspects of modern civilisation.'' [ସ୍ୱତବାଦ-28 1 79]

'କମ୍ଭିରଣୀ' ଓ 'ଭୁରୁଣୀ ଏକ ବଦାସ୍ତୁ' ତାଙ୍କର ଅପୂର୍ବ ପରିକଳ୍ପନାରୁ ସୃଷ୍ଟ ଦୁଇଟି ଗଳ୍ପ । ଆପାତତଃ ଉଦ୍ଭଟ ମନେ ହୁଅନ୍ତି । ଏହାର ବିଷୟବସ୍ତୁର କୌଣସି ପ୍ରକାର ଘାଟଣାର ସତ୍ୟତା ପାଠକ ସ୍ୱୀକାର କରିପାରୁ ନ ଥିବାବେଳେ ଗଳ୍ପର କଥନଶୈଳୀରେ ବନ୍ଧୁଳ ହୋଇଯାଏ । ବସ୍ତୁବାଦୀ ପାଶ୍ଚାତ୍ୟ ଦେଶର ଜଣେ ବିଜ୍ଞାନୀ ସାହେବ ଆସିଛନ୍ତି ଭାରତବର୍ଷର ଏକ ନିପଟ ମଫସଲକୁ । ସେଠି କମ୍ଭିରଣୀ ବୁଢ଼ୀ ନାମରେ ପରିଚିତା ଜଣେ ବୃଦ୍ଧା ମହିଳାଙ୍କ ଭେଟି ଶୁଣିଛନ୍ତି ତାଙ୍କର ବିଚିତ୍ର ଜୀବନ କାହାଣୀ । ବାଲ୍ୟ ବିଧବା ଏହି ନାରୀଟିକୁ ତା'ର ପ୍ରାକ୍ ଯୌବନ କାଳରେ ନଈରେ ଗାଧୋଇବା ବେଳେ କୁମ୍ଭୀରଟିଏ ଟାଣି ନେଇଛି ପାତାଳ ପାଣି ତଳକୁ । ତାକୁ ରୂପାନ୍ତରିତ କରି ଦେଇଛି ଏକ କମ୍ଭିରଣୀରେ । ଦଶବର୍ଷ ସେ ତା' ସହିତ ଘରକରଣା କରିବା ପରେ ଦିନେ ନିଜ ଆତ୍ମୀୟ ସ୍ୱଜନଙ୍କୁ ଦେଖିବା ପାଇଁ କମ୍ଭିରଣୀ ତା'ର ପୂର୍ବ ମଣିଷର ରୂପ ନେଇ ଆସିଥିଲା ଗାଁକୁ । କିନ୍ତୁ ତା'ର ଫେରିବା ପାଇଁ ଡେରି ହେବା ଦେଖି ବିଚରା କୁମ୍ଭୀର ତାକୁ ଖୋଜି ଖୋଜି ନଈରୁ ଉଠି ଆସିଥିଲା ଗାଁକୁ ଓ ଗାଁ ଲୋକେ ତାକୁ ଦେଖି ମାରି ପକାଇଲେ । ସେହିଦିନୁ ବୁଢ଼ୀ ରହିଗଲା ମଣିଷ ରୂପରେ ।

ଏପରି ଏକ ଅବାସ୍ତବ କାହାଣୀ ଶୁଣି ବିଜ୍ଞାନୀ ସାହେବ ତାକୁ ସତ ମଣିଯାଇଛନ୍ତି । ନଈରେ ଥିବା ଗଣ୍ଡି ଦେଖି ସେ ପଚାରିଛନ୍ତି ସେ ବୁଢ଼ୀ କ'ଣ ସେଇ ଜାଗାରେ ବୁଡ଼ି ମଣିଷରୁ କୁମ୍ଭୀରରେ ରୂପାନ୍ତରିତ ହୋଇ ଯାଇଥିଲା ।

ଗଳ୍ପଟିର ଆବେଦନରେ ଅଛି ସମାଜ ବ୍ୟବସ୍ଥାର ସୂକ୍ଷ୍ମ ଅନୁଶୀଳନ । ପାଞ୍ଚବର୍ଷ ବୟସରେ ବିଧବା ହୋଇଥିବା ଝିଅଟି ହୁଏତ ତା' ଯୌବନ କାଳର ଦଶଟି ବର୍ଷ ବିତାଇ ଦେଇଛି ରକ୍ଷଣଶୀଳ ସମାଜର ଅଜ୍ଞାତରେ । କିନ୍ତୁ ସେ ଘଟଣାଟି ଗୋପନ ରଖିବାକୁ ବାଧ୍ୟ ହୋଇ ହୁଏତ ଏପରି ଏକ ମନଗଢ଼ା କାହାଣୀଟିଏ ସୃଷ୍ଟି କରିଦେଇଛି ଓ ବାରମ୍ବାର ସେଇଟି ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଲୋକଙ୍କ ଆଗରେ ସତକଥା ଭାବରେ ବର୍ଣ୍ଣନା କରିବା ଫଳରେ ସମୟକ୍ରମେ କଥାଟା ତାକୁ ମଧ୍ୟ ସତ ସତ ବୋଲି ମନେ ହୋଇଥିବ । ତା'ର କଥାର ଆନ୍ତରିକତାରେ ବିଦେଶୀ ସାହେବ ଜଣକ ମଧ୍ୟ ନିଜର ଯୁକ୍ତିବାଦୀ ମନକୁ ପ୍ରଶ୍ରୟ ନ ଦେଇ କଥାଟା ସତ ବୋଲି ମାନିନେବାକୁ ବେଶି ପସନ୍ଦ କରିଛନ୍ତି । ପ୍ରକୃତ

ପକ୍ଷେ ଏ ପ୍ରଗାଢ଼ ଆନ୍ତରିକତାର ପୂର୍ଣ ସ୍ୱୀକୃତ ଗାଲ୍ସିକଙ୍କର । ସିଏ ନିଜେ କୁହନ୍ତି, 'ମଣିଷକୁ ଭଲ ପାଇବାରେ ମୋର ଯେଉଁ ଆନ୍ତରିକତା ସେଥିରେ କୌଣସି ଫାଙ୍କି ନାହିଁ । ମୁଁ ମଣିଷକୁ ନିସ୍ୱାର୍ଥ ସହ ଭଲପାଏ ବୋଲି ମଣିଷର ଚରମ ଅସହାୟତାର କଥା ବେଶି ଭାବରେ ମୋ ଗଳ୍ପରେ ଫୁଟାଇଛୁ । ତେଣୁ କର୍ମ୍ମୀରଣୀ ବୁଢ଼ୀ ପ୍ରତି ଗାଲ୍ସିକଙ୍କର ସମ୍ବେଦନା ନିକଟରେ ସାହେବର ଯୁକ୍ତିନିଷ୍ଠତା, ବୈଜ୍ଞାନିକ ସିଦ୍ଧାନ୍ତମାନ ଅର୍ଥହୀନ ହୋଇ ପଡ଼ନ୍ତି । ସେ ସେହି ସମ୍ବେଦନାରେ ଆଚ୍ଛନ୍ନ ହୋଇ ଘଟଣାଟିକୁ ସତ୍ୟ ବୋଲି ସ୍ୱୀକାର କରିନେଇଛନ୍ତି ଅତି ସହଜ ଭାବରେ ।

ତାଙ୍କର 'ଭୂତୁଣୀ ଏବଂ ବିଦାୟ' ଗଳ୍ପର ଆବେଦନ ଏପରି ମାର୍ମିକ ଯେ ଗଳ୍ପଟି ପାଠ କରିଥିବା ପାଠକ ଶେଷରେ ନିଶ୍ଚୟ କିଛି କ୍ଷଣ ପାଇଁ ଅଶ୍ରୁ ସଜଳ ଅବସ୍ଥାରେ ନିଜର ଉଦ୍‌ଗତ କୋହକୁ ଚାପି ଧରିବାକୁ ଚେଷ୍ଟା କରିଥାଏ । କାହାଣୀଟି ହେଲା—ଗୋଟିଏ ଗାଁର ଏକ ପରିତ୍ୟକ୍ତ ଘରେ ଶହେ ବର୍ଷ ତଳେ ମରିଯାଇଥିବା ଗୋଟିଏ ଝିଅର ଭୂତୁଣୀ ରହୁଥିଲା । ଗ୍ରାମବାସୀଙ୍କ ନିକଟରେ ତା'ର ଅସ୍ତିତ୍ୱ ଥିଲା ଯେ କୌଣସି ଜୀବିତ ମଣିଷ ପରି । ପ୍ରତି ପର୍ବପର୍ବାଣୀ ଭଲ ମନ୍ଦରେ ଭୂତୁଣୀ ପାଇଁ ଗାଁ ଲୋକେ ଦେଇଯାନ୍ତି ପିଠାପଣା କ୍ଷୀର ଖେଚୁଡ଼ି ପ୍ରଭୃତି । ଧାରଣାଥିଲା ଯେ ପ୍ରତିବଦଳରେ ଭୂତୁଣୀଟି ଗାଁ ଲୋକଙ୍କୁ ସବୁ ପ୍ରକାର ଆପଦ ବିପଦରୁ ରକ୍ଷା କରୁଛି । କିନ୍ତୁ ଦିନେ ସରକାରଙ୍କର ପୂର୍ତ୍ତ ବିଭାଗ ତରଫରୁ ସେ ଘରଟି ଭଙ୍ଗା ହେବା ଅପରିହାର୍ଯ୍ୟ ହୋଇଉଠିଲା । ଗ୍ରାମବାସୀଙ୍କର ପ୍ରଧାନ ସମସ୍ୟା ହେଲା ଭୂତୁଣୀ ପାଇଁ ରହିବାର କି ବ୍ୟବସ୍ଥା କରିବେ ! ବହୁ ଦିନରୁ ସେ ରହି ଆସୁଥିବା ଘରକୁ ତ ତାକୁ ଯେମିତି ହେଲେ ଛାଡ଼ିବାକୁ ପଡ଼ିବ । ଗାଁଠାରୁ ବେଶ୍ କିଛି ଦୂରରେ ଗୋଟେ ତାଳ ଗଛ ତା' ପାଇଁ ସ୍ଥିର କରାଗଲା । କିନ୍ତୁ ସେ ଭୂତୁଣୀ ଝିଅ ତା'ଘର ଛାଡ଼ିବାକୁ ନାରାଜ । ଗୁଣିଆ ଜରିଆରେ ସତେ ଯେମିତି ଗାଁ ବାଲା ତାକୁ ବହୁତ ବୁଝାସୁଝା କଲେ; ସେ କିନ୍ତୁ ତା' ଜିଦ୍‌ରେ ଅଟଳ । ଶେଷରେ ଗୁଣିଆ ଜଣ ସବୁ ମନ୍ତ୍ର ପଢ଼ି ଭିତରକୁ ଗଲା ଓ ଭୂତୁଣୀର କାନ ଧରି ତାକୁ ଟାଣି ଟାଣି ଆଣୁଥିବା ପରି ମନେହେଲା । ସେଠାରେ ଉପସ୍ଥିତ ଥିବା ସମସ୍ତ ଗାଁ ଲୋକଙ୍କୁ ସତେ ଯେପରି ଦୃଶ୍ୟ ହେଉଥିଲା ସେହି ଅଭାବିତ ଅଦୃଶ୍ୟ ଦୃଶ୍ୟ । ସବୁରି ଆଖିରେ ଲୁହ । ସତେ ଯେମିତି ତାଙ୍କର ଅତି ଆପଣାର ଝିଅଟି ଅଭିମାନରେ ଗାଁ ଛାଡ଼ି ଚାଲି ଯାଉଛି । ସେହି ଚାଲିଯାଉଥିବା ଭୂତୁଣୀ ଝିଅ ପଛରେ କିଛି ଦୂରତାର ବ୍ୟବଧାନ ରକ୍ଷା କରି ଆଖିରେ ଆଖିଏ ଲୁହ ନେଇ ଚାଲିଥିଲେ ଗାଁଟା ଯାକର ଲୋକେ । ଗାଁଠାରୁ କିଛି ଦୂରରେ ଥିବା ଏକ ତାଳଗଛକୁ ଭୂତୁଣୀର ବାସସ୍ଥାନ ହେବା ସ୍ଥିର କରି ଗୁଣିଆ ମନ୍ତ୍ର ପଢ଼ି ତାକୁ ସେ ଗଛରେ

କଣ୍ଠା ପିଟି କାନ୍ଦି ଦେଇଥିଲା । ପରେ ଯେତେବେଳେ ବଜ୍ରାଘାତରେ ଜଳିଗଲା ତାଳ ଗଛଟା ଭୂତୁଣୀ ଝିଅର ଶୋଚନୀୟ ମୃତ୍ୟୁ କଳ୍ପନା କରି ଶୋକାକୁଳ ହୋଇଗଲେ ସମସ୍ତ ଗ୍ରାମବାସୀ ଆପଣାର କାହାକୁ ହରାଇଥିବା ପରି ।

କି ଅଦ୍ଭୁତ କାଳ୍ପନିକ ସତ କଥା ଇଏ ! ଗ୍ରାମାଞ୍ଚଳ ମାନସର ସରଳ ବିଶ୍ୱାସ ଓ ଭଲ ପାଇବା ନିକଟରେ ଅବାସ୍ତବ-ବାସ୍ତବ, ଦୃଶ୍ୟ-ଅଦୃଶ୍ୟ ଓ ସତ-ମିଛର ଭେଦ ରେଖା ଲୋପ ହୋଇଯାଇଛି । ଭୂତୁଣୀ ପରି କାଳ୍ପନିକ ସୃଷ୍ଟିଟିଏ ଗ୍ରାମବାସୀଙ୍କର ଆଦରର ଝିଅ ହୋଇ ସେମାନଙ୍କ ଦୈନନ୍ଦିନ ଜୀବନର ଏକ ଅଂଶ ହୋଇଯାଇଛି । ମଣିଷର ଭଲ ପାଇବାର ଏକ ଅନାବିଳ ଚିତ୍ରଟିଏ ଏହି ଗଳ୍ପ ।

'ଅବୋଲକରା କାହାଣୀ' ମନୋଜ ଗଳ୍ପମାନସର ଏକ ଅଭିନବ ସୃଷ୍ଟି ସମ୍ପଦ । କେଉଁ ସୁଦୂର ଅତୀତରେ ଓଡ଼ିଆ ଲୋକକଥାରେ ଆବିର୍ଭୂତ ହୋଇଥିଲେ ଦୁଇଟି ଚରିତ୍ର ସାଆନ୍ତେ ଓ ଅବୋଲକରା । ଜ୍ଞାନୀ, ପଣ୍ଡିତ ଓ ଦ୍ରଷ୍ଟା ସାଆନ୍ତଙ୍କୁ ଜଣାଥିଲା ସବୁ ପୋଥିପୁରାଣ, ଲୋକକଥା, ପକ୍ଷୀକଥା ଓ ବହୁ ବିନ୍ଧ ଗହନ ବିଦ୍ୟା । ସେ ଘୂରିବୁଲନ୍ତି ଗ୍ରାମ, ନଗର, ଘନଜଙ୍ଗଲ ଓ ଦେଶବିଦେଶ ପ୍ରଭୃତି । ସାଙ୍ଗରେ ଥାଏ ତାଙ୍କର ବିଶ୍ୱସ୍ତ ସେବକ ଅବୋଲକରା । କିନ୍ତୁ ସେ ସବୁବେଳେ ସେ ସାଆନ୍ତଙ୍କ ବୋଲ ମାନେ ନାହିଁ, ସେତିକି କେବଳ ନୁହେଁ; ଯଦି କୌଣସି କଥା ତା' ମୁଣ୍ଡରେ ଥରେ ପଶିଯାଏ ତେବେ ତା'ର ଯଥାଯଥ ଉତ୍ତର ସାଆନ୍ତଙ୍କଠାରୁ ନ ପାଇବାଯାଏ ସେ ପାଦେ ବି ଆଗାଏ ନାହିଁ । ଓଡ଼ିଆ ଲୋକକଥାର ଏଇ ଦୁଇଟି ଅତି ପରିଚିତ ପ୍ରିୟ ଚରିତ୍ରଙ୍କୁ ଗାଳ୍ପିକ ନେଇଛନ୍ତି ସଂକଳନସ୍ଥ କାହାଣୀଗୁଡ଼ିକର କଥକ ଓ ଶ୍ରୋତା ଭାବରେ । ଗାଳ୍ପିକ ପୁସ୍ତକର ପ୍ରାରମ୍ଭରେ ପ୍ରକାଶ କରିଛନ୍ତି, "ସବୁ କାହାଣୀ ବକ୍ତବ୍ୟପ୍ରଧାନ ନୁହନ୍ତି କି ହେବା ଉଚିତ ନୁହେଁ । କିନ୍ତୁ ବକ୍ତବ୍ୟପ୍ରଧାନ କାହାଣୀ ପାଇଁ ବି ଥରେ ଜଣେ ଲେଖକ ପ୍ରେରଣା ଅନୁଭବ କରିପାରେ ।" ତେଣୁ କେତେକ ବିଶେଷ ପ୍ରକାର ବକ୍ତବ୍ୟ ଉପସ୍ଥାପନ ନିମନ୍ତେ ଅବୋଲକରା କାହାଣୀ ପରମ୍ପରାକୁ ସେ ଉପଯୁକ୍ତ ମନେ କରିଛନ୍ତି, ତାଙ୍କର ଉକ୍ତ ସଂକଳନସ୍ଥ ଗଳ୍ପଗୁଡ଼ିକ ନିମନ୍ତେ ।

ତେବେ ସେ ବକ୍ତବ୍ୟ କ'ଣ ? ଗାଳ୍ପିକ ଏହି କାହାଣୀଗୁଡ଼ିକରେ ଜୀବନର ବହୁ ଆତ୍ମନେପଦୀ ଓ ପରସ୍ମୈପଦୀ ଘଟଣାମାନଙ୍କ ମାଧ୍ୟମ ଦେଇ ପ୍ରକାଶ କରିଛନ୍ତି ଯୁଗଭେଦରେ ମଣିଷର କ୍ରମିକ ପତନର ବିବରଣୀ । ଅଲୌକିକ ଶକ୍ତିର ଦୁରୁପଯୋଗ ଓ ତା'ର ପରିଣତି । ଆଧ୍ୟାତ୍ମିକତା ପରିବର୍ତ୍ତେ ହବୁକାପ୍ତି ବିଦ୍ୟା ପ୍ରତି ଆକର୍ଷଣ ଓ ଅନ୍ୟର କଲ୍ୟାଣ ନାମରେ ନିଜର ଉଚ୍ଚାଭିଳାଷ ଓ ଅହଂର ପରିପ୍ରକାଶ ପ୍ରଭୃତି ।

ଶ୍ରୀ ଅରବିନ୍ଦଙ୍କ ଦର୍ଶନରେ ବିଶ୍ୱାସୀ କଥାକାର ଦେହ, ପ୍ରାଣ, ମନ ଓ ଚୈତ୍ୟସତ୍ତାର ସ୍ୱତନ୍ତ୍ର ଭୂମିକାକୁ ସ୍ୱୀକାର କରିଛନ୍ତି । ବିବର୍ତ୍ତନ ଧାରାରେ ଚୈତସତ୍ତା ଜାଗତିକ ସ୍ତରରୁ ଉତ୍ତୀର୍ଣ୍ଣ ହୋଇ ଏକ ଉନ୍ନତ ସ୍ତରରେ ବିଦ୍ୟମାନ ହେବାବେଳେ ତା'ର ପ୍ରାଣ ଓ ମନଃସତ୍ତା ପୃଥିବୀର ବାୟୁମଣ୍ଡଳରେ ରହିଯାଏ ବା ସମୟେ ସମୟେ ବିଭିନ୍ନ ପ୍ରାଣୀ ଓ ମନୁଷ୍ୟ ପ୍ରଭୃତିଙ୍କ ଭିତରେ ସଞ୍ଚରି ଯାଇପାରେ । ଫଳରେ ସେ ତଦନୁରୂପ ଆଚରଣ କରିଥାଏ ।

ଏହି ତତ୍ତ୍ୱର ଏକ ଚମତ୍କାର କାହାଣୀରୂପ ହେଉଛି ରାକ୍ଷସୀକନ୍ୟା । ଗାଳ୍ପିକ ପ୍ରସଙ୍ଗ କ୍ରମେ ବର୍ଣ୍ଣନା କରିଛନ୍ତି ଯେଉଁସବୁ ଆତ୍ମା ରାକ୍ଷସରାକ୍ଷସୀ ରୂପେ ଜନ୍ମ ହେଉଥିଲେ ଏବେ ବିବର୍ତ୍ତନର ଧାରାରେ ସେମାନେ ମୁକ୍ତି ପାଇଯାଇଛନ୍ତି । କିନ୍ତୁ ରାକ୍ଷସ ହେଉ ବା ମଣିଷ ହେଉ ତା'ର ଅସ୍ତିତ୍ୱ ଗଠିତ ହୋଇଥାଏ ଆତ୍ମା ସହି ଦେହ, ମନ ଓ ପ୍ରାଣର ସମନ୍ୱୟରେ । ଆତ୍ମା ସହି ଦେହର ଲୋପ ତତ୍‌କ୍ଷଣାତ୍ ହୁଏ; କିନ୍ତୁ ପ୍ରାଣ ଓ ମନଃସତ୍ତାର ହୁଏ ନାହିଁ । ରାକ୍ଷସର ଅବଶେଷ ରହିଯାଇଥିବା ମନଃଶକ୍ତି ସ୍ଥୂଳ କିନ୍ତୁ ପ୍ରାଣଶକ୍ତି ପ୍ରବଳ । ତେଣୁ ସେହି ପ୍ରାଣଶକ୍ତି ମଣିଷ ଭିତରେ ମିଶିଯିବା ଦ୍ୱାରା ମଣିଷର ତୀକ୍ଷ୍ଣ ମନଃଶକ୍ତି ସାହାଯ୍ୟରେ ଏହା ପ୍ରବଳ କ୍ରିୟାମାନ ପ୍ରକାଶ କରିବ । ଯେଉଁଥିପାଇଁ ସାଂପ୍ରତିକ କାଳରେ ରାକ୍ଷସମାନଙ୍କର ସ୍ୱାତନ୍ତ୍ର୍ୟ ନ ଥିବାବେଳେ ମଣିଷ ରାକ୍ଷସୋଚିତ କାର୍ଯ୍ୟ କରୁଛି । ଫଳରେ ଘିଅ ସହିତ ଘୁଷୁରିଚର୍ବି ନିର୍ବିବାଦରେ ମିଶିଯାଉଛି । ଧନଲୋଭ ଓ ରୂପଲୋଭର ପ୍ରାବଲ୍ୟ ପ୍ରକାଶ ପା'ଉଛି । ରାକ୍ଷସ ଜାତିର ଭୂମିକା ମଣିଷ ତୁଲାଉଥିବା ଦୃଷ୍ଟିରୁ ରାକ୍ଷସଜାତିର ସ୍ୱତନ୍ତ୍ର ଅସ୍ତିତ୍ୱ ରହୁନାହିଁ ।

ଘରର ବୋହୂକୁ ଯେଉଁ ସମାଜରେ ଲକ୍ଷ୍ମୀ ବୋଲି, ଗୃହର ଶ୍ରୀ ବୋଲି ବିଚାର କରାଯାଉଥିଲା ସେଠି ମଣିଷର ଧନଲୋଭ କାରଣରୁ ରାକ୍ଷସୀ ତା'ର ଘଟ ପରିବର୍ତ୍ତନ କରି କେଉଁ ଗୃହସ୍ଥର ବୋହୂ ଭିତରେ ମିଶିଯାଇଛି । କେହି ଜାଣିପାରୁନାହାନ୍ତି କାହା ବୋହୂକୁ ନିପାତ କରି ରାକ୍ଷସୀ ସେହି ପରିଚୟରେ ରହୁଛି । ତେଣୁ ପ୍ରତ୍ୟେକେ ନିଜ ଘରର ବୋହୂ ସମ୍ପର୍କରେ ସନ୍ଧିହାନ । ସତେକି ମଣିଷର ପ୍ରାଣିକ କାମନା ବାସନାର ପ୍ରାବଲ୍ୟ ତା'ର ଅନ୍ତଃସତ୍ତାକୁ ଧ୍ୱଂସ କରି ଦେଇଛି ।

'ସୁନାପାହାଡ଼' ଗଳ୍ପରେ ଲେଖକ ଦର୍ଶାଇଛନ୍ତି ସୁନାପାହାଡ଼ର ସନ୍ଧାନ ହିଁ ମଣିଷର ଆଧ୍ୟାତ୍ମିକ ଜୀବନରେ ଏକ ଉନ୍ମେଷପର୍ବ । ମହେନ୍ଦ୍ର ଓ ଦୀନବନ୍ଧୁ ଦୀର୍ଘକାଳ ସାଧନା କରି ସୁନାପାହାଡ଼ର ସନ୍ଧାନ ପାଇଲେ, କିନ୍ତୁ ପାଇବା ପରେ ସୁନା ସଂଗ୍ରହ ନ କରି ପ୍ରଣାମ କରି ଫେରିଗଲେ । କାରଣ ଦୀର୍ଘ ପାଞ୍ଚବର୍ଷର

ସାଧନା ଫଳରେ ସେମାନଙ୍କର ଯେଉଁ ଉଚ୍ଚତର ଉପଲବ୍ଧି ଘଟିଛି ତା'ପରେ ସୁନାପ୍ରତି ତାଙ୍କର କୌଣସି ଲୋଭ ନ ରହିବା ସ୍ୱାଭାବିକ । ଅଥଚ ପରକାଳରେ ଗୋଟିଏ ମନ୍ତ୍ର ସାହାଯ୍ୟରେ ସୁନାପାହାଡ଼ର ସନ୍ଧାନ କରି ରାଜା ତାକୁ ଭାଙ୍ଗି ଟୁକି ବୋହିନେଲେ ନିଜ ପ୍ରାସାଦକୁ । ଜ୍ଞାନର ଦୁରୁପଯୋଗ କରିବାରେ ମଣିଷର କୁଣ୍ଠା ରହି ନାହିଁ ଓ ତା'ର ସୂକ୍ଷ୍ମ ଅବବୋଧ ସ୍ଥୂଳ ଅନୁଭବରେ ପରିଣତ ହୋଇଯାଇଥିବା ହେତୁ ତା'ର ସଚେତନତା ମଧ୍ୟ ନାହିଁ ।

'ରତ୍ନବର୍ଷା' ଗଳ୍ପଟିର ପରିଣତି ଚସରଙ୍କ ଲିଖିତ ଗଳ୍ପର ଅନୁରୂପ ମନେ ହେଲେ ବି ଏହାର ବକ୍ତବ୍ୟ ଭିନ୍ନ । ନିଜର ପ୍ରାଣରକ୍ଷା ପାଇଁ ଶିଷ୍ୟର ବାରଣ ସତ୍ତ୍ୱେ ବ୍ରାହ୍ମଣଗୁରୁ ହୃକାଗ୍ରି ବିଦ୍ୟା ପ୍ରୟୋଗ କରି ରତ୍ନବର୍ଷା କରାଇବା ଫଳରେ ଦସ୍ୟୁମାନଙ୍କର ଲୋଭର ଶିକାର ହୋଇ ପ୍ରାଣଦେଲେ ଓ ସମ୍ପଦସବୁକୁ ନିଜର କରିବାକୁ ଯାଇ ପରସ୍ପରକୁ ହତ୍ୟା କଲେ ବହୁଲୋକ । ଶେଷରେ ସେ ଧନ କାହାରିକୁ ପ୍ରାପ୍ତ ହେଲାନାହିଁ ।

ଗାଳ୍ପିକ କହିବାକୁ ଚାହାଁନ୍ତି ହରୁବିଦ୍ୟା ଉଭୟ ସ୍ଥୂଳ ଓ ଆଧ୍ୟାତ୍ମିକ ଜୀବନ ପାଇଁ ଗୋଟିଏ ପରୀକ୍ଷା । ସ୍ଥୂଳ ଜୀବନରେ ଯେପରି ସଚ୍ଚା ପରିଶ୍ରମ ବା ପ୍ରତିଭା ବିନା ହରୁବିଦ୍ୟା ଦ୍ୱାରା ଉପାର୍ଜିତ ଅର୍ଥ ମଣିଷ ଉପଭୋଗ କରିପାରେନା ଏବଂ ଆଧ୍ୟାତ୍ମିକ ଜୀବନରେ ସେହିପରି ହରୁବିଦ୍ୟା ମଣିଷକୁ ଦୈବୀକୃପାରୁ ଦୂରେଇ ନିଏ ।

ଏହି ପ୍ରକାର ଅର୍ଥଲୋଭ [illegible] ଧର୍ମୀ ହୋଇଥିବା ଦେଶର, "ଗବେଷଣାନିରତ ବୈଜ୍ଞାନିକର ମୁଣ୍ଡକୁ ଅସଲ ସମୟରେ ସେ ପାପଶକ୍ତିର ତରଙ୍ଗ ଏମିତି ଜାବୁ କରିଦେବ, ଯାହା ଫଳରେ ସେ ତା' ଜ୍ଞାନକୁ ମାନବ କଲ୍ୟାଣ ଉଦ୍ଦେଶ୍ୟରେ ପ୍ରୟୋଗ କରିବା ପରିବର୍ତ୍ତେ କିପରି ଭୀଷଣରୁ ଭୀଷଣତର ଉପାୟରେ ମାନବତାକୁ ଓ ମାନବସଭ୍ୟତାକୁ ଧ୍ୱଂସ କରାଯାଇପାରେ; ସେହି ତଥ୍ୟ ବାହାର କରି ସେହି ଅନୁସାରେ କାମ କରିବ ।" ଯାହାକୁ ପାଇବା ପାଇଁ ସାଧନା ନାହିଁ, ପରିଶ୍ରମ ନାହିଁ । ଯେଉଁ ଧନ ଯେତେ ପୈଶାଚିକ ପ୍ରବୃତ୍ତି ସୃଷ୍ଟି କରିଛି ସେ ଧନର ବ୍ୟବହାର ତାହାହିଁ କରିବ । ସଂସ୍କାର ନ ଥିଲେ ଅପସ୍କୃତି ହିଁ ହୁଏ ।

"ଆଶ୍ଚର୍ଯ୍ୟ ପ୍ରଦୀପର ଶେଷକଥା" ଗଳ୍ପଟିରେ ମନୋଜବାବୁ ଜିନ୍‌କୁ ଏକ ଶକ୍ତିଶାଳୀ ପ୍ରାଣସତ୍ତାର ପ୍ରତୀକ ଭାବରେ ଗ୍ରହଣ କରିଛନ୍ତି । କିନ୍ତୁ ଦିନେ ଏ ଜିନ୍ ଥିଲା ମଣିଷର ଦାସ ଓ ତା'ର ମଣିଷ ଖାଉନ୍ଦର ନିର୍ଦ୍ଦେଶ ମାନୁଥିଲା । କିନ୍ତୁ ମଣିଷ ଜାତିର କ୍ରମପତନର ଫଳ ସ୍ୱରୂପ ମଣିଷ ଏହି ଶକ୍ତି ଉପରେ ନିଜର

ନିୟନ୍ତ୍ରଣ ହରାଇ ବସିଲ । କଳନ୍ ହେଲ୍ସ ଦାସ ପରିବର୍ତ୍ତେ ପ୍ରଭୁ । ଅତେର କଳନ୍ ହୁକୁମ କରିବାକୁ ଆରମ୍ଭ କଲେ ନିର୍ବୋଧ ମଣିଷର ମୃତ୍ୟୁ ବ୍ୟତୀତ ଅନ୍ୟ ଗତି ନ ଥାଏ ।

"ଇନ୍ଦ୍ରଧନୁର ରାଜପଥ''ରେ ମନୋଜ ଦାସ ଦେଖାଇଛନ୍ତି, ରାଜକନ୍ୟାକୁ ଲାଭ କରିବା ପାଇଁ ଏକଦା ଅପଚେଷ୍ଟା କରି ମହିଷାସୁର ମରିଥିଲା । ସେଥିପାଇଁ ଗୁରୁଗଳାସୁର ଇନ୍ଦ୍ରଧନୁ ପଥଦେଇ ଯାଦୁପାହାଡ଼କୁ ଯାଇ ଶାୟିତା ରାଜକନ୍ୟାକୁ ଭେଟିବାର ତୀବ୍ର ଆକାଂକ୍ଷାକୁ ନିୟନ୍ତ୍ରଣ କରି ନିଜକୁ ସେଥିରୁ ନିବୃତ୍ତ କରିଥିଲା । ଅଥଚ ପରବର୍ତ୍ତୀକାଳରେ ମାନବାସୁର ବା ମଣିଷ ବିଜ୍ଞାନ ବିଦ୍ୟାର ସାହାଯ୍ୟରେ ଯାଦୁପାହାଡ଼କୁ ଯିବାପାଇଁ ସଫଳ ହେଲା ସତ କିନ୍ତୁ ରାଜକନ୍ୟାକୁ ଆଲିଙ୍ଗନ କରିବାବେଳେ ହଠାତ୍ ତା' ବାହୁପାଶରେ ଏକଶତବାଂଶବର୍ଷୀୟା ବୃଦ୍ଧାକୁ ପାଇ ହତଚକିତ ଅବସ୍ଥାରେ ତଳକୁ ଡେଇଁପଡ଼ି ନିମ୍ନସ୍ଥ ଜଳସ୍ରୋତରେ ନିଶ୍ଚିହ୍ନ ହୋଇଗଲା । ଗାଳ୍ପିକ କହିବାକୁ ଚାହିଁଛନ୍ତି, ରାଜକନ୍ୟା ବା ଏକ ଉଚ୍ଚତର ସିଦ୍ଧି ଲାଭପାଇଁ ନିଜ ଆଧାରକୁ ପ୍ରସ୍ତୁତ କରିବାକୁ ହୁଏ । ବିଜ୍ଞାନ ବିଦ୍ୟା ସାହାଯ୍ୟରେ କିଛିଟା ପ୍ରାଣସ୍ତରୀୟ ସଫଳତା ମିଳିପାରେ; କିନ୍ତୁ ଆଧ୍ୟାତ୍ମିକ ଉପଲବ୍ଧି ମିଳେନାହିଁ ।

"ସିଂହ ସଲାପ''ରେ ମଧ୍ୟ ଗାଳ୍ପିକ ବିଜ୍ଞାନବିଦ୍ୟାର ବିପଜ୍ଜନକ ଦିଗଟି ଉଦ୍‌ଘାଟିତ କରିଛନ୍ତି ଏକ ଚମତ୍କାର କାହାଣୀ ଛଳରେ । ଏକ ମୃତ ସିଂହକୁ ତନ୍ତ୍ର ସାହାଯ୍ୟରେ ଜୀବନ ଦେଇଥିବା ଯୁବକତ୍ରୟୀଙ୍କୁ ସିଂହ ଭୋଜନ କରିବାକୁ ଉଦ୍ୟତ ହେବାରୁ ଋଷିଧୀମାନ ତାକୁ ବାରଣ କରିବାରୁ ସେ କହିଲା, "ମୋତେ ଜୀବନ ଦେବା ସଙ୍ଗେ ସଙ୍ଗେ ସେମାନେ ମୋ କ୍ଷୁଧାକୁ ମଧ୍ୟ ଜୀବନ ଦେଲେ । ହୁଏତ ଏକ ଶତାବ୍ଦୀର କ୍ଷୁଧା ।'' ତେଣୁ ପ୍ରାଣଦାତାମାନଙ୍କ ପ୍ରାଣ ନେବାକୁ ସେ ବାଧ୍ୟ । ଆଉ ଗୋଟିଏ ତଥ୍ୟ ମଧ୍ୟ ପ୍ରକାଶ ପାଇଛି ଯେ ମଣିଷର ସମଗ୍ର ଜୀବନକାଳ ଭିତରେ ଜଣଙ୍କର ଚେତନାରେ ଯେତିକି ପ୍ରଗତି ହୋଇଥାଏ କେତୋଟି ମୁହୂର୍ତ୍ତର ସତ୍‌ସଙ୍ଗ ବଳରେ ତା'ଠାରୁ ଅଧିକ ହୋଇପାରେ ।

'ସୁବର୍ଣ୍ଣକଳସ' ଗଳ୍ପଟିର ପରିକଳ୍ପନାରେ ଗାଳ୍ପିକଙ୍କର ପ୍ରଖର ଓ ଦୀପ୍ତ କଳ୍ପନାଶକ୍ତିର ପରିଚୟ ମିଳିଥାଏ । ପରିସ୍ଥିତିରେ ପଡ଼ି ସଚ୍ଚିତା, ହେମବତୀ ଓ ତନ୍ମୟ ପ୍ରଭୃତି ପ୍ରଭୃତି ଚରିତ୍ର ନିଜର କୌଣସି ଅପରାଧ ନ ଥାଇ ବି ଚରମ-ଦଣ୍ଡ ଭୋଗ କରିଛନ୍ତି । ସାଧାରଣ ମଣିଷର ଧାରଣାରେ ଦଣ୍ଡିତ ବ୍ୟକ୍ତି ନିଶ୍ଚୟ କୌଣସି ଅପରାଧ କରିଥିବ । ଏହି ଦୃଷ୍ଟିରୁ ଗାଳ୍ପିକଙ୍କର ମତ ପ୍ରଣିଧାନଯୋଗ୍ୟ,

"କିନ୍ତୁ ଦୁନିଆର ଦୃଶ୍ୟମାନ ନିୟମକାନୁନ ଅନ୍ତରାଳରେ ଅଜସ୍ର ଅଦୃଶ୍ୟ ବ୍ୟାପାର ରହିଛି । ଭୁଲ ନ କରି ବି ଲୋକେ ଯାତନା ପାଆନ୍ତି । ଅଜ୍ଞାନ, ଆଶା, ଆକାଂକ୍ଷା, ସ୍ୱପ୍ନ ଓ ଅଭିଳାଷଭରା ଏ ଦୁନିଆରେ କିଏ କେତେବେଳେ କିଭଳି ପରିସ୍ଥିତିରେ ପଡ଼ିଯିବ, ସେ କଥା କହିବା ଯେପରି ଅସମ୍ଭବ, କାହିଁକି ପଡ଼ିଯିବ, ତା'ର ବ୍ୟାଖ୍ୟା ବାହାର କରିବା ବି ସେହିପରି ଅସମ୍ଭବ ।"

ସଙ୍କଳନର ଶେଷଗଳ୍ପ 'ସାରୁପତ୍ରମୁନ୍ଦେ'ର ସୃଷ୍ଟି କଳ୍ପନାରେ ସାଂପ୍ରତିକ ମଣିଷର ଅସାମର୍ଥ୍ୟ, ଅଯୋଗ୍ୟତା ଓ ଅହଂକାରର ଦୟନୀୟ ସ୍ୱରୂପ ଉଦ୍‌ଘାଟିତ ହୋଇଛି । ବେଙ୍ଗ ଗୋଟାଏ ନଗଣ୍ୟ କ୍ଷୁଦ୍ରଜୀବ । ଅଥଚ ସେ ନିଜକୁ ପୁଣି ମନେକରେ ହିମାଳୟର ରାଜା ବୋଲି । ସେ ଦିନେ ଦୈବାତ୍ ଗୋଟିଏ ପକ୍ଷୀକୁ ଦେଖିଛି ଓ ତାଙ୍କୁ ମନେ ମନେ ନିଜର ରାଣୀ କରିବା କଥା ଭାବିନେଇଛି । ଯେତେବେଳେ ସେ ଜାଣିଛି ତାହା ଅସମ୍ଭବ, ସେ କ୍ରୋଧରେ ତା' ରାଜ୍ୟ ହିମାଳୟକୁ ବନ୍ଦୀ କରିଦେବାର ନିଷ୍ପତ୍ତି ଘୋଷଣା କରିଛି । ଝିଣ୍ଟିକା, ମୂଷା ଓ ଘରଚଟିଆମାନେ ବିବ୍ରତ ହୋଇ ପଡ଼ିଛନ୍ତି ନିଜର ବାସସ୍ଥାନ ହରାଇବା ଆଶଙ୍କାରେ । ସେମାନେ ବ୍ୟାକୁଳ ଭାବରେ ଖୋଜିଛନ୍ତି ପକ୍ଷୀକୁ ଓ ଦିନେ ତା'ର ସାକ୍ଷାତ୍ ପାଇ ନିଜର ଦୁଃଖ ଜଣାଇଛନ୍ତି । ସେମାନଙ୍କ ପ୍ରତି ସଦୟ ହୋଇ ପକ୍ଷୀଟି ବେଙ୍ଗର ରାଣୀ ହେବ କହି ଉଡ଼ିଯାଇଛି । ବେଙ୍ଗରାଜା ଶୁଣିଛି ପକ୍ଷୀକଥା, ଖୁସିରେ ନିଜେ ଗୀତ ଗାଇ ଗାଇ ନିଜକୁ ଶୁଆଇ ପକାଇଛି ।

ଗଳ୍ପଟିରେ ଏହି ବକ୍ତବ୍ୟଟି ବୋଧହୁଏ ପ୍ରକାଶିତ ହୋଇଛି ଯେ ମଣିଷ ପକ୍ଷୀ ବା ଏକ ଉଚ୍ଚତର ସତ୍ତା ନିକଟରେ ବେଙ୍ଗ ସଦୃଶ ଏକ ନଗଣ୍ୟ ଜୀବ । କିନ୍ତୁ ଭିତରେ ତା'ର ହିମାଳୟ ପରି ବିରାଟ ଅହଂକାର । ନିଜର ସାମର୍ଥ୍ୟ ବାହାରେ ସେ ଅଭିଳାଷ କରେ ଓ ତାହା ପୂରଣ ନ ହେଲେ ନିଜଠାରୁ ଅପେକ୍ଷାକୃତ ଦୁର୍ବଳ ଜୀବ ଉପରେ ହିଁ ସେ ଜାହିର କରେ ନିଜର କର୍ତ୍ତୃତ୍ୱ । କିଛି ସାରବସ୍ତୁ ନ ପାଇ ବି ନିଜର ଏକ ଅର୍ଥହୀନ ସ୍ଥିତିକୁ ନେଇ ସନ୍ତୁଷ୍ଟ ହୋଇଯାଏ ଓ ନିଜେ ହିଁ ନିଜକୁ ପ୍ରବୋଧନା ଦେଇ ଚାଲିଥାଏ ।

ସାଧାରଣତଃ ଗାଳ୍ପିକମାନେ ପ୍ରାୟ ଏକ ନିର୍ଦ୍ଦିଷ୍ଟ ବକ୍ତବ୍ୟକୁ ପ୍ରକାଶ କରିବାକୁ ଯାଇବେଳେ ଗଳ୍ପରଚନାର କଳାତ୍ମକ ଯାଦୁକରୀ ଦିଗଟି ପ୍ରତି ଧ୍ୟାନ ଦେଇପାରନ୍ତି ନାହିଁ ! କିନ୍ତୁ ଅଦ୍ଭୁତ ଭାବରେ କଥାକଳାକୁ ଆୟତ୍ତ କରିପାରିଥିବା ଏହି ପ୍ରତିଭାବାନ ଶିଳ୍ପୀ କାହାଣୀଧର୍ମୀ ଗଳ୍ପଗୁଡ଼ିକୁ ରସୋତ୍ତୀର୍ଣ୍ଣ କରିବା ସଙ୍ଗେ

ସଙ୍ଗେ ନିଜର ଉଦ୍ଦେଶ୍ୟ ଓ ଆଭିମୁଖ୍ୟକୁ ପାଠକର ଚେତନାରେ ସଂଚରେଇ ଦେବାକୁ ସମର୍ଥ ହୋଇଛନ୍ତି ।

ତାଙ୍କ ଗଳ୍ପରେ ସାମାଜିକ, ରାଜନୈତିକ ବ୍ୟଙ୍ଗ, ଭୌତିକ ଆଧିଭୌତିକ ପର୍ଯ୍ୟାୟର ବିଭିନ୍ନ ସ୍ତରମାନଙ୍କର ଉଦ୍‌ଘାଟନ ଓ ଆଧାତ୍ମିକ ଅନ୍ୱେଷାର ସଫଳ ରୂପାୟନ କରାଯାଇଥିବା ସଙ୍ଗେ କାହାଣୀର କଳାତ୍ମକତା ଶିଳ୍ପୀଜନସୁଲଭ ସହୃଦୟତା ଓ ଶାଣିତ ଦୃଷ୍ଟିଭଙ୍ଗୀ ମଧ୍ୟ ଅକ୍ଷୁଣ୍ଣ ରହିଛି ।

ମନୋଜ ଦାସ କେବଳ ଭାରତୀୟ କଥାସାହିତ୍ୟର ଏକ ବିସ୍ମୟକର ପ୍ରତିଭା ନୁହନ୍ତି, ବିଶ୍ୱ କଥା ସାହିତ୍ୟରେ ମଧ୍ୟ ତାଙ୍କ ପରି ଅସାଧାରଣ ସୃଜନଶୀଳ ସ୍ରଷ୍ଟା ବିରଳ ।

